# ଉଣେଇଶ ପଞ୍ଚସ୍ତରୀ

ଲେଖକ :
ଡକ୍ଟର ହରେକୃଷ୍ଣ ମହତାବ

ପ୍ରଥମ ସଂସ୍କରଣ :
ନଭେମ୍ବର, ୧୯୭୯

ପ୍ରକାଶକ :
ଶ୍ରୀ ଦିବ୍ୟରଞ୍ଜନ ପାଣି
ସମାବେଶ ପ୍ରକାଶନୀ
ଏ-୬୭ ଇଣ୍ଡଷ୍ଟ୍ରିଆଲ ଏରିଆ,
ଭୁବନେଶ୍ୱର ୭୫୧୦୦୧

ମୁଦ୍ରାକର :
କ୍ୱାଲିଟି ପ୍ରେସ
ଭୁବନେଶ୍ୱର-୭୫୧୦୦୧

ମୂଲ୍ୟ—ପନ୍ଦର ଟଙ୍କା

1975

By Dr. Harekrushna Mahtab

First Edition : Nov. 1979

Publisher :
Dibya Ranjan Pani
Samabesha Prakashani
A-67, Industrial Area
Bhubaneswar-751001

Printed :
Kwality Press
Bhubaneswar-751001

Price-Rupees Fifteen

ବୋ ବୋ୍ ଟିକ୍କା ହୋଇ ହରିବାବୁ ଲେଖାବନ୍ଦ କରି କିଛିକ୍ଷଣ ଗ୍ଣହିଁ ରହିଲେ, ଆଗନ୍ତୁକଙ୍କୁ ବସିବାପାଇଁ ସୁଦ୍ଧା କହି ପାରିଲେ ନାହିଁ । ତୁଳସୀ ଦରଜାଖୋଲି ଅଫିସ୍ ଭିତରକୁ ସିଧାସଳଖ ପଶି ଆସିଥିଲେ । ହରିବାବୁଙ୍କର କିଛି କହିବାକୁ ଅପେକ୍ଷା ନକରି, ସେ ଟେବୁଲ୍ର ଆର-ପାଖରେ ଚଉକିରେ ବସିପଡ଼ି ହସି ହସି କହିଲେ, "କଣ ମୋତେ ଚିହ୍ନି ପାରୁନାହୁଁ ?" ତଥାପି ହରିବାବୁ ସ୍ମୃତିମନ୍ଥନ କରି ଆଗନ୍ତୁକଙ୍କୁ ମନେ ପକାଇବା ପାଇଁ ସମୟ ନେଉଛନ୍ତି, ଶେଷରେ ମନେପଡ଼ିଲା—"କିହୋ, ତୁଳସୀ, ବସ୍ ବସ୍ । ବହୁ ବର୍ଷପରେ ଦେଖା, ବହୁ ବର୍ଷପରେ ନାଁ ? ତୋ ଚେହରାତ ସଂପୂର୍ଣ୍ଣ ବଦଳି ଯାଇଛି, ତଥାପି ପୂର୍ବର ଚେହେରା ସାଙ୍ଗରେ କିଛି କିଛି ମିଳୁଛି," । ତୁଳସୀଚରଣ ଦାସଙ୍କ ଚେହେରା ବାସ୍ତବିକ ବଦଳି-ଯାଇଛି । ଗାଲ ଭିତରକୁ ପଶିଯାଇଛି ମୁଣ୍ଡବାଳ ଚିଳ ଚକ୍କଚିତ । ଦାନ୍ତ ମଧ୍ୟ କେତେ ଝରିପଡ଼ିବାର ଚିହ୍ନ ଓଠରୁ ଜଣାପଡୁଛି । ବହୁ ବର୍ଷ ପୂର୍ବର କଥା ଯେତେବେଳେ ମନେ ପଡ଼ିଗଲା, ଅନିକଟର କବାଟ ଖୋଲିଦେଲେ ନଈପାଣି ଯେପରି ପ୍ରବଳ ବେଗରେ ଧାଇଁଯାଏ, ସେହିପରି ହରିବାବୁଙ୍କର ପୂର୍ବକଥା ସବୁ ଟିକିନିଖି କ୍ଷିପ୍ର ଗତିରେ ମନକୁ ଆସିଗଲା, ହରିବାବୁ ଅଫିସ୍ ଟେବୁଲ୍ଉପରେ ଏକ ଫାଇଲ ଉପରେ କଲମ ରଖିଥିଲେ ।

ଟିକିଏ ଆଖି ଉପରକୁ କରି ମନେମନେ ଗଣିନେଇ ତୁଳସୀ କହିଲେ, ଠିକ୍ ମନେ ପଡୁନାହିଁ—ସେଇ ନାଁ ବାଲେଶ୍ୱରରେ ଦେଖାହୋଇ ଥିଲା । ତା'ପରେ ତ କିଏ କୁଆଡ଼େ ନିଜବାଟ ଦେଖିଲେ......................ତୁଳସୀ କହିଯାଉଥାନ୍ତି, ହରିବାବୁ ତାଙ୍କ ଆଡ଼କୁ ଅନାଇ ଶୁଣିଲା ପରି ମନେ ହେଉଥାଏ, କିନ୍ତୁ ବାସ୍ତବିକ୍ ସେ ପୂର୍ବର ସ୍ମୃତିରେ ହିଁ ଲିପ୍ତ ଥାଆନ୍ତି । ସେ ସମୟର କଥା । ଯୁବକାବସ୍ଥା—କେତେ ଉତ୍ସାହ, କେତେ ଉଦ୍ଦୀପନା ସେ ସମୟରେ ଥିଲା । ଫୁଲଟିଏ ଫୁଟି ସୌରଭ ବିକାଶ କରିବା ପାଇଁ ଯେପରି ଉତ୍ଫୁଲ୍ଲ ହୋଇ ଚାରିଆଡ଼କୁ ପାଖୁଡ଼ା ମେଲାଇ ଦିଏ ସେହିପରି ସେତେ ବେଳେ କେତେଆଡ଼େ ଯେ କେତେ ଅଭିଳାଷ ମେଲି ଯାଉଥିଲା—ରାଜନୀତିରେ

ଯୋଗଦେଇ ମାନ୍ୟଗଣ୍ୟ ବ୍ୟକ୍ତି ହେବାର ଅଭିଳାଷ, ଧନୀ ହୋଇ ସୁଖ ସ୍ୱାଚ୍ଛନ୍ଦ୍ୟରେ ପରିବାରବର୍ଗ ଘେନି ରହିବାର ଅଭିଳାଷ ସଂଗେ ସଂଗେ ପୁଣି ରାମକୃଷ୍ଣ ମିଶନ୍‌ରେ ଯୋଗ ଦେଇ ସ୍ୱାମୀ ବିବେକାନନ୍ଦଙ୍କ ପରି ପୃଥିବୀ ବିଖ୍ୟାତ ସନ୍ନ୍ୟାସୀ ହେବାର ଅଭିଳାଷ, ସବୁ ପରସ୍ପର ବିରୋଧୀ ହେଲେ ମଧ୍ୟ ସେତେବେଳର ଉନ୍ମାଦନାରେ ସବୁ ଏ ତରୁଣ ହୃଦୟରେ ସ୍ଥାନ ପାଇପାରିଥିଲେ । ତୁଳସୀ ବି. ଏ. ପାସ କରି ଆସିଥାଏ । ତାରି ପରି କେତେ ଯୁବକ କେତେ ସ୍ୱପ୍ନ ସେ ସମୟରେ ଦେଖିଥିଲେ । ସେ ନିଜେ ମଧ୍ୟ ସ୍ୱପ୍ନ ଦେଖୁଥିଲେ । ସେ ଜଣେ ପ୍ରଧାନ ବ୍ୟକ୍ତି ହେବେ, ଯେ କୌଣସି ବାଟରେ ଯାଉ । ରାଜନୀତି, ସରକାରୀ ଚାକିରୀ, ବାଣିଜ୍ୟ ବ୍ୟବସାୟ ଯା' କିଛି କରିହେଉ, ସେ ଜଣେ ଏପରି ପଦସ୍ଥ ବ୍ୟକ୍ତି ହେବେ ଯେ ବହୁ ଲୋକ ତାଙ୍କରି ଆଡ଼କୁ ଚାହିଁବେ । ତାଙ୍କ ପରି ସବୁ ଅଭିଳାଷ ଉଠି ଉଠି ଶେଷରେ ନିଆଁ ଜଳୁଥିଲେ ମଧ୍ୟ ପାଣି ସରିଗଲେ ଯାହା ହୁଏ ସେପରି ହୋଇଗଲା । ବୟସ ହୋଇଗଲା । କୁସ୍ତିରେ ପଇତର ମାରି ଜଣେ ପହଲ୍‌ମାନ୍ ଯେପରି ଅନ୍ୟକୁ ହାତ ଗୋଡ଼ ଛନ୍ଦି ତଳେ ପକାଇଦିଏ, ସମୟ ସେହିପରି ଜୀବନଟାକୁ ନାନାଆଡ଼ୁ ଛନ୍ଦି ଦେଇ ଶେଷରେ ତଳେ ପକାଇଁ ଦେଇଛି—ଏହିପରି ନାନାକଥା ଭାବୁ ଭାବୁ ମନେ ପଡ଼ିଗଲା ତୁଳସୀ କଅଣ କହୁଛି, ତା କଥା ଶୁଣିବାକୁ ହେବ । ତା ସହିତ କଥାବାର୍ତ୍ତା କରିବାକୁ ହେବ । କଅଣ ସେ କହିଯାଉଛି ଭଲ କରି ସେ ଶୁଣୁନାହାନ୍ତି । କେବଳ ସେ ଶେଷରେ ଶୁଣିଛନ୍ତି ତୁଳସୀ କହିଲା ସେ ପୁରୀରେ ଅଛି—ଏତିକି କହୁଁ କହୁଁ ତା' ଆଖିକୁ ଲୁହ ଆସିଗଲା । କଣ୍ଠ ରୁଦ୍ଧ ହୋଇଗଲା । ହରିବାବୁ ତ ସବୁକଥା ଶୁଣି ନାହାନ୍ତି । ନିଜକୁ ନିଜେ ସମ୍ଭାଳି ନେଇ ସେ କହିଲେ, "କଅଣ ତୁଳସୀ, ଏପରି ଭାବପ୍ରବଣ କାହିଁକି ହେଉଛୁ ? ଆସିଲୁ ଏତେଦିନେ—ବର୍ତ୍ତମାନ କିଛି ସମୟ ପାଇଁ ଆମେ ଅତୀତରେ ଯାଇ ବାସ କରୁଁ । ତା' ପରେ ବର୍ତ୍ତମାନକୁ ଆସିଯିବା । ଏହି କେତେ ବର୍ଷ ଭିତରେ ମୁଁ କୁଆଡ଼ୁ କୁଆଡ଼ୁ ବୁଲି ବୁଲି ଆସି ଯେଉଁଠି ପହଁଞ୍ଚିଛି ତୁ ଜାଣିଥିବୁ । ରାଜନୀତି କରିଛି, ବ୍ୟବସ୍ଥା ସଭାର ସଭ୍ୟ ଏବଂ ମନ୍ତ୍ରୀ ମଧ୍ୟ ହୋଇଛି, ଏବେ ମଧ୍ୟ ଅଛି । ବାଣିଜ୍ୟ ବ୍ୟବସାୟ କରି ଅର୍ଥ ମଧ୍ୟ ଉପାର୍ଜ୍ଜନ କରିଛି—କୌଣସିଥିରେ ମୁଁ ପୂରା ମନ ଲଗାଇ ପାରିଲି ନାହିଁ—ମନ ତ କୌଣସିଥିରେ

ମାନିଲ ନାହିଁ । ପ୍ରତିଷ୍ଠା ପଛରେ ଗୋଡ଼ାଇ ଗୋଡ଼ାଇ ମୁଁ ସେ ଦେବୀଙ୍କର ମନ ନେଇ ପାରିଲି ନାହିଁ । ସ୍ତମ୍ଭନ, ବଶୀକରଣ, ଉଚ୍ଚାଟନ ଯେତେ ମନ୍ତ୍ର ମୁଁ ପ୍ରୟୋଗ କଲି ସେ ରମଣୀ ମୋତେ ମର୍ଜିଲେ ନାହିଁ । ବର୍ତ୍ତମାନ ଏହି ବସିଛି ମନ୍ତ୍ରୀ ହୋଇ, କିନ୍ତୁ ପୁରୁଣା କଥାକୁ ଭଲି ହେଉଛି—କେତେ ସାଙ୍ଗ ଯେ ମୁଁ ଛାଡ଼ିଦେଇ ଆସିଛି କେବଳ ପ୍ରତିଷ୍ଠା ମୋହରେ; ଭାବିଲେ ମୋ ନିଜପ୍ରତି ମୋର ଘୃଣା ହୁଏ । କାହାରିକୁ ମୁଁ ପଚାରି ନାହିଁ । ସେଥିପାଇଁ ମୋତେ ବି ଆଜି କେହି ପଚାରୁ ନାହାନ୍ତି । ମନ୍ତ୍ରୀ ପଦଟା ଖାଲି ଥୁଣ୍ଟା ଶୁଖିଲା ଗଛ । ମାନ ନାହିଁ, ସମ୍ମାନ ନାହିଁ, ଖାଲି ଅଛି ଗାଳି । ଏ ମୋର ଭାଗ୍ୟ । ତୁ ଜଣେ ପୁରୁଣା ସାଙ୍ଗ । ମୋତେ ମନେ ପକାଇ ଆସିଗଲୁ । ପୁରୀରେ କଅଣ କରୁଛୁ—ତୋ କଥା ତ ଇତି ମଧ୍ୟରେ ମୁଁ କାହାରିଠାରୁ ଶୁଣିନାହିଁ । ତୋର ବନ୍ଧୁ ବାନ୍ଧବଙ୍କ ସାଙ୍ଗରେ ଦେଖା ହୁଏ । କେହି ତୋ କଥା କହନ୍ତି ନାହିଁ । ସତ କହିବାକୁ ହେଲେ ମୁଁ ମଧ୍ୟ ତୋ କଥା କାହାକୁ ପଚାରି ନାହିଁ । କେତେ ସାଙ୍ଗ କେବଳ ଯେ ସ୍ମୃତିପଟରୁ ଖସିଗଲେଣି ତା’ ନୁହେଁ, କେତେ ଏ ଧାମରୁ ମଧ୍ୟ ବିଦା ହେଲେଣି । ବାସ୍ତବିକ୍ ତୋତେ ମୁଁ ସଂପୂର୍ଣ୍ଣ ଭୁଲି ଯାଇଥିଲି । ଭାଇ ତୁ ମୋତେ କ୍ଷମା କର । ଏହା କହୁଁ କହୁଁ ହରିବାବୁ ଉଠିପଡ଼ି ତୁଳସୀ ହାତ ଧରିବାକୁ ହାତ ବଢ଼ାଇଲେ । ତୁଳସୀ ଗମ୍ଭୀର ହୋଇ ହରିବାବୁଙ୍କ କଥା ଶୁଣୁଥିଲେ କି ନା’ ଶୁଣୁଥିଲେ ; ସେ ତାଙ୍କ ନିଜ ଅତୀତର ଭାବନାରେ ଲିପ୍ତ । ହରିବାବୁଙ୍କ ହାତ ବଢ଼ାଇବା ଦେଖି ସେ ଚମକି ପଡ଼ିଲା ପରି ହୋଇ ଅଳ୍ପ ହସି କହିଲେ, "ବସ୍ ବସ୍, ମୁଁ ଆସିଛି, କଥା ହେବା, ମୋର ମଧ୍ୟ କିଛି କାମ ଅଛି ।" ହରିବାବୁ ବସିପଡ଼ି କହିଲେ, "ତୁ ଆଗେ କହ ତ ଇତିମଧ୍ୟରେ ତୁ କଅଣ କରୁଥିଲୁ, କୁଆଡ଼େ ଥିଲୁ—ତୋ ଘର ଖବର—" ଆଉ କିଛି ପଚାରିବାକୁ ନ ଦେଇ ତୁଳସୀ ଦୀର୍ଘ ନିଃଶ୍ୱାସଟିଏ ପକାଇ ତଳକୁ ଚାହିଁ ଧୀରେ ଧୀରେ କହିଲେ "ଭାଇ ତୁ ତ ମୋତେ ପୂର୍ବଜନ୍ମ କଥା ପଚାରୁଥିଲୁ—କୁଆଡ଼େ ଗଲାଣି ସେ ଜନ୍ମ—ତା’ପରେ ଆଉ କେତେ ଜନ୍ମ ହୋଇଗଲାଣି । ଆଗ କଥା ସବୁ ଆଡ଼କୁ ତୋ ମନ କାହିଁକି ଯ ଉଛି ? ଅବଶ୍ୟ ସୁଅପାଣି ଆଗରେ କୌଣସି ଧକ୍କା ପାଇଲେ ପଛକୁ ଫେରେ । ତୁ ତ ମାଡ଼ି ଚାଲିଥିଲୁ । ବୋଧହୁଏ ବାଧା ପାଇ ପଛକୁ ଫେରୁଛୁ । ମୁଁ ତ ପ୍ରଥମରୁ ବାଧା ଖାଇ ପୋଖରୀ ପାଣି ପରି ସ୍ଥିର

ହୋଇଗଲି—ଗତ କଥା ସବୁ ତାଙ୍କ ପରି ତଳେ ବସିଗଲଣି । ଆଉ ସେ ପଙ୍କରୁ ଉଠେଇ ପାଣି କାହିଁକି ଗୋଳିଆ କରିବି ?"

ହରିବାବୁ ବ୍ୟଗ୍ର ଓ ତରତର ହୋଇ କହିଲେ "ବାସ୍ତବିକ୍ ମୁଁ ଆଜି ଅତୀତରେ ବାସ କରି ଦିନ କଟାଉଛି—ବର୍ତ୍ତମାନଟା ଏମିତି ଏପାଖ ସେପାଖ ହୋଇଗଲଣି, ସେଥିରେ ପାଦ ଗୁଞ୍ଜି ପକାଇ କୁଆଡ଼େ ଯାଇ ହେଉ ନାହିଁ । ଭବିଷ୍ୟତଟା ଦୂର ଦିଗ୍‌ବଳୟ ପରି ଅତି ଅସ୍ପଷ୍ଟ । ଅତୀତ ଛଡ଼ା ମୋର ଗତ୍ୟନ୍ତର ନାହିଁ । ମୁଁ ତ ମୋର ପୁରୁଣା ସାଙ୍ଗମାନଙ୍କୁ ଖୋଜି ସେମାନଙ୍କ ସହିତ ଖୁବ୍ ପୁରୁଣା କଥା କୁହେଁ । ସେମାନଙ୍କୁ ତାହା ଭଲ ଲାଗେ କି ନାହିଁ ଜାଣେନାଁ । କାରଣ ମନ୍ତ୍ରୀ ହୋଇ ମୁଁ ସୁବିଧାଜନକ ସ୍ଥାନରେ ଅଛି । କିନ୍ତୁ ତଥାପି ସେଥିରେ ମୋର ଏତେ ଆନନ୍ଦ କୁହ କହିବି କଣ ? ଭାଗ୍ୟେ ତୁ ଆଜି ଆସିଯାଇଛୁ—ନିଶ୍ଚୟ ତୋତେ ପୁରୁଣା କଥା କହିବାକୁ ହେବ—କଅଣ ତୋର କାମ ଅଛି ? ପରେ କଥା ହେବା । ତୁ ଆଜି ଏଠି ରହ—କଥାବାର୍ତ୍ତା ହୋଇ କାଲି ଯିବୁ ।

ତୁଳସୀ ହସି ଉଠି କହିଲେ—ମୁଁ ଆଜି ଚାଲିଯିବି । କଣ ପୁରୁଣା କଥା କହିବି ? ବହୁକାଳ ହେଲା ମା' ତ ଚାଲି ଯାଇଛନ୍ତି । ଦେଶ ସେବା କରିବି ବୋଲି ଏକ ବ୍ରତ ନେଇ । ତାହାତ ହେଲା ନାହିଁ । ସେ ବ୍ରତ ତୁ ନିଜେ ବି ନେଇଥିଲୁ । (ହରିବାବୁଙ୍କ ମୁହଁ ଶୁଖିଲା ପଡ଼ିଗଲା) ଦେଶ ସେବା ନାଁରେ ବହୁ ଆନ୍ଦୋଳନରେ ଜେଲ୍ ଗଲି । ତୁ ବି ଯାଇଥିଲୁ । (ହରିବାବୁଙ୍କ ମୁହଁ ଆହୁରି ଶୁଖିଗଲା) । ତମେ ସବୁ ଚାଲିଗଲ ଆଉ ଏକ ବାଟ କାଟି । ମୁଁ ରହିଗଲି ଯେଉଁଠି ସେଠି । ଯଯାତିକେଶରୀ ବହୁ ଯଜ୍ଞ କରି ବୈତରଣୀ କୂଳରେ ନାଭିଗୟା ତୀର୍ଥ ପ୍ରତିଷ୍ଠା କରିଥିଲେ । ବୈତରଣୀ ନଦୀ ଗତି ବଦଳାଇ ସେ ତୀର୍ଥଠାରୁ ବହୁଦୂରକୁ ଚାଲିଗଲା । ତୀର୍ଥର ଆଉ ମାହାତ୍ମ୍ୟ ରହିଲା ନାହିଁ । ସେହିପରି ଜେଲ୍ ଯାଇ ଯାଇ ଯେଉଁ ତୀର୍ଥଟିକୁ ଆମେ ସୃଷ୍ଟି କରିଥିଲୁ, ସେ ତୀର୍ଥର ମାହାତ୍ମ୍ୟ ଚାଲିଗଲା, କାରଣ ଦେଶ ସେବାର ସ୍ରୋତ ଅନ୍ୟ ଦିଗକୁ ଚାଲିଗଲା । ତୀର୍ଥର ମାହାତ୍ମ୍ୟ ଏତେ କମିଗଲା ଯେ ଆମ ଜେଲ୍ ଯାଇଥିବା ତଥା କଥିତ ଦେଶସେବୀମାନଙ୍କୁ ଲୋକେ ଦୟାକଲେ, ଅଡ଼ାଙ୍କଲେ, ଶେଷରେ ଘୃଣାମଧ୍ୟ କଲେ । ମୁଁ ତ ଘରଦ୍ୱାର ସବୁଛାଡ଼ି

ହୋଇଥିଲି, ବି.ଏ. ପାସ୍ ସାର୍ଟିଫିକେଟ୍ ଖଣ୍ଡିକ ନେଇ କେଉଁଠି ହେଲେ ଚାକିରି ଖଣ୍ଡିକପାଇଁ ଚେଷ୍ଟା କଲି । ଏଠି ସେଠି ଯେନାକେତେ ଶିକ୍ଷକ ହେଲି । କିନ୍ତୁ ମନ ମାନିଲା ନାହିଁ । ଭାବିଲି ଜେଲ୍ ସାର୍ଟିଫିକେଟ୍ ଦେଖାଇ ଏସେମ୍ବ୍ଲି ବା ପାର୍ଲାମେଣ୍ଟକୁ ଯିବି । ସେଠି ଏପରି ଭିଡ଼ ଯେ ସେଠି ପଶିବା ହୋଇପାରିଲା ନାହିଁ । ତା ଛଡ଼ା କ୍ରମେ ଜେଲ୍ ସାର୍ଟିଫିକେଟ୍‌ର କିଛି ମୂଲ୍ୟ ରହିଲା ନାହିଁ କି କେହି ତାକୁ ଖୋଜିଲେ ନାହିଁ । କଅଣ କହିବି ! ଏପରି ଅବସ୍ଥା ହେଲା ଖାଇବା, ପିନ୍ଧିବା ମଧ୍ୟ ଯୋଗାଡ଼ କରିବା କଷ୍ଟକର ହେଲା । ତା'ପରେ ତ ଏବେ ପୁରୀରେ ।" ଏତିକି କହି ତୁଳସୀ ଟିକିଏ ହସିଦେଲେ । ହରିବାବୁ ତାଙ୍କ ନିଜ ଜୀବନୀ ପ୍ରକାଶ କଲେ— "ସେ ଜେଲ୍ ସାର୍ଟିଫିକେଟ୍ ଏବଂ ତାଙ୍କ ବୁଦ୍ଧି କୌଶଳ ଯୋଗେ ଏସେମ୍ବ୍ଲିର ସଭ୍ୟ ହେଲେ—ମନ୍ତ୍ରୀ ହେଲେ । ଏବେ ମଧ୍ୟ ଅଛନ୍ତି, କିନ୍ତୁ ପଛଆଡ଼ୁ ଏତେଲୋକ ଏହିସବୁ ସ୍ଥାନପାଇବା ପାଇଁ ମାଡ଼ି ଆସୁଛନ୍ତି, ଶେଷରେ ମୋତେ ଠେଲିଦେଇ ସେମାନେ ଆଗକୁ ଚାଲିଯିବେ ବୋଲି ବସିଛନ୍ତି । ସେ ଠେଲା ଭିତରେ ମୁଁ ପଡ଼ିଛି । ଏକ ସମୟରେ ବୟସର ମୂଲ୍ୟ ଥିଲା । ବୟସ୍କ ଲୋକଙ୍କୁ ଲୋକେ ସମ୍ମାନ କରୁଥିଲେ । ଆଜି ବୟସ ଏକ ତାଚ୍ଛଲ୍ୟ ଓ ଘୃଣାର ବିଷୟ । ଯେତେ ବୟସ ବେଶି ତେତେ ସେ ଘୃଣ୍ୟ ଓ ଅବହେଳାର ପାତ୍ର । ଯେତେ ବୟସ କମ୍ ସେତେ ସେ ସମ୍ମାନିତ ଓ ଆଦରର ପାତ୍ର । ପୂର୍ବେ ମନ୍ତ୍ରୀଙ୍କର ସମ୍ମାନ ଥିଲା । ଆଜି ତ ମନ୍ତ୍ରୀଙ୍କୁ କେହି ପଚାରୁ ନାହାନ୍ତି । ଯୁବକମାନେ ଦେଶର ଭବିଷ୍ୟତ ବୋଲି ଆମେ ଉଦ୍‌ବୋଧନ ଦେଉଥିଲୁ । ସେ ଭବିଷ୍ୟତ ମାଡ଼ିବସିଲା ବର୍ତ୍ତମାନକୁ । ତେଣୁ ଆମେ ବୟସ୍କ ଲୋକସବୁ ଚାପିହୋଇ ଅତୀତକୁ ଚାଲିଯିବାକୁ ବସିଲୁଣି । ସମୟ ଯେ କିପରି କାଟିବାକୁ ହେବ ସେହି ବର୍ତ୍ତମାନର ଚିନ୍ତା । ପୂର୍ବେ ବାନପ୍ରସ୍ଥ ଆଶ୍ରମର ଏକ ବ୍ୟବସ୍ଥା ଥିଲା । ବର୍ତ୍ତମାନ ବନ କାହିଁ, ଋଷିମୁନି କେଉଁଠି ଅଛନ୍ତି ଯେ ଯାଇ ତାଙ୍କ ଆଶ୍ରମରେ ଜଣେ ରହିଯିବ । ଥିଲେ ମଧ୍ୟ ଯିବାକୁ ମନ ବାହିଁ ? ଏଇଠି ଆମ ଧର୍ମରେ ଯେ ମାୟାବାଦ ଅଛି ତା'ର ଗୁରୁତ୍ୱ ଉପଲବ୍‌ଧି କରୁଛି । ମାୟାକୁ ମାୟା ବୋଲି ଜାଣି ମଧ୍ୟ ଛାଡ଼ି ହେଉନାହିଁ ।" କ୍ରମେ ହରିବାବୁଙ୍କ ମୁଖ ଗମ୍ଭୀର ହୋଇଗଲା—ସେ ଆହୁରି କିଛି କହିବାକୁ ଯାଉଥିଲେ । ତୁଳସୀ ଟେବୁଲ

ଉପରେ ହାତ ବାଡ଼େଇ କହିଲେ—"ଛାଡ଼ ସେ ପୁରୁଣା କଥା ସବୁ ଆଉ କେତେ ଲୋକ ଭାବୁଥିବେ— ଇଚ୍ଛା କଲେ କଅଣ ପଛକୁ ଫେରି ହେବ କି ? କବି କହିଛନ୍ତି ପରା ପଛକୁ ଫେରି ମାତୃଗର୍ଭକୁ ଯାଇ ପୁଣି ଥରେ ଜନ୍ମ ଲଭିବା ସମ୍ଭବ ନୁହେଁ । ଯାହା କରିବୁ ଏବେ କର । ତେଣୁ ପଛକୁ ନ ଭାଳି ବର୍ତ୍ତମାନକୁ ଠିକ୍ ରଖି ଭବିଷ୍ୟତକୁ ଈଶ୍ୱରଙ୍କ ହାତରେ ଛାଡ଼ି ଦେବାହିଁ ବୁଦ୍ଧିମାନର କାମ । ଛାଡ଼ ଏ ସବୁ କଥା । ବହୁକାଳୁ ଭୁଲିଥିବା କଥାଗୁଡ଼ାକ ମନେପକାଇ ମୋ ମନଟାକୁ ତୁ ଇତସ୍ତତଃ କରିଦେଲୁ । ବର୍ତ୍ତମାନ ମୁଁ ଯେଉଁ କାମରେ ଆସିଛି କୁହେ ।"

ଆହୁରି ଅତୀତ କଥାକୁ ଚର୍ଚ୍ଚା କରିବାପାଇଁ ହରିବାବୁ ସଙ୍କୁଚିତ ହେଲେ । ସେ ଆଖି ଆଗରେ ଦେଖୁଛନ୍ତି, ତାଙ୍କର ପୁରୁଣା ସାଙ୍ଗ ନାନା ଦୁଃଖ ଦୈନ୍ୟରେ ମଧ୍ୟ ପୁରୁଣା ପଛ କଥା ନ ଭାବି ସ୍ଥିର ହୋଇ ଆଗକୁ ଆଗକୁ ଚାଲିଛି । ଅଥଚ ସେ ଦୁଃଖ ଦୈନ୍ୟଠାରୁ ଦୂରରେ ରହି ସୁଖ ଜୀବନରେ ଅତୀତକୁ ଭାଳି ହେଉଛନ୍ତି । ହରିବାବୁଙ୍କ ଚେହେରା ବଦଳିଗଲା । ବେଶି ଆଗ୍ରହ ସହକାରେ ତୁଳସୀର ଜ୍ଞାନ ସମ୍ବନ୍ଧରେ ଜାଣିବାକୁ ଚାହିଁଲେ । ତୁଳସୀ ଅଳ୍ପ ହସୁଥାନ୍ତି, କିନ୍ତୁ ଗମ୍ଭୀର । ଧୀରେ ଧୀରେ ତାଙ୍କୁ ଅନାଇ ଟେବୁଲ୍ ଉପରେ ଆଙ୍ଗୁଳି ଚିପି ଚିପି କହି ଚାଲିଲେ—

"ବହୁବର୍ଷ ବୁଲି ବୁଲି ଘୂରିଆଡ଼େ କେଉଁଠି ହେଲେ ଏ ଜୀବନଟାର ଥଇଥାନ କରିପାରିଲି ନାହିଁ । ଦେଖିଲି ଜୀବନଟା ସ୍ୱୟଂଚାଳିତ ଯନ୍ତ୍ର ନୁହେଁ । ଆଉ ଏକ ଶକ୍ତି ଏହାକୁ ପରିଚାଳନା କରୁଛି । ଯାହା ମନ ଚାହୁଁଛି ସବୁ ଉଦ୍ୟମ କଲେ ମଧ୍ୟ ତାହା ହେଉନାହିଁ । ଏହିଥିରୁ ତ ମୋର କର୍ମଫଳ ଓ ଜନ୍ମାନ୍ତରବାଦରେ ବିଶ୍ୱାସ ହୋଇଗଲା । ଭାବିଲି ନିଜକୁ ନିଜେ ଆଗେ ଚିହ୍ନେଁ, ଜାଣେ, ସେଇଥିରେ ମୋର ଜୀବନ ସାର୍ଥକ ହେବ । ତେଣୁ ପୁରୀର ସମୁଦ୍ର କୂଳରେ ଏକ ଛୋଟ ଆଶ୍ରମ ଅଛି । ସେଠି ଜଣେ ବୟସ୍କ ସ୍ୱାମୀ ଅଛନ୍ତି । ସେ ଜଣେ ଉଚ୍ଚକୋଟୀର ସାଧୁ, ଧର୍ମଜ୍ଞ । ଆଶ୍ରମର ସମ୍ପତ୍ତିବାଡ଼ି କିଛି ନାହିଁ । ସେ ଆଶ୍ରମରେ ଚେଲା ସୁଦ୍ଧା କେହି ନାହାନ୍ତି । ଖୋଜି ଖୋଜି ସେଇଠି ଯାଇ ପହଞ୍ଚିଲି । ଆଧ୍ୟାତ୍ମିକ ସାଧନା ପାଇଁ

ପୁରୀର ବାୟୁମଣ୍ଡଳ ସହାୟକ ବୋଲି ମୁଁ ଶୁଣିଥିଲି । ବହୁ ମଠବାଡ଼ି ସେଠି ଅଛି । ବଡ଼ ବଡ଼ ମଠକୁ ଯିବା ପାଇଁ ମୋର ମନ ହେଲା ନାହିଁ । ସବୁଠାରୁ ଛୋଟ ଆଶ୍ରମଟିଏ ଖୋଜି ଯାଇ ସେଠି ପହଞ୍ଚିଲି । ସେଠି ଭିକ୍ଷା କରି ସ୍ୱାମିଜୀ ଚଳନ୍ତି । ତାଙ୍କୁ ବାହାରକୁ ଯାଇ ମାଗିବାକୁ ପଡ଼େ ନାହିଁ । ତାଙ୍କର ଭକ୍ତମାନେ ଆସି କିଛି ସାହାଯ୍ୟ ଦେଇଯା'ନ୍ତି । ଏହିପରି ଆଶ୍ରମ ଚଳେ । ମୁଁ ଯାଇ ସେଠି ଯେତେବେଳେ ପହଞ୍ଚିଲି, କେଜାଣି କାହିଁକି ସ୍ୱାମିଜୀ ମୋର ସବୁ କଥା ଶୁଣି ମୋତେ ସେଠି ରଖିବା ପାଇଁ ଆଗ୍ରହ ପ୍ରକାଶ କଲେ । ଏହାର ବୋଧହୁଏ କାରଣ ହୋଇପାରେ, ସ୍ୱାମିଜୀ ବହୁବର୍ଷ ପୂର୍ବେ ବଂଗଦେଶରେ ଯେଉଁ ହିଂସାତ୍ମକ ଆନ୍ଦୋଳନ ଚାଲିଥିଲା, ସେଥିରେ ଯୋଗଦେଇ ଦଶବର୍ଷ ଜେଲ୍ ଯାଇଥିଲେ । ତା' ପରେ ଜେଲ୍‌ଭିତରକୁ ସେ ଆଧ୍ୟାତ୍ମସାଧନ ଦିଗରେ ବ୍ରତୀହେଲେ । ତା' ପରେ ଆସି ପୁରୀରେ ରହିଲେ । ତାଙ୍କର ବର୍ତ୍ତମାନ ବୟସ ପ୍ରାୟ ନବେ ହେବ, କିନ୍ତୁ ସ୍ୱାସ୍ଥ୍ୟ ସବଳ, ଦେଖିଲେ ମନେ ହେବ ସେ ପରମଶ ଷାଠିଏ ବର୍ଷର ହେବେ । ଆଉ ଏକ କାରଣ ହୋଇପାରେ ତାଙ୍କଠାରୁ ବୟସରେ ଅଳ୍ପ ଏପରି କେହି ଜଣେ ରହୁ ତାଙ୍କୁ ସାହାଯ୍ୟ କରିବା ପାଇଁ । ମୁଁ ଯେ ନିଜେ ବୁଢ଼ା ହେଲିଣି ବୋଲି ଭାବୁଥିଲି, ତାଙ୍କୁ ଦେଖି ମୋର ମନେ ହେଲା ମୁଁ ଜଣେ ଯୁବକ । ଅଯଥା ନିଜକୁ ବୁଢ଼ା ବୋଲି ଭାବୁଛି ।" ତୁଳସୀ ହସିଉଠି କିଛିକ୍ଷଣ ନୀରବ ରହିଲେ । ତା'ପରେ କହିଲେ—

"ବୃଦ୍ଧ ସ୍ୱାମିଜୀ ଦିନେ କଥା ପ୍ରସଙ୍ଗରେ କହିଲେ, 'ତୁଳସୀ, ତୁମେ ତ କହୁଛ ତୁମର ଅନେକ ସାଙ୍ଗ ଥିଲେ । ସେମାନଙ୍କ ଭିତରୁ କିଏ ବ୍ୟବସାୟୀ, କିଏ ଓକିଲ, କିଏ ମନ୍ତ୍ରୀ, ଆଉ କିଏ କିଏ କ'ଣ କ'ଣ ହେଲେଣି । ସେମାନଙ୍କୁ ଯା'ଇ କହ ଏ ଆଶ୍ରମକୁ କିଛି ସାହାଯ୍ୟ କରିବେ । ଏ କଥାଟାକୁ ପରିହାସ କଲା ପରି ସେ କହିଥିଲେ । ଏଥିପ୍ରତି ସେ ଗୁରୁତ୍ୱ ଦେଇ ନ ଥିଲେ । କାରଣ ପୁଣି ଥରେ ସେ କଥା କେବେ ବି କହି ନାହାନ୍ତି । କିନ୍ତୁ ସେ କଥା ମୋର ମନେ ରହିଗଲା । ଏ ପୁଣି ତିନି ଚାରି ବର୍ଷ ପୂର୍ବର କଥା । କିନ୍ତୁ ସ୍ୱାମିଜୀ ଆଉ ବସିଉଠି ପାରୁ ନାହାନ୍ତି । ମୁଁ ମଧ୍ୟ ବୃଦ୍ଧ । ବେଶୀ ପରିଶ୍ରମ କରିବାର ଶକ୍ତି ନାହିଁ । ଭାବିଲି ବାବାଜୀ ଯାହା କହିଥିଲେ ତା'କୁ ପରୀକ୍ଷା କରି ଦେଖେଁ ।

କଥାଟାକୁ ହରିବାବୁ ବୁଝିପାରିଲେ । କୌତୁହଳବଶତଃ ପଚାରିଲେ, "ଆଛା, ସେଠି ତୁ କି ସାଧନା କରୁଛୁ ?" ତୁଳସୀ ହସିହସି କହିଲେ– "ସାଧନା କଅଣ—ଏଇ ଚିତ୍ତକୁ ଶାନ୍ତ ରଖିବା ପାଇଁ ଚେଷ୍ଟା । ସେଠି ମୁଁ ଯେପରି ଶାନ୍ତିର ସନ୍ଧାନ ପାଇଛି, ଏପରି ପୂର୍ବେ କୌଣସି ଠାରେ ମୁଁ ପାଇନାହିଁ । ନ ଖାଇ ନ ପିଇ ପଡ଼ି ମରିଗଲେ ମଧ୍ୟ ମୁଁ ସେଠାରେ ଶାନ୍ତିରେ ମରିବି" । ହରିବାବୁ–"ଶାନ୍ତିର ସାଧନା ପାଇଁ ତ ଧନ ଆବଶ୍ୟକ । ଧନର ସାଧନା ଯେଉଁମାନେ କରୁଛନ୍ତି ସେମାନଙ୍କୁ ହେୟ ବୋଲି ଯେଉଁମାନେ ମନେ କରୁଛନ୍ତି, ଏ'ଟା ସେମାନଙ୍କର ଭୁଲ ନୁହେଁ କି ?" କହିଦେଇ ହରିବାବୁ ହସିଦେଲେ ।

ତୁଳସୀ– "ନିଶ୍ଚିତ ଭାବରେ ଭୁଲ୍ । ଧନ ପ୍ରତିଷ୍ଠା, ଶାନ୍ତି ଏଥିଭିତରୁ ଯାହା ପାଇଁ ଯେ ଚେଷ୍ଟା କରୁ ସେଥିପାଇଁ କେହି କାହାରିଠାରୁ ପ୍ରଧାନ ବା ହୀନ ନୁହଁନ୍ତି–ପୂର୍ବଜନ୍ମ ଓ ଏ ଜନ୍ମର କର୍ମଫଳ ଅନୁସାରେ ଏ ସବୁ ଉଦ୍ୟମ ହୋଇଥାଏ ।"

ହରିବାବୁଙ୍କ ଛାତି ଭିତରେ ବିବେକ ଯେ ଦଂଶନ କରିବାକୁ ଉଦ୍ୟତ ହେଉଥିଲା, ସେଥିରୁ ସେ ରକ୍ଷା ପାଇଲେ । ସେ କହିପକାଇଲେ, "ମୋରି ସାଙ୍ଗରେ ତାହାହେଲେ ତୋରି ପରି ଅନେକ ଦୁଃଖକଷ୍ଟ ସହୁଥିବେ । କାହାରି କିଛି ହୋଇପାରିଲା ନାହିଁ । ମୁଁ ମନ୍ତ୍ରୀ ହୋଇପାରିଛି ବୋଲି ମନରେ ମୋ ପ୍ରତି ହେୟ ଜ୍ଞାନ ନାହିଁ ତ ?"

ତୁଳସୀ–"ହେୟ ଜ୍ଞାନ ତ ନୁହେଁ, ଈର୍ଷା ବୋଲି କହ । କାହିଁକି ମୁଁ ଈର୍ଷା କରିବି ? ମୁଁ ପାରିଲି ନାହିଁ, ତୁ ପାରିଲୁ । ନ ପାରିବାରୁ ଏକ ସମୟରେ ମୋର ମନରେ ଦୁଃଖ ଓ ଈର୍ଷା ପ୍ରବଳ ଥିଲା । ଆଜି ତାହା ନାହିଁ–ଏହି ହେଉଛି ସେ ଆଶ୍ରମ ଓ ସ୍ୱାମିଜୀଙ୍କର ମୋ ମନ ଉପରେ ପ୍ରଭାବ ।"

ଆଉ କିଛି ନ କହି ହରିବାବୁ ଚୌକିରୁ ଉଠି "ବସ୍.ମୁଁ ଆସୁଛି" ବୋଲି କହି ଅଫିସ ଘରୁ ବାହାରିଗଲେ । କିଛିକ୍ଷଣ ପରେ ସେ ଅଫିସ ଘରକୁ ଫେରି ହସି ହସି ବସିଗଲେ ଚୌକିରେ । ଖଣ୍ଡେ ଖଣ୍ଡେ ତକିଆ

ନୋଟ୍ ତୁଳସୀ ହାତକୁ ବଢ଼ାଇ ଦେଇ କହିଲେ "ଏତିକି ଅଛି ଦେଉଛି । "ମାସକୁ ମାସ କିଛି କିଛି ଦେବି । କିନ୍ତୁ ଏକଥା ଯେପରି କୌଣସି ପ୍ରକାରେ ପ୍ରକାଶିତ ନ ହୁଏ ।" ନୋଟ୍ ନେବା ପାଇଁ ତୁଳସୀ ଯେ ହାତ ବଢ଼ାଇଥିଲେ ସେ ହାତକୁ ଫେରାଇ ନେଲେ । ଚେହେରାରେ ପ୍ରସନ୍ନତା ପରିବର୍ତ୍ତେ ବିସ୍ମୟ ପ୍ରକାଶ ପାଇଲା । ସେ କହିଲେ "କାହିଁକି, ତୁ କଅଣ କିଛି ଖରାପ କାମରେ ଦାନ କରୁଛ କି ? ପ୍ରକାଶ କରିବି ନାହିଁ କାହିଁକି ? ହରିବାବୁ—" ତୁ ବୁଝିନାହୁଁ ଆଜିକାଲିକାର ରାଜନୀତି । ସାଧୁ ସନ୍ନ୍ୟାସୀ ମଠ ମନ୍ଦିରକୁ ସାହାଯ୍ୟ କରିବା ସମାଜବାଦ ବିରୋଧୀ ପ୍ରତିକ୍ରିୟାଶୀଳ କାର୍ଯ୍ୟ ବୋଲି କୁହାଯାଏ ଏବଂ ସେଥିପାଇଁ ଦଳରୁ ମଧ୍ୟ ବହିଷ୍କାର କରାଯାଏ । ମୋ ବିରୁଦ୍ଧରେ ତ ଅଭିଯୋଗ ମୁଁ ଜଣେ ପ୍ରତିକ୍ରିୟାଶୀଳ ବ୍ୟକ୍ତି—ମୋତେ ତ ହଟେଇବା ପାଇଁ କେତେକ ପ୍ରାଣପଣେ ଲାଗିଛନ୍ତି ।

"ନାଁ ସେପରି ତ ନୁହେଁ—ମୁଁ ତ ଖବର କାଗଜରେ ଦେଖୁଛି ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ମଠ ମନ୍ଦିରମାନଙ୍କୁ ଯାଉଛନ୍ତି । ସେମାନେ ଆଧ୍ୟାତ୍ମବାଦରେ ବିଶ୍ୱାସ କରନ୍ତି । ସେମାନେ ତୋ ବିରୁଦ୍ଧରେ ଅନ୍ୟ କାରଣରୁ ଲାଗିଥିବେ । ତୁ ନିଜକୁ ଅତି ପ୍ରଗତିବାଦୀ ଦେଖାଇ ହୋଇ ସେ ବିରୋଧର ମୁକାବିଲା କରୁଥିବୁ ।"—ଏତିକି କହି ଦେଇ ତୁଳସୀ ହସି ପକାଇଲେ । ହରିବାବୁଙ୍କ ଚେହେରାରେ ଅଳ୍ପ ବିରକ୍ତି ଭାବ ପ୍ରକାଶ ପାଇଲା । "ତୁ ରାଜନୀତି କିଛି ବୁଝୁନାହୁଁ—ଗୋପନରେ ମୋ ସାହାଯ୍ୟ ନେବୁ ତ ନେ—ନ ନେବୁ ତ ତୋର ଇଚ୍ଛା ।" ହଠାତ୍ ଏପରି ରୋକ୍‌ଠୋକ୍ କଥା ଶୁଣି ତୁଳସୀ ଦୃଷ୍ଟି ଉଠାଇ କହିଲେ, "ଦେଖ୍ ହରି, ମୁଁ ଭିକ୍ଷୁକ ନୁହେଁ । ମୁଁ ତୋତେ ଦେଖା କରିବା ପାଇଁ ତୋ ଚପରାସୀ ହାତରେ ଖବର ଦେଲି । ଦୁଇ ଘଣ୍ଟା ଅପେକ୍ଷା କଲି, ତା'ପରେ ମୁଁ ଭିତରକୁ ପଶିଆସିଲି । ତୁ ତ ମୋତେ ଚିହ୍ନିପାରିଲୁ ନାହିଁ । ପୁଣି କେତେ ଗପ କଥା ସବୁ ମନେ ପକାଇଲୁ ! ମୁଁ ଭାବିଥିଲି ଯେଉଁ ଉଦ୍ଦେଶ୍ୟରେ ଆମେ ସବୁ ଏକ ସମୟରେ ଜେଲ୍ ବରଣ କରିଥିଲେ ସେ ଉଦ୍ଦେଶ୍ୟ ଅନ୍ତତଃ କିଛି ପରିମାଣରେ ସମାଜରେ କାର୍ଯ୍ୟ କରିଥିବ । ସେ ଉଦ୍ଦେଶ୍ୟ ଥିଲା ମନରେ ସତ୍‌ସାହସର

ଜାଗ୍ରତ କରାଇବା   ନିଜର  ବିବେକ ଅନୁସାରେ  ନିର୍ଭୀକ ହୋଇ ଲୋକେ କାର୍ଯ୍ୟ କରିଯିବେ । କିନ୍ତୁ ମୁଁ ତ ଦେଖୁଛି  ତୁ ସତ୍ ସାହସ  ସମ୍ପୂର୍ଣ୍ଣ ହରାଇ ବସିଛୁ । ମନ୍ତ୍ରୀପଦ କଅଣ ସ୍ୱର୍ଗକୁ  ନେବ  କି ?  ବାହାରକୁ  ଆଧୁନିକ ବୈଜ୍ଞାନିକ ଯୁଗର ଲୋକ ଦେଖାଇ ହୋଇ ଭୂରୁତା ଭିତରେ ଲୁଚେଇ ଯେଉଁମାନେ ତାବିଜ ଓ ତେଉଁରିଆ ପିନ୍ଧନ୍ତି, ଘରେ  ଲୁଚେଇ  ଯେଉଁମାନେ ତାନ୍ତ୍ରିକମାନଙ୍କୁ ଆଣି କାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ ପୂଜା ଇତ୍ୟାଦି କରଉଛନ୍ତି, ସେମାନଙ୍କ ଓ ତୋ ଭିତରେ ପ୍ରଭେଦ କଅଣ ? ସେମାନେ ଭୀରୁ କାପୁରୁଷ । ତୁ ମଧ୍ୟ ସେୟା—”  କହୁଁ  କହୁଁ  ତୁଳସୀ  ଖବଖବଣ ହୋଇଉଠିଲେ । ନିଜର ଦୁର୍ବଳତା ନିଜେ ବୁଝିପାରି ତା’କୁ ଲୁଗ୍ୱାଇବାର  ପ୍ରୟାସରେ  ଯେଉଁ ବିରକ୍ତି  ମିଶ୍ରିତ ବାହାଦୁରୀ ପ୍ରକାଶ  ପାଏ, ତାହା ହିଁ  ହରିବାବୁଙ୍କ  କଥାରୁ ଜଣାପଡ଼ିଲା । ସେ ଆଗକୁ ଝୁଙ୍କିପଡ଼ି ଦୃଢ଼ ସ୍ୱରରେ  କହିଲେ,  “ମୁଁ  ଭୀରୁ, କାରଣ ଏ ରାଜନୈତିକ ସଂଘର୍ଷରେ ମାଡ଼ିମକଚି ରହିଛି ମୁଁ । ଆଉ ତୁ ଭାରି ସାହସୀ, କାରଣ ତୁ ସଂଘର୍ଷରେ ଅସମର୍ଥ ହୋଇଯାଇ ଆଶ୍ରମରେ ବସିଲୁଣି । ବାସ୍ତବିକ୍ ମୋର ଭୁଲ୍ ହୋଇଛି,  ମୁଁ  ପୁରୁଣା  କଥାଗୁଡ଼ାକ  ପକାଇଲି । ଗତାନୁଗତିକ  ଭାବରେ  ତୋତେ  ସାକ୍ଷାତ ଦେଇ ବିଦା  କରିଦେଇଥିଲେ ଭଲ  ହୋଇଥାନ୍ତା ।”  ତୁଳସୀ ଉଠିପଡ଼ିଲେ  ଚୌକିରୁ  ।  ଦୃଢ଼ ଭାବରେ କହିଲେ  “ଦେଖ୍, ମୁଁ ଗୋପନରେ ତୋ  ସାହାଯ୍ୟ  ନେବି  ନାହିଁ । ମୁଁ ସଂଘର୍ଷକୁ ଭୟ ପାଇ ସେଥିରୁ ହଟିଯାଇ ନାହିଁ  ।  ମୁଁ  ବୁଝିଲି  ସେ  ସଂଘର୍ଷ ନିରର୍ଥକ । ଯେଉଁ  ସଂଘର୍ଷରେ  ଲୋକର  ସତ୍ ସାହସ  ଲୋପ ପାଏ ସେ ସଂଘର୍ଷକୁ  ତ୍ୟାଗ କରିବା ହିଁ  ଶ୍ରେୟସ୍କର । ତୁ ମନ୍ତ୍ରୀ ହୋଇ ଥାଆ ପଛକେ ଜୀବନର  ସାର୍ଥକତା  କେବେ  ଉପଲବ୍ଧି କରିପାରିବୁ ନାହିଁ ।  ତୋତେ ମନ୍ତ୍ରୀ ପଦରୁ ବାହାର କରିଦେଲେ ତୁ କାନ୍ଦି କାନ୍ଦି ଦିନ କାଟିବୁ । ମୁଁ ମନ୍ତ୍ରୀ ହୋଇନାହିଁ । କିନ୍ତୁ ସ୍ୱାଧୀନ ଜୀବନର ସନ୍ତୋଷ ମୁଁ  ଉପଭୋଗ  କରୁଛି । “ରଖ ତୋ ଟଙ୍କା’ ମୁଁ ଯାଉଛି ।”  ଏହା  କହିଦେଇ  ତରତର  ହୋଇ ଘରୁ ବାହାରକୁ ଚାଲିଗଲେ ।

ଏ ଘଟଣାର  କିଛିଦିନ  ପରେ  ହରିବାବୁ ଦଳପତିଙ୍କଠାରୁ ଚିଠି ପାଇଲେ ତାଙ୍କୁ ଦଳରୁ ଏବଂ ମନ୍ତ୍ରୀପଦରୁ  ବହିଷ୍କାର କରି ଦିଆ ହୋଇଛି ।

ଏହା ହେବ ବୋଲି ସେ ଆଗରୁ ଅନୁମାନ କରୁଥିଲେ ମଧ୍ୟ ଭାବୁଥିଲେ ହୁଏତ ତା' ହୋଇ ନ ପାରେ । କିନ୍ତୁ ହେଲା ଯେତେବେଳେ ସେ କିଛି ସମୟ ପାଇଁ ସ୍ତବ୍ଧ ହୋଇଗଲେ । ଜୀବନରେ ତାଙ୍କର ସବୁ ସରିଗଲାପରି ମନେହେଲା । ମନେପଡ଼ିଗଲା, ତୁଳସୀ କହିଥିଲା......"କାନ୍ଦି କାନ୍ଦି ତୋର ଦିନ ଯିବ ।" ପୁଣି ମନେ ପଡ଼ିଗଲା ସେ ସତ୍‌ସାହସ ହରାଇଛନ୍ତି, ପୁଣି ମନେ ପଡ଼ିଲା ତାଙ୍କର ପୂର୍ବ ଜୀବନ, କାରାବରଣ ଓ ସେ ତ୍ୟାଗର ଉଦ୍ଦେଶ୍ୟ । ଗର୍ବି ଭାବି ବିଚଳିତ ହୋଇ ତୁଳସୀ କେଉଁଠି ପୁରୀରେ ରହେ ଜାଣିବା ପାଇଁ ଚେଷ୍ଟା କଲେ । ଖବର ନେଇ ବୁଝିଲେ ତୁଳସୀ ଯେଉଁ ଆଶ୍ରମରେ ରହୁଥିଲେ ତା'ରି ନାମ ସେ ଦେଇଥିଲେ ଶେଷାଶ୍ରୟ । ମାତ୍ର ଦିନକ ପୂର୍ବରୁ ସେ ହୃଦ୍‌ରୋଗରେ ପୀଡ଼ିତ ହୋଇ ମାରା ପଡ଼ିଛନ୍ତି ।

ସେ ଭୁବନେଶ୍ୱରକୁ ଯାଇଥିଲେ ତାଙ୍କର ଜଣେ ସାଙ୍ଗଙ୍କ ସହିତ ଦେଖା କରିବାକୁ । ସେଠୁ ଫେରି ଛାତିରେ ବେଦନା ହେଉଛି ବୋଲି କହିଲେ । ତା'ପରେ ଖଣ୍ଡେ ଚିଠି ଲେଖିଲେ ତାଙ୍କ ସାଙ୍ଗ ପାଖକୁ । ଲେଖିସାରି ବସିଛନ୍ତି ହଠାତ୍ ଗଡ଼ିପଡ଼ିଲେ । ପ୍ରାଣ ଛାଡ଼ିଗଲା । ଏ ଚିଠି କଥା ଶୁଣି ହରିବାବୁ ନିଜେ ପୁରୀ ଯାଇ ସେ 'ଶେଷାଶ୍ରୟ'ରେ ପହଞ୍ଚିଲେ । ସ୍ୱାମିଜୀ ନିର୍ବିକାର ଚିତ୍ତରେ ବସିଛନ୍ତି । ତାଙ୍କୁ ଦେଖି ହରିବାବୁଙ୍କୁ ସଙ୍କୋଚ ହେଲା । କାରଣ ସେ ଶୁଣିଥିଲେ ଯେ ସ୍ୱାମିଜୀ ଜଣେ ବଂଗଦେଶର ପୂର୍ବତନ ବିପ୍ଳବୀ । ହରିବାବୁ ନମସ୍କାର କରି ପଚାରିଲେ ତୁଳସୀର ଖବର । ସ୍ୱାମିଜୀ ବଂଗଳାରେ କହିଲେ, "ସେ ଆଉ ଏ ଲୋକରେ ନାହିଁ ।" ତା' ପରେ ହରିବାବୁ ଚିଠି କଥା ପଚାରିଲେ । ତାଙ୍କ ପାଖରେ ପଡ଼ିଥିବା ଖଣ୍ଡେ କାଗଜ ଦେଖାଇ ସ୍ୱାମିଜୀ କହିଲେ, "ଏଇତ କ'ଣ ସେ ଲେଖିଥିଲା । ଲେଖିବାର ପ୍ରାୟ ଘଣ୍ଟାକ ଭିତରେ ତ ସେ ଚାଲିଗଲା । ଏହି ସେ ଚିଠିଖଣ୍ଡ ନା କଅଣ ? ଭୁବନେଶ୍ୱରର ଜଣେ କିଏ ହରିଚରଣ ଦାସଙ୍କଠାକୁ ଲେଖା । କିଛି ଠିକଣା ଲେଖା ନାହିଁ । ତେଣୁ ମୁଁ ତାକୁ ଆଉ ପଠାଇ ପାରିଲି ନାହିଁ ।" ହରିବାବୁଙ୍କ ଆଖି ସେତେବେଳକୁ ଛଳଛଳ । ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ମୁଁ ସେହି ଲୋକ, ମୋତେ ସେ ଚିଠିଟି ଦିଅନ୍ତୁ ।" ହରିବାବୁ ଚିଠିଖଣ୍ଡ ନେଇ ତା'କୁ ହଠାତ୍ ନ ପଢ଼ି ସିଧା ଚାଲିଆସିଲେ

ଭୁବନେଶ୍ୱର ତାଙ୍କ ଘରକୁ । ନିଜ ମଟର ଗାଡ଼ିରେ ଯାଇଥିଲେ । ଫେରିଲା ବେଳେ ଯେଉଁ ଦେଢ଼ଘଣ୍ଟା ଗାଡ଼ିରେ ବସିଥିଲେ' ବାରମ୍ବାର ମନ କରୁଥାନ୍ତି ଚିଠିଟି ପଢ଼ିବା ପାଇଁ । କିନ୍ତୁ କେଜାଣି କାହିଁକି ଚିଠିଟି ପଢ଼ିବା ପାଇଁ ତାଙ୍କର ସାହସ ହେଉ ନ ଥାଏ । ଡର ମାଡୁଥାଏ, କାଳେ ତାଙ୍କରି ପାଇଁ ତାର ମୃତ୍ୟୁ ଘଟିଲା କି ! ଘରେ ପହଞ୍ଚି ଚିଠିଟି ପଢ଼ିଲେ । ଗୁମ୍‌ମାରି ବସିରହିଲେ ଅନେକକ୍ଷଣ ଯାଏ, ଚିଠିଟି ଏହି–

"ହରି, ମୁଁ ଭିକ ମାଗିବା ପାଇଁ ଯାଇ ନ ଥିଲି । ମୁଁ ଯାଇଥିଲି ଜାଣିବା ପାଇଁ ଆମେ ଯେଉଁ ଉଦ୍ଦେଶ୍ୟରେ ନିଜର ଯୁବଶକ୍ତି ପ୍ରୟୋଗ କରି ଜୀବନର ସର୍ବୋତ୍କୃଷ୍ଟ ଅଂଶଟିକୁ କାଟିଦେଲୁ, ସେ ଉଦ୍ଦେଶ୍ୟ କିଛି ପରିମାଣରେ ସଫଳ ହୋଇଛି କି ନାହିଁ । ସ୍ୱାମିଜୀ ବୋଧହୁଏ ତାହା ହିଁ ପରୀକ୍ଷା କରୁଥିଲେ । ଘୃରିଆଡ଼େ ଭୟର ରାଜତ୍ୱ । ନୈତିକ ସାହସ କହିଲେ କ'ଣ ତାହା ଯୁବକମାନେ ବୁଝିପାରୁ ନାହାଁନ୍ତି । ଭୟ ଦୂର କରିବା ପାଇଁ, ସତ୍‌ସାହସ ଜାଗ୍ରତ କରିବା ପାଇଁ ତ ଆମେ ଲାଗିଥିଲେ । ମୁଁ ଭାବିଥିଲି, ହୁଏତ ମୁଁ ରାଜନୀତିରୁ ଦୂରେଇ ଯାଇଛି ବୋଲି ମୋତେ ପ୍ରକୃତ ଅବସ୍ଥା ଜଣାଯାଉ ନାହିଁ । ମନେ ପଡ଼ିଗଲା ତୋ କଥା । ତୁ ତ ରାଜନୀତିରେ ବୁଡ଼ିକରିଅଛୁ । ତୋ ସାଙ୍ଗରେ କଥା ହୋଇ ଜାଣିଛି ବାସ୍ତବିକ୍ ଆମ ଉଦ୍ୟମ କେତେ ପରିମାଣରେ ସଫଳ ହୋଇଛି । ଯେତିକି ସମୟ ତୋ ସହିତ କଥା ହେଲି, ମୋର ମନେ ହେଲା, ଯେଉଁ ଅମୂଲ୍ୟ ଜୀବନ ନେଇ ଆମେ ଏ ସଂସାରକୁ ଆସିଥିଲୁଁ, ନିରର୍ଥକ ଉଦ୍ୟମରେ ସେ ସମ୍ପୂର୍ଣ୍ଣ ମୂଲ୍ୟହୀନ ହୋଇଯାଇଛି । ତୋପରି ଲୋକ ଯଦି ନିଜ ବିଶ୍ୱାସ ଅନୁସାରେ ନ ଚାଲି ପରର ବିଶ୍ୱାସକୁ ଭୟ କରୁଥାଏ, ପ୍ରକାଶ୍ୟ ଭାବରେ ନିଜ ବିଶ୍ୱାସ ଅନୁସାରେ ସାମାନ୍ୟ ଅର୍ଥଦାନ କରିବାକୁ ଭୟ ପାଉଥାଏ, ତେବେ ତ ଜାଣିବାକୁ ହେବ, ଆମ ଜୀବନ ବୃଥାରେ ଗଲା । ଇତି ।

ତୁଳସୀ

— ୨ —

ହରିବାବୁଙ୍କୁ ଯେପରି ଦଳରୁ ବହିଷ୍କାର କରିଦିଆ ଯାଇଛି ସେହିପରି ଅନ୍ୟ କେତେକଙ୍କୁ ମଧ୍ୟ ପୂର୍ବରୁ ବାହାର କରି ଦିଆ ହୋଇଛି ।

ମନ୍ତ୍ରୀ ହରିବାବୁ ଦଳରୁ ଏବଂ ମନ୍ତ୍ରୀ ପଦରୁ ବହିଷ୍କାର କରିଦେବାରେ ପୂର୍ବ ବହିଷ୍କୃତ ବ୍ୟକ୍ତିମାନେ ଏକ ପ୍ରକାର ସନ୍ତୋଷ ଅନୁଭବ କଲେ ଯେପରି ଲଙ୍ଗୁଳକଟା ଶିଆଳର ଅନ୍ୟର ଲାଙ୍ଗୁଳ କଟିଯିବାରେ ହୋଇଥାଏ । ସେମାନେ ଆସି ହରିବାବୁଙ୍କ ପ୍ରତି ସହାନୁଭୂତି ଜଣାଇଲେ ଦଳର ନେତୃତ୍ୱକୁ ସମାଲୋଚନା କରି, "କି ଏକ ସମାଜବାଦର ଧୂଆଁ ଉଠିଲା, ତା' ପଛରେ ଗୋଡ଼ାଇ ଗୋଡ଼ାଇ ଆମେ ତ ସବୁ ଛାଡ଼ିଲୁ, ସବୁ କଲୁ, ଏପରିକି ଆମ୍ଭ ପୋଷାକ ମଧ୍ୟ ବଦଳାଇ ଦେଲୁ । ଖଦଡ଼ ପରିବର୍ତ୍ତେ ଟେରିଲିନ୍ ପିନ୍ଧିଲୁ । ଆଉ କଅଣ କରିଥାନ୍ତୁ—ନାଁ, ଆମକୁ ଏକଜୁଟ୍ ହୋଇ କିଛି ଗୋଟାଏ କରିବାକୁ ହେବ ।" ବନ୍ଧୁମାନେ ଏହିପରି ଅଧା ଭରି, ଅଧା ହୁଗୁଳା କହୁଥିଲାବେଳେ ହରିବାବୁ ସମ୍ପୂର୍ଣ୍ଣ ନୀରବ ହୋଇ ବସିଥାନ୍ତି । ସେ ଭାବୁଥାନ୍ତି ତୁଳସୀର ଚିଠି କଥା । ଆଉ ସେ 'ଶେଷାଶ୍ରୟ' କଥା । କିଛିକ୍ଷଣ ପରେ ମୁହଁ ଫିଟାଇ ହରିବାବୁ କହିଲେ, "ତୁମ୍ଭେମାନେ ବୋଧହୁଏ ଆଶା କରୁଛ ମୁଁ ଦଳରୁ ବହିଷ୍କୃତ ଲୋକଙ୍କ ନେତୃତ୍ୱ ନେଇ ଆଉ ଗୋଟିଏ ଦଳ ସୃଷ୍ଟି କରେଁ । ହସିଦେଇ ଏକ ଦୃଷ୍ଟାନ୍ତ ଦେଲେ —"ନଅଙ୍କ ଦୁର୍ଭିକ୍ଷ ବେଳେ ବହୁଲୋକ ପେଟ ବିକଳରେ ଅନ୍ନଛତ୍ରରେ ଯାଇ ଖାଇଲେ, ସେମାନଙ୍କୁ ଜାତିରୁ ବାହାର କରିଦିଆ ହେଲା । ସେମାନେ ଛତ୍ରଖିଆ ବୋଲି ଆଉ ଏକ ଜାତି ହୋଇଗଲେ । ସେହିପରି ମୁଁ ଏକ ଦଳ ବିତାଡ଼ିତ ଜାତି ସୃଷ୍ଟିକରେଁ, ମୁଁ ନିଜେ କିଛି ଭାବି ସ୍ଥିର କରି ନାହିଁ । ମୁଁ ଭାବେ—ଆଗେ ମୁଁ ମୋ ନିଜ ମନକୁ ସ୍ଥିର କରେ—ତାହା ପରେ ଯାହା ହେବ ।" ଏହିପରି ଆଲୋଚନା ଥରେ ନୁହେଁ ଏକାଧିକ ଥର ବନ୍ଧୁମାନେ ଆସି ହରିବାବୁଙ୍କ ସହିତ କରନ୍ତି । ହରିବାବୁଙ୍କ ମନରେ କିନ୍ତୁ ଘୂରୁଛି ତୁଳସୀ ଓ ତା' ଚିଠି । ତାଙ୍କ ମନ ଭିତରୁ କେହି କହୁଥାଏ ତାଙ୍କରି ଆଚରଣ ଯୋଗେ ତୁଳସୀର ମୃତ୍ୟୁ ଘଟିଛି । ସେ ଯେଉଁ ମାନସିକ ଆଘାତ ପାଇଛି, ସେଥିରେ ତା'ର ହୃତ୍‌ପିଣ୍ଡ ଶିଥିଳ ହୋଇଗଲା । କେବଳ ବନ୍ଧୁମାନଙ୍କ ସହିତ ଆଲୋଚନାରେ ସେ ଯେ ଅନ୍ୟ ମନସ୍କ ରହୁଥିଲେ ତା' ନୁହେଁ । ନିଜ ଘରେ ସ୍ତ୍ରୀ ଓ ପିଲାମାନଙ୍କ ଗହଣରେ ମଧ୍ୟ ଅନ୍ୟ ମନସ୍କ ରହୁଥିଲେ । ମନ୍ତ୍ରୀପଦ ଯେଉଁଦିନ ଗଲା ସେଦିନ ଘରେ କାନ୍ଦବୋବାଳି ପଡ଼ିଗଲା ।. ସ୍ତ୍ରୀ ତ ବୟସ୍କା, ଦୁଇପୁଅ ମଧ୍ୟ ପ୍ରାପ୍ତବୟସ୍କ ଏବଂ କଲେଜରେ ଛାତ୍ର ନେତା ହିସାବରେ ପରିଚିତ । ସ୍ତ୍ରୀ ତ କାନ୍ଦି

ପକାଇଲେ, ସେ ବଡ଼ କଥା ନୁହେଁ । ଦୁଇପୁଅ ମଧ୍ୟ କାନ୍ଦଣା ଆରମ୍ଭ କରିଦେଲେ । ପୁଅ ଦୁହିଁଙ୍କ କାନ୍ଦଣା ଦେଖି ହରିବାବୁ ତୁଳସୀ କଥା ଭାବୁଥାନ୍ତି, "ଏହି କ'ଣ ଯୁବ ମନୋବୃତ୍ତି । ଏଥିପାଇଁ କ'ଣ ଆମେ ନିଜ ଯୌବନ ଉଜାଡ଼ି ଦେଇଥିଲୁ ?" କିନ୍ତୁ ସେ ତ ନିଜେ ମନ ଭିତରେ ଅତି ଦୁଃଖିତ । ଚାଷୀର ବଳଦ ହଜିଗଲେ ଯେପରି ସବୁ ଶୂନ୍ୟ ଜଣାପଡ଼େ, ହରିବାବୁଙ୍କୁ ସେହିପରି ଚାରିଆଡ଼େ ଶୂନ୍ୟ ଜଣାଯାଉଛି । କାହାରିକୁ ସାନ୍ତ୍ୱନା ବା ସାହସ ଦେବା ଅବସ୍ଥାରେ ସେ ନ ଥାନ୍ତି । ଏହିପରି ଦୁଇ ଚାରିଦିନ ପରେ ସେ ପୁରୀ ଗଲେ ଶ୍ରେୟାଶ୍ରୟ ଆଶ୍ରମକୁ ।

ସ୍ୱାମିଜୀ ଚେକାମାଡ଼ି ଏକ ଆସନରେ ବସିଥିଲେ । ବୋଧହୁଏ ସେ ଧ୍ୟାନମଗ୍ନ ଥିଲେ । କାରଣ ହରିବାବୁ ଭୂମିଷ୍ଠ ଦଣ୍ଡବତ କରି କିଛିକ୍ଷଣ ଛିଡ଼ା ହୋଇ ରହିଥିଲେ ମଧ୍ୟ ସ୍ୱାମିଜୀ ବସିବା ପାଇଁ କୌଣସି ଇଙ୍ଗିତ ଦେଇନାହିଁ । ଯାହାହେଉ କିଛିକ୍ଷଣ ପରେ ସ୍ୱାମିଜୀ ଦୀର୍ଘ ନିଃଶ୍ୱାସଟିଏ ପକାଇ ହରିବାବୁଙ୍କ ଆଡ଼କୁ ଚାହିଁଲେ ଓ ବସିବା ପାଇଁ ସଙ୍କେତ ଦେଲେ । ଅତି କ୍ଷୀଣ ସ୍ୱରରେ ବଙ୍ଗଳାରେ କହିଲେ, "ବାବା କୁଆଡ଼େ ଆସିଛ ?" କଅଣ କହିବେ, ହରିବାବୁ ହଠାତ୍ ସ୍ଥିର କରିପାରିଲେ ନାହିଁ । କାରଣ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ବିନା ତାଙ୍କର ଏ ସାକ୍ଷାତ୍କାର । ସେ ହାତଯୋଡ଼ି କହିଲେ—'ମୁଁ ସେ ତୁଳସୀର ସାଙ୍ଗ ଯା' ପାଖକୁ ଚିଠି ଖଣ୍ଡେ ଲେଖି ସେ ଏ ସଂସାରରୁ ଚାଲିଗଲା ।" ସ୍ୱାମିଜୀ ଅଳ୍ପ ହସି କହିଲେ, ଜୀବନ ଥିବାଯାଏ ବନ୍ଧୁବାନ୍ଧବ, ସାଙ୍ଗ, ଏସବୁ ସିନା । ଜୀବନ ଚାଲିଗଲେ ଜଳବିନ୍ଦୁ ସମୁଦ୍ରରେ ମିଶିଯିବା ଭଳି କେହି କାହାରି ନୁହଁନ୍ତି ।" ଇତିମଧ୍ୟରେ ହରିବାବୁ ନିଜର ଚିନ୍ତାକୁ ସଜାଡ଼ି ଦେଇ ନମ୍ର ଭାବରେ ପଚାରିଲେ—"ସ୍ୱାମିଜୀ, ମୁଁ ଏ ଆଶ୍ରମକୁ କିଛି ସାହାଯ୍ୟ ଦେବାକୁ ଚାହେଁ" ସ୍ୱାମିଜୀଙ୍କୁ ନିଜ ସମ୍ବନ୍ଧରେ ଏବଂ ତୁଳସୀ ସହିତ ତାଙ୍କର ପୂର୍ବ ସମ୍ବନ୍ଧ ଓ ଶେଷ ଦେଖାର ବିବରଣୀ ସବୁ ହରିବାବୁ କହିଲେ । ସ୍ୱାମିଜୀ ଆଶ୍ରମର ଏକ କାନ୍ଥରେ ଟଙ୍ଗା ହୋଇଥିବା ଏକ ଦୀର୍ଘ ତାଲିକା ଆଡ଼କୁ ଅନାଇ କହିଲେ—"ଦେଖନ୍ତୁ ହରିବାବୁ, ଏ ଆଶ୍ରମକୁ ଯେ ଯାହା କିଛି ଦିଅନ୍ତି, ସମସ୍ତଙ୍କ ନାମ ଓ ଦାନର ପରିମାଣ ଲେଖା ହୋଇ ଏ ତାଲିକାରେ ଟଙ୍ଗାଯାଏ । ପନ୍ଦରବର୍ଷ ବୟସରେ

ମୁଁ ଯେତେବେଳେ ରିଭଲ୍‌ଭରରେ ଜଣେ ପୋଲିସ୍ ଅଫିସର୍‌କୁ ମାରିବା ପାଇଁ ଗୁଳି କଲି, ସେ ସମୟରେ ମୁଁ ଏ ଦୁନିଆଁକୁ ଯେପରି ଦେଖୁଥିଲି ଦଶବର୍ଷ ଜେଲ୍‌ରେ ରହିବା ପରେ ଦୁନିଆଁକୁ ଅନ୍ୟ ପ୍ରକାରେ ଦେଖିଲି । ତା'ପରେ ପୁଣି ଆଜି ଆଉ ଏକ ପ୍ରକାର ଦେଖୁଛି । ପ୍ରାୟ ହଜାରେ ବର୍ଷ ହେଲା ଏ ଜାତିର ନୈତିକ ମେରୁଦଣ୍ଡ ଭାଙ୍ଗି ପଡ଼ିଛି । ସାମାନ୍ୟ ଯେତିକି ନୈତିକ ଉନ୍ନତି ଘଟିଥିଲା ସେଥିରେ ଦେଶ ସ୍ୱାଧୀନ ହେଲା । କିନ୍ତୁ ହାଏରେ କପାଳ ! ସ୍ୱାଧୀନତାର ମାତ୍ର ପଚିଶ ବର୍ଷ ପରେ ପୁଣି ସେ ନୈତିକତା ହ୍ରାସ ପାଇଲା । ଏହାର ସୂଚନା ମୁଁ ପାଇଥିଲି ଆମର ସେ ବଂଗଭଂଗ ଆନ୍ଦୋଳନବେଳେ । ଅର୍ଥର ଲୋଭ ବିପ୍ଳବୀମାନଙ୍କୁ ମଧ୍ୟ ଇତଃସ୍ତତ କରି ଦେଇଥିଲା । ଗାନ୍ଧିଜୀ କେତେକ ପରିମାଣରେ ସମାଜର ନୈତିକତା ଉଦ୍ଧାର କରିଥିଲେ । ମହାଭାରତରେ ଭୀଷ୍ମଙ୍କ ପରି ବ୍ୟକ୍ତି କହିଥିଲେ, "ଅର୍ଥର ପ୍ରଭୁ କେହି ନାହାନ୍ତି, ଅର୍ଥ ସମସ୍ତଙ୍କର ପ୍ରଭୁ ।" ଏହାକୁ ହିଁ ଖଣ୍ଡନ କରିବା ପାଇଁ ମୁଁ ଆସି ଏଠି ରହିଲି । ମୋର ସାଙ୍ଗ ଯେଉଁମାନେ ସେମାନେ ମୋତେ ମନେ ପକାଇ କିଛି କିଛି ଅର୍ଥ ପଠାଇ ଦିଅନ୍ତି । ସମସ୍ତଙ୍କୁ ଜଣାଇଥିଲି ମୋତେ ପ୍ରକାଶ୍ୟ ଭାବରେ ସାହାଯ୍ୟ ଦେଲେ ମୁଁ ଗ୍ରହଣ କରିବି ନଚେତ୍ ନୁହେଁ । ଏକ ସମୟରେ ମୁଁ ବିପ୍ଳବୀ ଥିଲି ବୋଲି କଲିକତାର ସି.ଆଇ.ଡ଼ି. ଆସି ଖବର ନେଉଥିଲେ । ଆଜିକାଲି ଆଉ ଆସୁନାହାନ୍ତି । କିନ୍ତୁ ସି.ଆଇ.ଡ଼ି. ଭୟରେ ମୋର ଅନେକ ପୂର୍ବତନ ସାଙ୍ଗ ଏପରିକି ପୂର୍ବତନ ଜେଲ୍ ସାଙ୍ଗ ମଧ୍ୟ ମୋତେ ଚିଠିପତ୍ର ଦିଅନ୍ତି ନାହିଁ । କି ସାହାଯ୍ୟ କିଛି ଦିଅନ୍ତି ନାହିଁ । ଏସବୁ ତୁଳସୀ ଜାଣିଥିଲା । ତେଣୁ ଗୋପନରେ ସାହାଯ୍ୟ ନେବା ପାଇଁ ସିଧା ମନା କରିଦେଲା । ମୁଁ ଭାବୁଛି, ତୁମେ ଏ ଆଶ୍ରମକୁ ସାହାଯ୍ୟ ଦେବା ପାଇଁ ଏତେ ବ୍ୟଗ୍ର ହୁଅନାହିଁ । ତମର ରାଜନୈତିକ ସମସ୍ୟାର ସମାଧାନ ହୋଇଯାଉ । ତୁଳସୀ ଏ ଆଶ୍ରମର ନାମ 'ଶେଷାଶ୍ରୟ' ଦେଇଥିଲା । ଘୂରିଆଡୁ ବୁଲି ବୁଲି ନିରସ୍ତ ହେଲେ ଏଠିକି ଜଣେ ଆସିବ ବା ସାହାଯ୍ୟ କରିବ, ଏହା ଥିଲା ତା'ର କାମନା । ତୁଳସୀ ଜୀବନଟାକୁ ନିରର୍ଥକ ମନେ କରି ଏଠୁ ଚାଲିଗଲା । କିନ୍ତୁ କାହାରି ଜୀବନ ନିରର୍ଥକ ନୁହେଁ—ସାର୍ଥକତା ବା ନିରର୍ଥକତା ସବୁ ନିର୍ଭର କରେ ନିଜର ମନ ଉପରେ । ତୁଳସୀ ଅଶାନ୍ତ ଜୀବନରେ ଯେଉଁ ଶାନ୍ତି ଏଠାରେ ଲାଭ କରିଥିଲା, ତୁମ ସହିତ ସାକ୍ଷାତ

ପରେ ସେ ଶାନ୍ତି ନଷ୍ଟ କଲା । ଯାଅ ତୁମର ରାଜନୀତିକୁ ସମ୍ଭାଳ..........”

ଏତିକି କହି ସ୍ୱାମିଜୀ ନୀରବ ଓ ଗମ୍ଭୀର ହୋଇଗଲେ । ହରିବାବୁ ଆଉ କିଛି କହି ନ ପାରି ଦଣ୍ଡବତ କରି ସେଠୁଁ ବିଦା ହୋଇ ଆସିଲେ ।

'ଶେଷାଶ୍ରୟକୁ' ଜଣେ ମନ୍ତ୍ରୀଙ୍କ ଗାଡ଼ି ଯେ ଦୁଇଥର ଯିବା ଆସିବା କଲା ଏଥିରେ ଆଖପାଖରେ ଲୋକଙ୍କର କୌତୂହଳ ଜାତ ହେଲା । କଥାଟା କ୍ରମେ ପୁରୀ ସହର ସାରା ରାଷ୍ଟ୍ର ହେଲା । ଛୋଟ ସହର ବଡ଼ଦାଣ୍ଡ ଛଡ଼ା ଅନ୍ୟ ରାସ୍ତାରେ ମଟର ଗାଡ଼ି ଖୁବ୍ କମ୍ ଯା ଆସ କରେ । ସମୁଦ୍ର କୂଳରେ ସର୍କିଟ୍ ହାଉସ୍ । ସେଠିକି କେହି ଗଲେ ଆସିଲେ ଗୁରିଆଡ଼େ ଖବର ବାଜିଯାଏ । ସର୍କିଟ୍ ହାଉସ୍ ବାଟେ ମନ୍ତ୍ରୀଙ୍କ ଗାଡ଼ି ଗଲା, ଅଥଚ ସେଠି ସେ ନ ଅଟକି ସିଧା ଗଲେ ଗୋଟେ ଛୋଟ ଆଶ୍ରମକୁ । କଥା କଣ ? ଆଶ୍ରମଟି ତ ସେତେ ପ୍ରସିଦ୍ଧ ନୁହେଁ । କେବଳ ପୋଲିସ ଓ ଛାତ୍ରମହଲ ଛଡ଼ା ଅନ୍ୟତ୍ର ଏହାର ନାମ ମଧ୍ୟ ଅଜଣା । ପୂର୍ବତନ ବିପ୍ଳବୀଙ୍କ ଖବର ରଖିବା ପାଇଁ କଲିକତା ପୋଲିସଙ୍କ ଅନୁରୋଧରେ ପୁରୀ ପୋଲିସ୍ ସେ ଆଶ୍ରମର ଖବର ମାତ୍ର ରଖନ୍ତି । ପ୍ରଥମେ ପ୍ରଥମେ ଜଣେ କନେଷ୍ଟବଲ ଆସି ଆଶ୍ରମ ଆଗରେ ଛିଡ଼ା ହେଉଥିଲା । ଏବେ ତାହା ଆଉ ନାହିଁ । ପୋଲିସ୍ ଥାନାରୁ ବୁଝି ହରିବାବୁ ଏ ଆଶ୍ରମର ପତ୍ତା ପାଇଥିଲେ । ଆଉ ଛାତ୍ର ମହଲ ! ବିପ୍ଳବ ଶବ୍ଦଟିଏ ଏମାନଙ୍କର ମୋହ କାରଣ ସେ ବୟସରେ ଅନେକ ବିପ୍ଳବର ସ୍ୱପ୍ନ ଦେଖନ୍ତି । ପ୍ରାୟ ସମସ୍ତଙ୍କ ସେ ସମ୍ବନ୍ଧରେ କିଛି ଜାଣିବା ପାଇଁ କୌତୂହଳ । ଜଣେ ବଙ୍ଗାଳି ବିପ୍ଳବୀ ଆସି ସ୍ୱର୍ଗଦ୍ୱାର ପାଖରେ ରହୁଛନ୍ତି । ଏ ଖବର ଚୁପ୍ ଚୁପ୍‌ରେ ପ୍ରଥମେ ପ୍ରଚାରିତ ହେଲା । ତାଙ୍କ ପାଖକୁ ଲୁଚି ଲୁଚି କେତେଜଣ ପ୍ରଥମେ ଗଲେ । ପ୍ରକାଶ୍ୟରେ ଯିବା ବା କିଛି କରିବା ପାଇଁ ବାଧା ନ ଥିଲେ ମଧ୍ୟ ଲୁଚିକି ଯିବା ବା ଗୋପନରେ କିଛି କରିବାରେ ଏକ ପ୍ରକାରର ମାଦକତା ଥାଏ । ଯେଉଁମାନେ ପ୍ରଥମେ ପ୍ରଥମେ 'ଶେଷାଶ୍ରୟ'କୁ ଯାଉଥିଲେ, ସେମାନେ ପାସ୍ କରି କିଏ କୁଆଡ଼େ ଚାକିରୀ, ଓକିଲତି, ବାଣିଜ୍ୟ ବା ରାଜନୀତି କଲେଣି ବା ବେକାର ହୋଇ ଗାଁରେ ଅଛନ୍ତି । କିନ୍ତୁ ପରମ୍ପରାକ୍ରମେ ପୁରୀ ଛାତ୍ରମହଲରେ 'ଶେଷାଶ୍ରୟ' ତଥାକଥିତ ସଂଗ୍ରାମୀ, ପ୍ରଗତିବାଦୀ ଛାତ୍ରମାନଙ୍କର ଏକ ଅତିପରିଚିତ ସ୍ଥାନ । ଅନେକ ଛାତ୍ର ସ୍ୱାମିଜୀଙ୍କ ସହିତ ବସି ବହୁ ସମୟ କଥାବାର୍ତ୍ତା

କରନ୍ତି । ସ୍ୱାମିଜୀ ମଧ୍ୟ ଯୁବକମାନଙ୍କ ସହିତ କଥାଭାଷା ହେବା ପାଇଁ ସୁଖପାଆନ୍ତି । ହରିବାବୁ ସ୍ୱାମିଜୀଙ୍କଠାରୁ ବିଦାୟ ନେଇ ଯିବାର ଦିନେ ଦୁଇଦିନ ପରେ ଦଳେ ଛାତ୍ର ଆସି 'ଶେଷାଶ୍ରୟ'ରେ ପହଞ୍ଚିଲେ । ଏତେ ଯୁବକଙ୍କୁ ଦେଖି ସ୍ୱାମିଜୀ ବିସ୍ମିତ ହେଲେ । ଏତେ ଲୋକଙ୍କ ବସିବା ପାଇଁ ସ୍ଥାନ କାହିଁ ? ଆଶ୍ରମଟିର ଗୋଟିଏ ବଖରା ମାତ୍ର ଘର । ପାଖକୁ ରୋଷେଇଘରଟି ଓ ପଛରେ ପାଇଖାନାଟିଏ । ସ୍ୱାମିଜୀଙ୍କ ଜଣେ କଲିକତା ସାଙ୍ଗ ତାଙ୍କ ପାଇଁ ଏ ଘରଟି ତିଆରି କରିଦେଇଥିଲେ ବହୁବର୍ଷ ପୂର୍ବେ । ତାଙ୍କର ନାମ ମଧ୍ୟ କାନ୍ଥରେ ଲେଖା ଅଛି । ବଖରାଟିକ ଘରେ ସ୍ୱାମିଜୀଙ୍କ ଶୋଇବା, ବସିବା, ଆଗନ୍ତୁକମାନଙ୍କ ସହିତ କଥା ହେବା, ସବୁ ସେଠି ହୁଏ । ସ୍ୱାମିଜୀ ନିଜେ ହାତରେ ରୋଷେଇ କରନ୍ତି ଏବଂ ସବୁ କାମ କରନ୍ତି । ତୁଳସୀ ତାଙ୍କୁ ସାହାଯ୍ୟ କରୁଥିଲେ । ସେ ଆଜି ନାହାନ୍ତି, ସନ୍ଧ୍ୟା ପରେ ସେ ଘର କବାଟ କିଳି ଭିତରେ ରହନ୍ତି । ଛାତ୍ରମାନେ ଯାଇ ପହଞ୍ଚିଲେ କଲେଜ ଛୁଟି ହେବା ପରେ ସନ୍ଧ୍ୟାର ଅଳ୍ପ କାଳ ପୂର୍ବରୁ । ସ୍ୱାମିଜୀ ସିଧା ଛିଡ଼ା ହୋଇପାରୁ ନାହାନ୍ତି, ଅନ୍ଧ ନଇଁ ଅଣ୍ଟାରେ ହାତ ଦେଇ ପିଲମାନଙ୍କୁ କହିଲେ "ଏତେ ଛାତ୍ର କୁଆଡ଼େ ? ମୁଁ ତ ବର୍ତ୍ତମାନ ନିଜ କର୍ମରେ ବାହାରିଲି । ଆଉ କିଛିକ୍ଷଣ ପରେ ତ ଏ ଦ୍ୱାର ବନ୍ଦ ହେବ । କୁଆଡ଼େ ଆସିଛ ଠିଆ ଠିଆ ପଦେ ଦିପଦ କଥାରେ ଶେଷ କର ।" ଶୃଙ୍ଖଳାର ତ ଜ୍ଞାନ ନାହିଁ, ଏକ ସମୟରେ ତିନି ଚାରି ଜଣ ଛାତ୍ର କହିଲେ "ଆମେ ଶୁଣିଲୁ ହରିବାବୁ ମନ୍ତ୍ରୀ ଆସି ଆପଣଙ୍କ ଆଶୀର୍ବାଦ ଭିକ୍ଷା କରୁଛି । ଏ ଆଶ୍ରମକୁ ଅର୍ଥ ଦାନ କରିବାକୁ କହୁଛି । ଆପଣ ଜାଣନ୍ତି ସେ ଅତି ଦୁର୍ନୀତିପରାୟଣ ଲୋକ । ତାର ଚରିତ୍ର ସବୁ ଦିଗରେ ଖରାପ ।" ସ୍ୱାମିଜୀ ହସି ଦେଇ ପଚାରିଲେ, "ତାହାହେଲେ ତୁମର ପରାମର୍ଶ କଅଣ ?" ଏକାଧିକ ପିଲା ଏକ ସାଙ୍ଗରେ କହିଉଠିଲେ, "ତାକୁ ପ୍ରଶ୍ରୟ ଦିଅନ୍ତୁ ନାହିଁ ।" ସ୍ୱାମିଜୀ ବୁଲିପଡ଼ି କହିଲେ, "ମୋର କାହାରିକୁ ପ୍ରଶ୍ରୟ ଦେବାର ନାହିଁ କି କାହାକୁ କୌଣସି କର୍ମରୁ ନିବୃତ୍ତ ହେବା ପାଇଁ କହିବାର ନାହିଁ । ମୁଁ ତ ଏକାକୀ । ଏ ତ ମୋର ଶେଷାଶ୍ରୟ, ମୁଁ ଆଉ ସାଧାରଣ ଜୀବନରେ ନାହିଁ ଯେ କାହାରିକୁ କିଛି କହିବି ବା ନ କହିବି । ଆଚ୍ଛା, ଯାଅ । ମୁଁ ଯାଏଁ । ମୋର ସମୟ

ହୋଇଗଲା ।” ଏହା କହିଦେଇ ସେ ଦ୍ୱାର ଆଡ଼କୁ ଧୀରେ ଧୀରେ ଗଲେ । ଛାତ୍ରମାନେ ହୋ ହୋ ହୋଇ ଗ୍ଲଲିଗଲେ । ସ୍ୱାମିଜୀ କବାଟ ବନ୍ଦ କରିଦେଲେ ।

•

ଛାତ୍ରମାନେ ଯେ କେବଳ ସ୍ୱାମିଜୀଙ୍କୁ ଦଳବଦ୍ଧ ଭାବରେ ହରିବାବୁଙ୍କ ବିରୋଧରେ କହିଗଲେ ତା’ ନୁହେଁ । ସେମାନେ ସ୍ୱାମିଜୀଙ୍କଠାରୁ ଯାଇ କଲେଜ ହତା ଭିତରେ ଏକ ସଭା କଲେ । ହରିବାବୁଙ୍କୁ ମନ୍ତ୍ରୀପଦରୁ ବହିଷ୍କାର କରିବାକୁ ସ୍ୱାଗତ ଜଣାଇ ଏକ ପ୍ରସ୍ତାବ ଗ୍ରହଣ କଲେ । ପ୍ରସ୍ତାବର ଆଲୋଚନାବେଳେ ଖୁବ୍ ଗରମ୍ ଗରମ୍ ବକ୍ତୃତା ଦିଆ ହେଲା । ଡୋଲ ଭିତରେ ମୂଷା’କୁ ବାଡ଼େଇ ବାହାର କରିବାକୁ ହେବ, ଦେଶରେ ଯେ ସମାଜବାଦ ହେଉନାହିଁ ତା କେବଳ ଏଭ ପ୍ରତିକ୍ରିୟାଶୀଳ ଲୋକେ ନାନାଦି ଛଦ୍ମବେଶରେ ଦଳରେ ଓ ଶାସନରେ ପଶି ସବୁ ଭ୍ରଷ୍ଟ କରିଦେଇଥିବାରୁ । ଏହି ହେଲା ବକ୍ତୃତାର ସାରାଂଶ । ଯା’ ହେଉ, ଛାତ୍ରମାନଙ୍କର ଏ ପ୍ରସ୍ତାବ ଖବରକାଗଜରେ ପ୍ରକାଶିତ ହେବା ପରେ ପୁରୀର ଲୋକେ ହରିବାବୁଙ୍କ ପ୍ରସଙ୍ଗ ଜାଣିଲେ ଓ ଆଲୋଚନା କଲେ । ତା’ ପୂର୍ବରୁ କିଏ ମନ୍ତ୍ରୀ ଗଲେ କିଏ ରହିଲେ ଏ ବିଷୟରେ କେହି ଖବର ରଖିବା ଆବଶ୍ୟକ ବୋଲି ମନେ କରୁ ନ ଥିଲେ । କାରଣ ପ୍ରାୟ ପ୍ରତି ସପ୍ତାହରେ ମନ୍ତ୍ରୀ ହେଉଛନ୍ତି ପୁଣି ବାହାରି ଯାଉଛନ୍ତି । ଏପରି ତ ଦେଶ ସାରା ଗ୍ଲଲିଛି । ତା’ ଛଡ଼ା ମନ୍ତ୍ରୀଙ୍କର ତ ସେପରି କିଛି ବ୍ୟକ୍ତିଗତ ବିଶେଷତ୍ୱ ନାହିଁ ଯେ ଲୋକେ ସେଥିପ୍ରତି ଆକୃଷ୍ଟ ହେବେ । ଶାସନ ଗ୍ଲଲିଛି, ଅନେକ ଜଳକବ୍‌ଜା ଭିତରୁ ମନ୍ତ୍ରୀ ଗୋଟିଏ । କଲ ଗ୍ଲଲିଥିବା ଯାଏ କିଏ କାହିଁକି କେଉଁଠି କେଉଁ ପାର୍ଟ ବଦଳା ହେଲା କି ନ ହେଲା ସେଥିପ୍ରତି ଦୃଷ୍ଟି ଦେବ ? ତା’ ଛଡ଼ା ଛାତ୍ରମାନଙ୍କର ସଭାର ପ୍ରସ୍ତାବକୁ ଲୋକେ ସେପରି ଗୁରୁତ୍ୱ ଦିଅନ୍ତି ନାହିଁ । କାରଣ ଛାତ୍ରମାନେ କହିଲେ ଯେ ଗୋଟିଏ ସଂଗଠିତ ଦଳ ବୁଝାଏ ତାହା ନୁହେଁ । ଛାତ୍ରମାନଙ୍କ ଭିତରେ ବହୁ ଦଳ, ବହୁ ଗୋଷ୍ଠୀ । ଗୋଟିଏ ଦଳ ନିନ୍ଦା କଲେଣି ତ ଅନ୍ୟ ଦଳଟି ପ୍ରଶଂସା କଲେଣି । ଛାତ୍ର-ମାନଙ୍କ ମଧ୍ୟରେ ଆଉ କୌଣସି ମତବାଦର ସ୍ଥାନ ନାହିଁ । ଅଧିକାଂଶ, ପ୍ରାୟ ଶତକଡ଼ା ନବେ, ପାଠ ପଢ଼ି ଘରସଂସାର କରିବାରେ ଆଗ୍ରହୀ ।

ସେମାନେ ସଭା ସମିତିରେ ମୂକ । କିନ୍ତୁ ସେମାନଙ୍କ ନାମରେ ଯେଉଁମାନେ ତଥାକଥିତ ଛାତ୍ର ଆନ୍ଦୋଳନ କରନ୍ତି ସେମାନେ ବିଭିନ୍ନ ରାଜନୈତିକ ନେତାଙ୍କର ଆଶ୍ରୟରେ ଚାଲିଥାନ୍ତି । ନେତାଙ୍କ ଭିତର ବିବାଦ ଆସି ପହଞ୍ଚେ ଛାତ୍ରଙ୍କ ଭିତରେ । ଏହିସବୁ କାରଣ ଯୋଗୁ ପୁରୀର ଛାତ୍ରସଂଘର ପ୍ରସ୍ତାବକୁ କେବଳ ପୁରୀରେ ନୁହେଁ ଅନ୍ୟତ୍ର ମଧ୍ୟ ସେପରି ଗୁରୁତ୍ୱ କେହି ଦେଲେ ନାହିଁ । କିନ୍ତୁ ହରିବାବୁଙ୍କର 'ଶେଷାଶ୍ରୟ'କୁ ବାରମ୍ବାର ଆସିବାର ସମ୍ବାଦ ପ୍ରକାଶ ହେଲା ପରେ ବହୁବର୍ଷ ହେଲା ଅଜ୍ଞାତ କ୍ଷୁଦ୍ର ଆଶ୍ରମଟି ପ୍ରତି ଲୋକଙ୍କ ଦୃଷ୍ଟି ପଡ଼ିଲା । କି ଆଶ୍ରମ, କିଏ ସେଠି ରହନ୍ତି, ସେ ସ୍ୱାମିଜୀଙ୍କ ମହିମା କଣ ଇତ୍ୟାଦି ବିଷୟ ଚାରିଆଡ଼େ ଲୋକେ ପଚରାପଚରି ହେଲେ । ସେ ଆଶ୍ରମ ସମ୍ବନ୍ଧରେ କେହି କିଛି ଜାଣି ନ ଥିଲେ । ନାନା ଲୋକଙ୍କ ନାନା ଅନୁମାନ ଭିତରୁ ଜନରବ ସୃଷ୍ଟି ହୁଏ । ଅନୁମାନରୁ ଜନରବ, ପୁଣି ଜନରବରୁ ଗୁଜବ ରୂପ—ଏହିପରି ମାର୍ଗରେ ଅଜଣା କଥା ସବୁ ବେକାର ଶୂନ୍ୟମନା ଲୋକଙ୍କ ଭିତରେ ଗତିକରେ । ଦେଶରେ ପ୍ରାୟ ସମସ୍ତେ ପୁରା ବା ଅଧା ବେକାର ଥିବାରୁ ଜନରବ ବ୍ୟାପି ଯାଇ ଶେଷରେ ସତ୍ୟ ବୋଲି ଗୃହୀତ ହେବା ପାଇଁ ପ୍ରଶସ୍ତ ଉର୍ବର କ୍ଷେତ୍ର ବରାବର ରହିଛି । ଗୁଜବ ରଟିଗଲା, 'ଶେଷାଶ୍ରୟ'ର ସ୍ୱାମିଜୀଙ୍କଠାରେ ଅଲୌକିକ ଯୌଗିକ ଶକ୍ତି ଅଛି । ସେ ଅସାଧ୍ୟ ରୋଗ ଆରୋଗ୍ୟ କରି ପାରନ୍ତି । ସେ ମନୁଷ୍ୟର ସକଳ ଦୁର୍ବିପାକକୁ ନିମିଷକେ ଦୂର କରିଦେଇ ପାରନ୍ତି । ସେ ସମସ୍ତ ରାତ୍ରି, ସନ୍ଧ୍ୟାରୁ ସକାଳ ପର୍ଯ୍ୟନ୍ତ ଧ୍ୟାନମଗ୍ନ ରହିଥାଆନ୍ତି । କେହି ତାଙ୍କ ପାଖରେ ନାହାନ୍ତି । ସେ ନିତାନ୍ତ ବୃଦ୍ଧ । ତଥାପି ସେ ଯୌଗିକ ଶକ୍ତି ବଳରେ ନିଜର ସବୁ କାମ କରାଇ ନେଉଛନ୍ତି ଇତ୍ୟାଦି ଇତ୍ୟାଦି । ଏପରି ଗୁଜବ ପ୍ରଚାରିତ ହେବା ପରେ ଧୀରେ ଧୀରେ ଲୋକ ଚାଲିଲେ 'ଶେଷାଶ୍ରୟ'କୁ । ବେଶୀ ଗଲେ ରୋଗୀ ଆଉ ରାଜନୈତିକ ଲୋକେ, ଛାତ୍ର ଓ ସରକାରୀ କର୍ମଚାରୀ । ରୋଗୀ ଗଲେ ଆରୋଗ୍ୟ ଆଶାରେ, ରାଜନୈତିକ ଲୋକେ ଚାହିଁଲେ ସ୍ୱାମିଜୀ ଯୌଗିକ ଶକ୍ତି ବଳରେ ତାଙ୍କୁ ସବୁ କ୍ଷେତ୍ରରେ ବିଶେଷ କରି ନିର୍ବାଚନରେ ଜିତାନ୍ତୁ । ଛାତ୍ର ଚାହିଁଲେ ସ୍ୱାମିଜୀ ସେମାନଙ୍କୁ ପରୀକ୍ଷାରେ ପାସ୍ କରାଇ ଦିଅନ୍ତୁ । ସରକାରୀ କର୍ମଚାରୀ ଆଶା କଲେ ସେମାନଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ

କାର୍ଯ୍ୟାନୁଷ୍ଠାନକୁ ଯୋଗ ବଳରେ ସ୍ୱାମିଜୀ ରଦ୍ଦ କରାଇ ଦିଅନ୍ତୁ । କେତେକ ରୋଗୀ ସ୍ୱାମିଜୀଙ୍କ ଆଶୀର୍ବାଦରୁ ରୋଗମୁକ୍ତ ହେଲେ ବା ରୋଗମୁକ୍ତ ହେଲେ ବୋଲି ମନେକଲେ । ଆଉ କେତେକ ଓହଲେ ନାହିଁ । କେତେକ ଛାତ୍ର ମଧ୍ୟ ଆଶୀର୍ବାଦ ପାଇ ପାସ୍ କରିଗଲେ ବୋଲି ମନେ କଲେ, ଆଉ କେତେକ ଆଶୀର୍ବାଦ ପାଇ ମଧ୍ୟ ପାସ୍ କରିପାରିଲେ ନାହିଁ । କେତେକ ନିର୍ବାଚନ ପ୍ରାର୍ଥୀ ଆଶୀର୍ବାଦ ଆଣି ଜିତିଲେ ବୋଲି ମନେ କଲେ, ଆଉ କେତେକ ହାରିଗଲେ । ସେହିପରି ସରକାରୀ କର୍ମଚାରୀମାନଙ୍କ ପକ୍ଷରେ ମଧ୍ୟ । ସ୍ୱାମିଜୀ ତ ସମସ୍ତଙ୍କୁ ଆଶୀର୍ବାଦ କରନ୍ତି, ଆଶୀର୍ବାଦ କେତେ ଲୋକଙ୍କ ପକ୍ଷରେ କାର୍ଯ୍ୟକାରୀ ହେଲା, ଆଉ କେତେ ଲୋକଙ୍କ ପକ୍ଷରେ ହେଲା ନାହିଁ, ଏହାର ହିସାବ ରଖିଥିଲେ ଜଣା ଯାଇଥା'ନ୍ତା ଶତକଡ଼ା କାର୍ଯ୍ୟକାରୀ କେତେ । ହିସାବ ତ ନାହିଁ । ତେଣୁ ଯାହାର କାମ ହୋଇଗଲା ସେ ଗାଇବୁଲିଲା ସ୍ୱାମିଜୀଙ୍କ ମାହାତ୍ମ୍ୟ, ଯାହାର କାମ ନ ହେଲା, ସେ ସ୍ୱାମିଜୀଙ୍କୁ ନିନ୍ଦା ନ କରି ନିଜ ଭାଗ୍ୟକୁ ନିନ୍ଦା କରି ପୁଣି ଥରେ ଆଶୀର୍ବାଦର ସୁଯୋଗ ନେବା ଅପେକ୍ଷାରେ ରହିଲା । ମନୁଷ୍ୟ ମନର ଗତି ବିଚିତ୍ର । ଅଭିଳାଷ ସାଧନରେ ବାହ୍ୟ ଶକ୍ତିର ସାହାଯ୍ୟ ନେବା ପାଇଁ ସର୍ବଦା ସେ ବ୍ୟାକୁଳ । ଯେଉଁ ଶକ୍ତିର ରୂପରେଖ କିଛି ଜଣା ନାହିଁ, ସେ ଶକ୍ତି ପ୍ରତି ସେ ବେଶୀ ଆକୃଷ୍ଟ । ସେଥିପାଇଁ ଜ୍ୟୋତିଷିମାନଙ୍କ ପ୍ରତି ଆଦର । ସେଥିପାଇଁ ଯୋଗୀମାନଙ୍କ ପ୍ରତି ଲୋକେ ଆକୃଷ୍ଟ । ନିଜର ଶରୀର ଓ ପ୍ରାଣର ଅଭିଳାଷ ସାଧନ ନେଇ ଲୋକେ ବ୍ୟସ୍ତ । ମନ ମଧ୍ୟ ସେଇଥିରେ ପରିଚାଳିତ । କିଏ ଯାଉଛି ତା ଉପରକୁ ? ସେଥିପାଇଁ ବ୍ୟକ୍ତିଗତ ବା ସମାଜଗତ ସୁବିଧା ବା କାହିଁ ?

ଯାହେଉ, 'ଶେଷାଶ୍ରୟ'କୁ ଲୋକେ ଯିବା ଆସିବା କଲେ । ମାତ୍ର କେହି ବୁଝିଲେ ନାହିଁ ସ୍ୱାମିଜୀ ଚଳୁଛନ୍ତି କିପରି ? ତାଙ୍କୁ ସାହାଯ୍ୟ କରିବା ପାଇଁ ତ ଲୋକ କେହି ନାହାନ୍ତି । ଭରଣ ପୋଷଣ ପାଇଁ ତ ସମ୍ପତ୍ତିବାଡ଼ି ନାହିଁ । ଯେଉଁମାନେ ଯାଉଛନ୍ତି, ସେମାନେ ବ ପଇସାଟିଏ ସୁଦ୍ଧା ଦେଉ ନାହାନ୍ତି । ଅଥଚ ସମସ୍ତେ ସ୍ୱାମିଜୀଙ୍କଠାରୁ ଆଶୀର୍ବାଦ ଭିକ୍ଷା କରିବାରେ ତତ୍ପର । କେହି ମଧ୍ୟ ଈଶ୍ୱର ବା ଶାନ୍ତି ସମ୍ବନ୍ଧରେ ପ୍ରଶ୍ନଟିଏ ସୁଦ୍ଧା

କରୁନାହାନ୍ତି । ସମସ୍ତେ ସ୍ୱାର୍ଥାନ୍ଧ । ଏକଥା ଯେ ସ୍ୱାମୀଜୀଙ୍କ ମନକୁ ନଲାଗୁଥିଲା, ନୁହେଁ । ସୁବିଧା ଦେଖି ସେ ଥରେ ସମସ୍ତଙ୍କ ପାଇଁ ନିଜ ମନକଥା ପ୍ରକାଶ ନିମନ୍ତେ ମନସ୍ଥ କଲେ । ଏ ସୁଯୋଗ ଘଟିଲା ଦିନେ ବଡ଼ି ସକାଳ ବ୍ରାହ୍ମମୁହୂର୍ତ୍ତରେ, ଯେତେବେଳେ ତାଙ୍କର କେତେକ ବନ୍ଧୁଙ୍କ ସହ ହରିବାବୁ ଆସି ଶେଷାଶ୍ରମରେ ପହଞ୍ଚିଲେ । ସେମାନେ ଜାଣନ୍ତି ବ୍ରାହ୍ମମୁହୂର୍ତ୍ତରୁ ସ୍ୱାମିଜୀ ଦ୍ୱାର ଖୋଲିଦେଇ ବସନ୍ତି । ଆଗନ୍ତୁକଙ୍କ ଅପେକ୍ଷାରେ ନୁହେଁ, ତାଙ୍କର ନିଜର ବ୍ରାହ୍ମମୁହୂର୍ତ୍ତର ସାଧନା ନିୟମାନୁସାରେ । ସ୍ୱାମିଜୀ ବସିଛନ୍ତି ସିଦ୍ଧାସନରେ । ବୟସ ଯୋଗେ ମେରୁଦଣ୍ଡ ଟିକିଏ ନଇଁ ଯାଇଥିଲେ ମଧ୍ୟ ସମକାୟଗ୍ରୀବ ହୋଇ ସେ ଧ୍ୟାନସ୍ଥ । ନିଜ କାମ ପାଇଁ ଏତେ ବ୍ୟାକୁଳ ଯେ ସେ ସ୍ୱାମିଜୀଙ୍କ ଧ୍ୟାନାବସ୍ଥା ପ୍ରତି ଦୃଷ୍ଟି ଦେଲେ ନାହିଁ । ଲମ୍ବ ହୋଇ ଗୋଡ଼ତଳେ ପଡ଼ି "ସ୍ୱାମିଜୀ ରକ୍ଷା କରନ୍ତୁ" ବୋଲି ହରିବାବୁ ଉଚ୍ଚସ୍ୱରରେ କହିଲେ । ସେ ସେହିପରି ପଡ଼ିଥାନ୍ତି । ଅନ୍ୟ ବନ୍ଧୁମାନେ ଉଦ୍‌ଗ୍ରୀବ ହୋଇ ଚାହିଁଥାନ୍ତି ସ୍ୱାମିଜୀଙ୍କ ଆଡ଼େ । ସ୍ୱାମିଜୀ କିନ୍ତୁ ନୀରବ, ନିଶ୍ଚଳ । କେତେକ୍ଷଣ ପରେ ସ୍ୱାମିଜୀ ଆଖି ଖୋଲି ଦୀର୍ଘ ନିଶ୍ୱାସ ପକାଇ ହରିବାବୁଙ୍କୁ ଉଠିବା ପାଇଁ କହିଲେ । ହରିବାବୁ ବସିଲେ ଏବଂ ଅନ୍ୟ ବନ୍ଧୁମାନେ ମଧ୍ୟ ବସିଲେ । ସ୍ୱାମିଜୀ ତାଙ୍କ ଆସନ ତଳେ ଥିବା ଖଣ୍ଡେ କାଗଜ କାଢ଼ି ହରିବାବୁଙ୍କୁ ଦେଖାଇ କହିଲେ—ଏ ଲେଖା ତୁଳସୀର । ସେ ତୁମଠାକୁ ଖଣ୍ଡେ ପତ୍ର ଲେଖିଥିଲା । ମୋତେ ମଧ୍ୟ ଏକ ସନ୍ଦେଶ ଦେଇଥିଲା । ରଜୋଗୁଣକୁ ଅତିକ୍ରମ କରି ସେ ସତ୍ୱଗୁଣରେ ପ୍ରବେଶ କରିଥିଲା । ମନେ ହୁଏ ସେ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ ହୋଇ ତୁମଠାକୁ ଯାଇଥିଲା । ସେ ମୋତେ ଲେଖିଛି—

ସ୍ୱାମିଜୀ,

ମୁଁ ଯାଉଛି । ଜାତୀୟ ଚେତନାକୁ ଊର୍ଦ୍ଧ୍ୱ ସ୍ତରକୁ ନେବା ପାଇଁ ଆମ୍ଭମାନଙ୍କ ତ୍ୟାଗ ଯଥେଷ୍ଟ ହୋଇନାହିଁ ବୋଲି ଆପଣ ବରାବର କହନ୍ତି । ମୋର ମଧ୍ୟ କ୍ରମେ ସେ ଧାରଣା ଦୃଢ଼ୀଭୂତ ହେଲା । ବୋଧହୁଏ ମୋର ବିଶ୍ୱାସକୁ ଆହୁରି ଦୃଢ଼ କରିବା ପାଇଁ ଆପଣ କହିଲେ ମୋ ସାଙ୍ଗସାଥୀମାନଙ୍କୁ ଏ ଆଶ୍ରମକୁ ସାହାଯ୍ୟ କରିବା ପାଇଁ କହିବ । ହରି ମୋର ବଡ଼

ସାଙ୍ଗ ଥିଲ । ଏକ ସଙ୍ଗରେ ଜେଲ୍ ଯାଇଛୁ । ଏକ ସାଙ୍ଗରେ ସେତେବେଳର ସ୍ୱରାଜାଶ୍ରମରେ ରହିଛୁଁ । ଅବଶ୍ୟ ସେ ନିର୍ବାଚନରେ ମାତିଲା ପରେ ମୁଁ ଆଉ ସମ୍ପର୍କ ରଖିଲି ନାହିଁ କି ସେ ବି ମୋ ସହିତ ସମ୍ପର୍କ ରଖିଲା ନାହିଁ । ତା'ରିଠାକୁ ପ୍ରଥମେ ଗଲି ଆପଣଙ୍କ ସୂଚନାନୁସାରେ ସାହାଯ୍ୟ କଥା କହିବା ପାଇଁ । ପ୍ରଥମତଃ ସେ ମୋତେ ଚିହ୍ନିପାରିଲା ନାହିଁ । ତା'ପରେ ଖାଲି ଗତ କଥାଗୁଡ଼ାକୁ କହିଲା । ମନେହେଲା ସେ ରାଜନୀତି କ୍ଷେତ୍ରରେ ପ୍ରବଳ ବାଧାର ସମ୍ମୁଖୀନ ହୋଇଛି । ମୁଁ ଜାଣିଥିଲି ସେ ନିଜକୁ ଏକ ବଡ଼ ସମାଜବାଦୀ ପ୍ରମାଣ କରିବା ପାଇଁ ମଠ ଆଶ୍ରମ ସାଧୁ ସନ୍ନ୍ୟାସୀ ସମସ୍ତଙ୍କୁ କଠୋର ସମାଲୋଚନା କରୁଛି । ତଥାପି ମୁଁ କହିଲି । ଭିକ୍ଷୁକମାନଙ୍କୁ ଦୟା କରି ଯେପରି କିଛି ସାହାଯ୍ୟ ଗର୍ବୀ ଧନିକମାନେ ଫୋପାଡ଼ି ଦିଅନ୍ତି, ସେହିପରି ସେ ମୋତେ ଶହେଟା ଟଙ୍କା ବଢ଼ାଇଦେଇ ଏ ଦାନକୁ ଗୋପନ ରଖିବା ପାଇଁ କହିଲା । ତା'ର ଆଚରଣରୁ ମୁଁ ବୁଝିଲି ଆପଣଙ୍କ କଥା ଠିକ୍ । ଯେତିକି ତ୍ୟାଗ କରିଥିଲୁ, ସେ ସବୁକୁ ବିକିଭାଙ୍ଗି ଆମ୍ଭ ପୁରୁଷଟି ଦେଣାଦାର ହୋଇଗଲାଣି—ଯେତେ ମୁଁ ଏ କଥା ଭାବୁଛି, ସେତେ ମୋର ବିଶ୍ୱାସ ଦୃଢ଼ ହେଉଛି ଆମ ଜୀବନରେ ଆଉ କିଛି କରି ହେବ ନାହିଁ । ଜୀବନ ତ ଏଇଠି ଶେଷ ହେଉନାହିଁ । ପରଜନ୍ମରେ ହୁଏତ କିଛି କରିହେବ । ମୋର ହୃଦ୍‌ଯନ୍ତ କ୍ରମେ ଶିଥିଳ ହୋଇ ଆସୁଛି । ମୁଁ ଯାଉଛି । ପ୍ରଣାମ ।

ତୁଳସୀ

ଚକ୍ଷୁ ମୁଦ୍ରିତ କରି ସ୍ୱାମିଜୀ କହିଲେ, "ଦେଶରେ ତମୋଗୁଣର ପ୍ରାଦୁର୍ଭାବ ଘଟିବାରୁ ପ୍ରାୟ ହଜାର ବର୍ଷ ଏ ଦେଶ ରସାତଳେ ପଡ଼ିଥିଲା । ପୁଣି ସତ୍ତ୍ୱ ଆଡ଼କୁ ଗତି କରି ରଜୋଗୁଣ ପ୍ରକାଶ ପାଇଲା । ଦେଶ ସ୍ୱାଧୀନ ହେଲା । ମାତ୍ର ପୁଣି ସତ୍ତ୍ୱଗୁଣ ତ କୁଆଡ଼େ ଗଲା, ରଜୋଗୁଣରୁ ଖସି ଦେଶ ଆଜି ଗଭୀର ତମଃ ସାଗରେ ମଗ୍ନ । ସ୍ୱାର୍ଥ ପାଇଁ ଲୋକେ ଈଶ୍ୱରଙ୍କୁ ମଧ୍ୟ ଆଜ୍ଞାବହ କରିବାକୁ ଇଚ୍ଛା କରୁଛନ୍ତି । ମୁଁ ରାଜନୀତି ଛାଡ଼ି ଶେଷାଶ୍ରୟରେ ଶାନ୍ତିର ସନ୍ଧାନରେ ଅଛି । ଅଥଚ ମୋଠାକୁ ଆସୁଛନ୍ତି ରାଜନୈତିକ ବାଦ ବିବାଦରେ ଜୟ ପାଇଁ, ପରୀକ୍ଷାରେ ପାସ କରିବା ପାଇଁ । ଏହାଠାରୁ ବଳି

ତମୋଗୁଣ ପ୍ରଭବର ଅଧିକ କି ପ୍ରମାଣ ଆଉପାରେ ? ହରିବାବୁ, ତୁମେ ଶିକ୍ଷିତ, ଦେଶ ସେବା କରିବା ପାଇଁ ଜେଲ୍ ଯାଇଥିଲ । ଯେତିକି ତ୍ୟାଗ କରିଥିଲ, ତା' ବଦଳରେ ବହୁତ ଲାଭ ଉଠାଇଲ । ତଥାପି ମନ ସନ୍ତୁଷ୍ଟ ନୁହେଁ । କେବେହେଲେ ଭାବୁନାହିଁ ଜୀବନଟା କେବଳ ରାଜନୀତି ଅବା ଅର୍ଥ ଉପାର୍ଜନ ପାଇଁ ଉଦ୍ଦିଷ୍ଟ ନୁହେଁ । ପୁଣି ଆଧ୍ୟାତ୍ମ ଶକ୍ତିକୁ ଶାରୀରିକ ସ୍ୱାର୍ଥରେ ବ୍ୟବହାର କରିବା ପାଇଁ ଉଦ୍ୟତ ହେଉଛ । ଏଥିରେ ତୁମକୁ ଟିକିଏ ସଙ୍କୋଚ ବୋଧ ହେଉନାହିଁ । ତୁମ ପରବର୍ତ୍ତୀ ପୁରୁଷ ତୁମ ଦେଖାଦେଖି ସ୍ୱାର୍ଥପର ହେଉଛନ୍ତି, ଜାଣିପାରୁନାହଁ । ଯାଅ ତୁମେ ଏଠୁ । ଆଉ ଏଠିକି ଆସିବ ନାହିଁ । ତୁମରି ପରି ସ୍ୱାର୍ଥୀଙ୍କ ପାଇଁ ଏ କ୍ଷେତ୍ରାଶ୍ରୟ ଉଦ୍ଦିଷ୍ଟ ନୁହେଁ ।"

ସ୍ୱାମିଜୀଙ୍କ କଥା ଓ ଚେହେରାର ଗାମ୍ଭୀର୍ଯ୍ୟ ହରିବାବୁଙ୍କୁ ଭୟଭୀତ କରିଦେଲା ପରି ତାଙ୍କର ମନେହେଲା । ସେ ପ୍ରଣାମ କରି ବିଦାୟ ନେଲେ । ସ୍ୱାମୀଜୀ ପୁଣି ସିଦ୍ଧାସନରେ ଧ୍ୟାନମଗ୍ନ ହେଲେ ।

— ୩ —

ମନୁଷ୍ୟର ମନ ବଡ଼ ବିଚିତ୍ର । କେତେ ପ୍ରକାରରେ ଯେ ସେ ନିଜକୁ ନିଜେ ସାନ୍ତ୍ୱନା ଦେଇ ମନୁଷ୍ୟକୁ କୁଆଡୁ କୁଆଡ଼କୁ ଟାଣିନିଏ ତା'ର ସୀମା ନାହିଁ । ହରିବାବୁ ଏବଂ ତାଙ୍କର ବନ୍ଧୁମାନେ ସ୍ୱାମିଜୀଙ୍କଠାରୁ ଯେ ନିରାଶ ହୋଇ ଫେରିଲେ ତା' ନୁହେଁ । ଅବଶ୍ୟ କେତୋଟି ମୁହୂର୍ତ୍ତ ପାଇଁ ସେ ନିରାଶା ଅନୁଭବ କରିଥିଲେ । ପୁଣି ମନର ଅବସ୍ଥାକୁ ସଜାଡ଼ି ନେଲେ । "ଅବେଳଟାରେ ଆମେ ସ୍ୱାମିଜୀଙ୍କଠାକୁ ଗଲେ । ସେ ଧ୍ୟାନରେ ବସିଥିଲେ । ଏଣୁ ସେ ବିରକ୍ତ ହେଲେ । ନ ହେଲେ ସେ ଯେ ଆମକୁ ସାହାଯ୍ୟ କରିବେ ଏଥିରେ ସନ୍ଦେହ ନାହିଁ । ସୁବିଧା ସମୟ ଦେଖି ପରେ ଆସିବା ।" ଏହି ହେଲା ମନରେ ନିଜକୁ ନିଜେ ଦେବା ସାନ୍ତ୍ୱନା । ବନ୍ଧୁମାନେ ପଚାରିଲେ, "କ'ଣ ହେଲା ହରିବାବୁ, ସ୍ୱାମିଜୀ କ'ଣ କହିଲେ ? ହରିବାବୁ ଦୃଢ଼ ଭାବରେ ସମସ୍ତଙ୍କୁ କହିବୁଲିଲେ—"ସ୍ୱାମିଜୀ ଧ୍ୟାନସ୍ଥ ଥିଲେ । କଥାବାର୍ତ୍ତା ହୋଇପାରିଲା ନାହିଁ । ପରେ ମୁଁ ଯିବି ତାଙ୍କ ପାଖକୁ । କିନ୍ତୁ କେହି ନିରାଶ ହେବା ଉଚିତ ନୁହେଁ । ଆମେ ସ୍ୱତନ୍ତ୍ର ଦଳ ଗଠନ କରିବା । ଦଳଭିତରୁ ଏକଛତ୍ରବାଦୀମାନଙ୍କୁ ତଡ଼ିବାକୁ ହେବ । ସାଂବିଧାନିକ ଉପାୟରେ ନ

ହେଲେ ମଧ୍ୟ ଅନ୍ୟ ଉପାୟରେ ......" ଅନ୍ୟ ଉପାୟଟି କ'ଣ ସେ ଆଉ ଖୋଲି କାହାକୁ କହନ୍ତି ନାହିଁ । ଏଥିରୁ ବନ୍ଧୁମାନେ ମନେ କରି ନିଅନ୍ତି ହୁଏତ ହରିବାବୁ କୌଣସି ହତ୍ୟାବାଦୀ ନକ୍ସଲାଇଟ୍ ଦଳର ସାହାଯ୍ୟ ନେଉଛନ୍ତି ବା କୌଣସି ତାର୍କିକର ସାହାଯ୍ୟ ଲାଭ କରୁଛନ୍ତି । ସରକାରଙ୍କ ରାଜନୈତିକ ବିପକ୍ଷମାନଙ୍କୁ ବିଶେଷତଃ ହରିବାବୁଙ୍କ ସମ୍ବନ୍ଧୀୟ ସବୁ ଖବର ସଂଗ୍ରହ କରିବା ପାଇଁ ସି. ଆଇ. ଡ଼ି.ର ଏକ ସ୍ୱତନ୍ତ୍ର ସଂସ୍ଥା ଖୋଲିଛି । ଶୁଣା କଥାରୁ ଖିଅ ବାହାର କରି ନାନା ସନ୍ଦେହ ଓ ଭୟ ସୃଷ୍ଟି କରିବା ଭଳି ରିପୋର୍ଟ ପ୍ରସ୍ତୁତ କରିବା ପାଇଁ ବେଶୀ ବୁଦ୍ଧି ବା କାର୍ଯ୍ୟଦକ୍ଷତା ଦରକାର ହୁଏନାହିଁ । ସଠିକ୍ ସମ୍ବାଦ ସଂଗ୍ରହ କରି ସେଥିରୁ ଯୁକ୍ତିଯୁକ୍ତ ସମ୍ଭାବନା ନିର୍ଣ୍ଣୟ କରିବା ଶ୍ରମସାଧ୍ୟ ଓ ସେଥିପାଇଁ ବୁଦ୍ଧି ବିଚକ୍ଷଣତା ଆବଶ୍ୟକ । ଏତେ ଅଡୁଆକୁ ଯାଏ କିଏ ? ଶୁଣା କଥାକୁ ଏମାଖ ସେପାଖ କରି ସରକାରଙ୍କ ମନକୁ ପାଇଲା ଭଳି ରିପୋର୍ଟ କରିଦେଲେ କାମ ସରିଲା । ଏହି ହେଉଛି ତଥାକଥିତ ଗୋଇନ୍ଦା ବିଭାଗର ମନୋବୃତ୍ତି । ଏହିମାନଙ୍କ ରିପୋର୍ଟ ହେଲା, ହରିବାବୁ ସ୍ୱାମିଜୀଙ୍କ ଜରିଆରେ ନକ୍ସଲାଇଟମାନଙ୍କ ସହିତ ସମ୍ପର୍କ ରଖି ହିଂସାକାଣ୍ଡ ଘଟାଇବାର ଆୟୋଜନରେ ଅଛନ୍ତି । ଏ ରିପୋର୍ଟକୁ ପୁଣି ଅନ୍ୟଙ୍କ ଦ୍ୱାରା ପରୀକ୍ଷା ବା ଭେରିଫାଇ କରାଇବାକୁ ହେବ । ଭେରିଫାଇ କରିବାର ଏହି ଯୋଜନା ଅନୁସାରେ ଜଣେ ଯୁବକକୁ ପଠାହେଲା ସ୍ୱାମିଜୀଙ୍କଠାକୁ । ସେତେବେଳେ ସ୍ୱାମିଜୀ ସକାଳ ଆହ୍ନିକ ପରେ ବସି ଆଉ କେତେଜଣ ଯୁବକଙ୍କ ସହ କଥା ହେଉଛନ୍ତି । କଥା ଚାଲିଛି ଦେଶର ପରିସ୍ଥିତି ସମ୍ବନ୍ଧରେ । ସ୍ୱାମିଜୀ ତ ଯୁବକମାନଙ୍କ ସହିତ ଆଲୋଚନା କରିବାକୁ ସୁଖ ପାଆନ୍ତି । ସେ ଭାବନ୍ତି ଆଲୋଚନା ଫଳରେ ଅନ୍ତତଃ କେତେକ ଯୁବକଙ୍କ ମନରେ ଦେଶାତ୍ମବୋଧ ସୃଷ୍ଟି କରାଯାଇପାରିବ । ଦେଶାତ୍ମବୋଧ କହିଲେ ସେ ବୁଝୁଥିଲେ ନିଜର ସ୍ୱାର୍ଥକୁ ଗୌଣ କରି ଦେଶର ସମୂହ ସ୍ୱାର୍ଥ ପାଇଁ ଶାରୀରିକ ଓ ମାନସିକ ସମସ୍ତ ଶକ୍ତି ପ୍ରୟୋଗ କରିବା । ଏଥିପାଇଁ ଆଧ୍ୟାତ୍ମିକ ଶକ୍ତି ମଧ୍ୟ ଆବଶ୍ୟକ । ଆଧ୍ୟାତ୍ମିକ ଶକ୍ତି କହିଲେ ବୁଝାଏ ନିର୍ଭୟତା ଓ ନିର୍ଲୋଭତା । ଏ ଦୁଇଟି ଉପରେ ସ୍ୱାମିଜୀ ଜୋର୍ ଦେଉଥିଲେ । ଏହି ଆଲୋଚନା ପ୍ରସଙ୍ଗରେ ସ୍ୱାମିଜୀ କହିଲେ, "କାର୍ଯ୍ୟକାରିତା ଦୃଷ୍ଟିରୁ ବ୍ୟର୍ଥ ପ୍ରୟାସ ହେଲା ପରେ ମଧ୍ୟ ଯେଉଁମାନେ

ନିଜ ଜୀବନକୁ ବିପନ୍ନ କରି, ଗୁଳିମାଡ଼ରେ ମରିବେ ବୋଲି ଜାଣି, ହିଂସାତ୍ମକ ବିପ୍ଳବ ପାଇଁ ପୂର୍ବେ ଆମ ସମୟରେ ଯେପରି ଅନେକ ବାହାରିଥିଲେ, ଆଜି ମଧ୍ୟ ସେହିପରି ଅନେକ ବାହାରୁଛନ୍ତି । ଏହା ଆନନ୍ଦର ବିଷୟ । ସେମାନେ ନିର୍ଭୟ, ନିର୍ଲୋଭ । ମାତ୍ର ସେମାନଙ୍କର ବିଚାର ଶକ୍ତିର ଏକାନ୍ତ ଅଭାବ । ତେଣୁ ପୂର୍ବେ ଯେପରି ଆମ୍ଭେମାନେ ବ୍ୟର୍ଥ ହୋଇଛୁ, ଆଜି ମଧ୍ୟ ସେମାନେ ବ୍ୟର୍ଥ ହେଉଛନ୍ତି, ତଥାପି ସେମାନଙ୍କ ନିର୍ଭୟତା ଓ ନିର୍ଲୋଭତା ଯୁବକମାନଙ୍କ ପକ୍ଷେ ଅନୁକରଣୀୟ । ଏହି ଆଲୋଚନା ଶୁଣିଲେ ପୋଲିସ୍ ରିପୋର୍ଟ ଭେରିଫାଇ କରିବାକୁ ଯେଉଁ ଯୁବକ ଜଣକ ଆସିଥିଲେ, ସେ ଯୁକ୍ତି କଲେ—"ନିର୍ଭୟତାର କାର୍ଯ୍ୟକ୍ରମରେ ଯଦି ଅହିଂସାତ୍ମକ ଆନ୍ଦୋଳନ ଉପାୟରେ ଲକ୍ଷ୍ୟ ସାଧିତ ନ ହେଲା, ତେବେ ତ ହିଂସାର ଆଶ୍ରୟ ନେବାକୁ ହେବ ।" ସ୍ୱାମିଜୀ ଅଳ୍ପ ହସି କହିଲେ, "ନୀତି ହିସାବରେ ଏହା ଠିକ୍, କିନ୍ତୁ ନିର୍ଭୟ ଓ ନିର୍ଲୋଭ ହେଲେ ଜଣେ ହିଂସାର ଆଶ୍ରୟ ନ ନେଇ ମଧ୍ୟ ଲୋକ-କଲ୍ୟାଣ ସାଧନ କରିପାରେ । ବିଶେଷତଃ ଆଜି ସ୍ୱାଧୀନ ଦେଶରେ ଲୋକପ୍ରତିନିଧିମୂଳକ ଶାସନ ଚାଲିଥିବା ଅବସ୍ଥାରେ ନିର୍ଭୟତା ଓ ନିର୍ଲୋଭତା ହିଁ କାର୍ଯ୍ୟକାରୀ ହେବ । ସେଥିପାଇଁ ହିଂସାର ଆବଶ୍ୟକତା ନାହିଁ । ଆବଶ୍ୟକ ହେଉଛି ସଂଗଠନ । ଏହି ଆଲୋଚନା ପ୍ରସଙ୍ଗରେ ଗାନ୍ଧି, ଲେନିନ୍, ମାଓ-ସେ-ତୁଙ୍ଗଙ୍କ କାର୍ଯ୍ୟକ୍ରମ ମଧ୍ୟ ଆଲୋଚିତ ହେଲା । କେତେକ ଯୁବକ ଉତ୍ସାହିତ ହୋଇ ପଚାରିଲେ "ଆସନ୍ତା ନିର୍ବାଚନରେ କିପରି କ'ଣ କରିବାକୁ ହେବ ?" ସ୍ୱାମିଜୀ ଅଳ୍ପ ବିରକ୍ତି ପ୍ରକାଶ କରି କହିଲେ, "ନିର୍ବାଚନସର୍ବସ୍ୱ ହେବା ଠିକ୍ ନୁହେଁ—ନିର୍ବାଚନ ଲୋଭ ସୃଷ୍ଟି କରେ । ତେଣୁ ନିର୍ବାଚନକୁ ମୁଖ୍ୟ ମନେ ନ କରି ଲୋକସେବାକୁ ମୁଖ୍ୟ ମନେ କରିବା ଆବଶ୍ୟକ । ନିରୀହ ମୂକ ଜନତା ପାଖରେ ସେମାନଙ୍କ ମନରୁ ଭୟ ଦୂର କରିବା, ସେମାନଙ୍କ ମୁହଁରେ ଭାଷା ଦେବା ଏ ତ ନିର୍ବାଚନଠାରୁ ଗୁରୁତ୍ୱପୂର୍ଣ୍ଣ ।

ଏହି ସବୁ ଆଲୋଚନାର ରିପୋର୍ଟ ପାଇବା ପରେ ଏହାର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଅଭିଜ୍ଞ ସି. ଆଇ. ଡ଼ି. ଅଫିସରମାନେ କଲେ । ବିଶ୍ଳେଷଣରେ ମତଦ୍ୱୈଧ ଘଟିଲା । କେତେକ ମତ ଦେଲେ ସ୍ୱାମିଜୀ ବୃଦ୍ଧ, ତାଙ୍କର କାର୍ଯ୍ୟକାରୀ ଶକ୍ତି ଆଉ ନାହିଁ । ସେ କେବଳ ତାତ୍ତ୍ୱିକ

ଆଲୋଚନା ହିଁ କରନ୍ତି । ହରିବାବୁଟା ତ କିଛି ନୁହେଁ । ଆଉ କେତେକ ମତ ଦେଲେ ଆଲୋଚନାରୁ ହିଁ କାର୍ଯ୍ୟ ସୃଷ୍ଟି ହୁଏ । ସେ ନିଜେ କିଛି ନ କରି ପାରିଲେ ମଧ୍ୟ ତାଙ୍କ କଥା ଶୁଣି ଅନ୍ୟ କେହି ତ କିଛି କରିପାରନ୍ତି । ବିଶେଷତଃ ଯୁବକମାନେ ଉଚ୍ଛୃଙ୍ଖଳ–ଉତ୍ତେଜନାରେ ସବୁ କିଛି କରିପାରନ୍ତି । ଏକଥା ଶୁଣି ଜଣେ ଅଭିଜ୍ଞ ଅଫିସର ହସିଦେଇ କହିଲେ "ଯୁବକମାନେ ଏପରି ଉଚ୍ଛୃଙ୍ଖଳ ଯେ ଖାକି ପୋଷାକ ଦେଖିଲେ ଦୌଡ଼ି ପଳାନ୍ତି, ଏପରି ବେଗରେ ଯେ ତାଙ୍କୁ ଧରିବା କଠିନ ହୁଏ ।" କଥାଟା ଶୁଣି ସମସ୍ତେ ହସିଲେ । କିନ୍ତୁ ଜଣେ ବାସ୍ତବବାଦୀ ଉଚ୍ଚପାହ୍ୟା ଅଫିସର୍ ହସି ହସି କହିଲେ–"କଅଣ ତୁମେ ସବୁ ଏଠି ନ୍ୟାୟ ଅନ୍ୟାୟ, ଯୌକ୍ତିକ ଅଯୌକ୍ତିକ, ଏସବୁ ବିଚାର କରିବା ପାଇଁ ବସିଛ ! ଆଦେଶ ହୋଇଛି ହରିବାବୁ ଓ ତା' ଦଳ ଏବଂ ସେଠି ଶେଷାଶ୍ରୟରେ ଯେ ଏକ ଆଡ୍‌ଡା ଜମାଇ ସ୍ୱାମୀ ବସିଛି । ତାଙ୍କୁ ସମସ୍ତଙ୍କୁ ଠୁଙ୍କି ଦେବାକୁ ହେବ । ଯେକୌଣସି ପ୍ରକାରେ ରିପୋର୍ଟ ଦେଇ ଧରି ଆଣି ଜେଲ୍‌ରେ ପୁରାଇ ଦିଅ । ଇମର୍‌ଜେନ୍‌ସିରେ କିଏ କେଉଁଠି ଆପତ୍ତି କରିବ । ମୁଖ୍ୟମନ୍ତ୍ରୀ ନିଜେ ଡାକି ମୋତେ କହିଛନ୍ତି, ସ୍ୱାମିଜୀ ବୃଦ୍ଧ ସତ । ସେ ଶେଷାଶ୍ରୟ ଚାହାଁନ୍ତି । କାରାଗାରଠାରୁ ବଳି ଶେଷାଶ୍ରୟ ଆଉ କେଉଁଠି ଅଛି ? ସେଉଠି ସେ ବିଶ୍ରାମ ନିଅନ୍ତୁ । ହରିବାବୁ ପ୍ରଭୃତି ଯେ କେତେଜଣ ତାଙ୍କ ପାଖକୁ ଯା'ଆସ କରୁଛନ୍ତି ସେମାନେ କାରାଗାରର ନିଭୃତ କକ୍ଷରେ ସ୍ୱାମିଜୀଙ୍କଠାରୁ ମନ୍ତ୍ରତନ୍ତ୍ର ଶିକ୍ଷା କରନ୍ତୁ । ଏଥିପାଇଁ ଏତେ ବିଚାର କାହିଁକି ଚାଲିଛି ?" ସମସ୍ତେ ଏଥିରେ ସମ୍ପୂର୍ଣ୍ଣ ସହମତ ହେଲେ । ଏ ନିଷ୍ପତ୍ତି ଗ୍ରହଣ କଲାପରେ ପୋଲିସ୍ ଗଲେ ହରିବାବୁଙ୍କ ଘରକୁ । ଆଉ ଦୁଇଜଣ ଉଚ୍ଚପଦସ୍ଥ ପୋଲିସ୍ ଅଫିସର୍, ସବ୍‌ଇନିସ୍‌ପେକ୍‌ଟର, ଇନିସ୍‌ପେକ୍‌ଟର ଏବଂ ଦଶବାରଜଣ ବନ୍ଧୁକଧାରୀ ପୋଲିସ୍ ଗଲେ ଶେଷାଶ୍ରୟକୁ । ସେତେବେଳକୁ ସନ୍ଧ୍ୟା ହେବାକୁ କିଛି ସମୟ ବାକି ଥାଏ । ସ୍ୱାମିଜୀଙ୍କୁ ଘେରି ରହିଛନ୍ତି ଦଳେ ଛାତ୍ର । ସ୍ୱାମିଜୀ ଗୀତାର କେତୋଟି ଶ୍ଳୋକ ବୁଝାଉଛନ୍ତି । ପୋଲିସ୍ ଆଶ୍ରମକୁ ଘେରିଯିବାର ଦେଖି ଛାତ୍ରମାନେ କିଏ କୁଆଡ଼େ ପଳାଇଗଲେ ଯେପରି ମାଛି ଲାଗିଲେ ଗୋରୁପଲ ଦୌଡ଼ନ୍ତି । ଏମାନଙ୍କ ପଳାୟନ ତତ୍ପରତା ଦେଖି ପୋଲିସ୍ ଅଫିସର୍‌ମାନେ ଆଖି ଠାରଠାରି ହୋଇ ମୁଚୁକି ମୁଚୁକି ହସୁଥାନ୍ତି । ସ୍ୱାମିଜୀଙ୍କୁ ସନମ୍ର ପ୍ରଣାମ କରି

ଉଚ୍ଚପଦସ୍ଥ ପୋଲିସ୍ ଅଫିସର୍ କହିଲେ, "ଆଜ୍ଞା ଆପଣଙ୍କୁ ନେବାକୁ ଆସିଛୁ।" ସ୍ୱାମିଜୀ ହସିଲେ, କହିଲେ–"ମୁଁ ତାହାହିଁ ଅନୁମାନ କରୁଥିଲି ତୁମ ବିତାଡ଼ିତ ମନ୍ତ୍ରୀ ମୋଠାକୁ ଆସିବା ଯୋଗୁଁ । ତେବେ ଏତେ ପୋଲିସ୍ କାହିଁକି ? ପୁଣି ବନ୍ଧୁକଧାରୀ ! ମୁଁ କ'ଣ ପଳାଇଥା'ନ୍ତି । ପଳାଇବାର ମୋର ଶକ୍ତି ଅଛି କି ?" ପୋଲିସ୍ ଅଫିସର୍ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ ତଳକୁ ଚାହିଁ କହିଲେ, "ଏରେଷ୍ଟ କରିବାକୁ ହେଲେ ନିୟମାନୁସାରେ ପୋଲିସ୍ ନେବାକୁ ହେବ । 'ଆପଣ କିଛି ନ କଲେ ମଧ୍ୟ ଅନ୍ୟମାନେ ତ ବାଧା ଦେଇପାରନ୍ତି ।" ଆଉ କିଛି ନ କହି ସ୍ୱାମିଜୀ ଲୁଗାପଟା କିଛି ସଜାଡ଼ିଲେ । ହସିହସି କହିଲେ, "ମୁଁ ଭାବିଥିଲି କର୍ମକ୍ଲାନ୍ତ ଜୀବନରୁ ଅବସର ଗ୍ରହଣ କରି ଶେଷ ବୟସରେ ନୀରବ ଶାନ୍ତ ଜୀବନ ନିର୍ବାହହିଁ ଶେଷାଶ୍ରୟ । କିନ୍ତୁ ମୁଁ ଦେଖୁଛି, ଏ ଯୁଗରେ ଶେଷାଶ୍ରୟ ହେଉଛି ମୃତ୍ୟୁ । ଭଗବତରେ ଅଛି ପଦ, "ଧନ୍ୟା ନର ଯେ ମୃତାଃ" । ସ୍ୱାମିଜୀ ଉଠିପାରୁ ନ ଥାନ୍ତି । ତାଙ୍କୁ ସମ୍ମାନ ସହକାରେ ଦୁଇଜଣ ପୋଲିସ୍ ଅଫିସର୍ ହାତଧରି ଉଠାଇ ନେଇ ସାମ୍ନାରେ ଠିଆ ହୋଇଥିବା ମଟର ଗାଡ଼ିରେ ବସାଇଲେ ।

ଥାନାରେ ଯାଇ ଗାଡ଼ି ପହଞ୍ଚିଲା ବେଳକୁ ସେଠି ଅନେକ ସ୍ୱାମିଜୀଙ୍କୁ ଦେଖିବା ପାଇଁ ରୁଣ୍ଡ ହୋଇଛନ୍ତି । ମଟର କାର ଦ୍ୱାର ଖୋଲି ପୋଲିସ୍ ଛିଡ଼ା ହୋଇ ରହିଥିଲେ ମଧ୍ୟ ସ୍ୱାମିଜୀ ଗାଡି ଭିତରୁ ବାହାରୁ ନ ଥାନ୍ତି । କେତେ ମିନିଟ୍ ପରେ ଅଫିସର୍ ଗାଡ଼ି ଭିତରକୁ ମୁଣ୍ଡ ପଳାଇ ଉଚ୍ଚସ୍ୱରରେ କହିଲେ, "ସ୍ୱାମିଜୀ, ଓହ୍ଲାଇ ଆସନ୍ତୁ ।" କୌଣସି ଉତ୍ତର ନାହିଁ । ସନ୍ଧ୍ୟାର କ୍ଷୀଣ ଆଲୋକରେ ଭିତରଟା ଭଲ ଦେଖାଯାଉ ନ ଥାଏ । କାର୍ ଭିତର ଲାଇଟ୍ ଲଗାଇ ଦେଖିଲେ ସ୍ୱାମିଜୀ ଜଡ଼େଇ ହୋଇ ଢଳିପଡ଼ିଛନ୍ତି । ଅଫିସର୍ ମନେକଲେ ସେ ନିଦେଇ ଯାଇଛନ୍ତି । ସ୍ୱାମିଜୀଙ୍କୁ ହଲାଇଲେ । ତଥାପି ସ୍ୱାମିଜୀ ଜାଗ୍ରତ ହେଲେ ନାହିଁ । ପୋଲିସ୍ ଅଫିସର୍ ମନେକଲେ ସ୍ୱାମିଜୀ ବୋଧହୁଏ ଧ୍ୟାନମଗ୍ନ । ଖୁବ୍ ଜୋର୍‌ରେ ପାଟିକରି ଡାକିଲେ । ତଥାପି ସେ ନୀରବ । ଶେଷରେ ଜଣାଗଲା ସେ ଭଗବତ ବାଣୀ ଅନୁସାରେ ଧନ୍ୟ ।

ବିଶାଳ ସମୁଦ୍ର—ଦୂର ଦିଗ୍‌ବଳୟ ପର୍ଯ୍ୟନ୍ତ ବ୍ୟାପ୍ତ—ଗ୍ହିଁଦେଲେ ମନୁଷ୍ୟ ଯେ କେତେ କ୍ଷୁଦ୍ର ତାହା ସହଜରେ ଅନୁଭୂତିକୁ ଆସିଥାଏ । ଉପରେ ଆକାଶର ବ୍ୟାପ୍ତି । ତଳେ ସାଗର ବ୍ୟାପ୍ତି ଏ ଦୁଇ ବ୍ୟାପ୍ତି ମଝିରେ ସାମାନ୍ୟ ମନୁଷ୍ୟ ନିଜକୁ ଯେ କେତେ ବଡ଼ ଭବେ—ଅହଂଭବରେ ଧରାକୁ ସର ସମ ଜ୍ଞାନ କରେ, ପୁଣି ସେହି କ୍ଷୁଦ୍ର ମାନବଟିର ମନରେ ଯେ କେତେ ଅଭିଳାଷ ସାଗରର ତୁଙ୍ଗ ତରଙ୍ଗ ଭଳି ମୁଣ୍ଡଟେକି ଧାଇଁ ଆସି ବାସ୍ତବତା ତୀରରେ ବାଜି ମ୍ରିୟମାଣ ହୋଇ ଫେରିଯାଏ ; ଲୀନ ହୋଇଯାଏ ଗଭୀର ହତାଶାରେ । ପୁଣି ଶକ୍ତି ସଂଚୟ କରି ମାଡ଼ି ଆସେ, ଯେପରି ଏହିଥର ସେ ତୀରକୁ ଟପିଯାଇ ଅଭୂତପୂର୍ବ ପ୍ଲାବନ କରିବ, ଏତେ ଦମ୍ଭରେ ସେ ଆସେ, ପୁଣି ବାସ୍ତବତାର ଧକ୍‌କାରେ ମ୍ରିୟମାଣ ହୋଇ ଲୀନ ହୋଇଯାଏ ଚରମ ନିରଶାରେ—ଏହିତ କେବଳ ମନୁଷ୍ୟର ନୁହେଁ, ମନୁଷ୍ୟ ତ ସୃଷ୍ଟିରେ ଏକ କ୍ଷୁଦ୍ର ବସ୍ତୁ ବିଶେଷ, ସାର ସୃଷ୍ଟିର ନିୟମ । ସୁବିସ୍ତୃତ ଆକାଶ ନିର୍ମଳ, ଅବାଧ ଗତି ପାଇଁ ଛାଡ଼ି ଦେଇଛି ନିଜ ବକ୍ଷ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର ସବୁକୁ । ସୂର୍ଯ୍ୟର ରଶ୍ମି, ଚନ୍ଦ୍ରର ଜ୍ୟୋତ୍ସ୍ନାରେ ସ୍ଫୀତ ହୋଇ ଆକାଶ ସାରା ସୃଷ୍ଟିକୁ ଆହ୍ୱାନ କରେ, କିଏ ଅଛି ତା'ପରି ନିର୍ମଳ, ଚରାଚର ବ୍ୟାପୀ, କିନ୍ତୁ ତା'ର ଗର୍ବ ଖର୍ବ ହୋଇଯାଏ, ଯେତେବେଳେ ଗ୍ରରିଆଡ଼ୁ ମେଘ ଖଣ୍ଡ ଖଣ୍ଡ ହୋଇ ଆସି ତାକୁ ଢାଙ୍କି ପକାଏ । ସୂର୍ଯ୍ୟ, ଚନ୍ଦ୍ର ସମସ୍ତଙ୍କ ମହିମାକୁ ମ୍ଳାନ କରିପକାଏ । ସେମାନଙ୍କ ଅହଂକୁ ଚୂର୍ଣ୍ଣବିଚୂର୍ଣ୍ଣ କରି, ପୁଣି ଯେତେବେଳେ ନମ୍ରତା ଆସିଯାଏ ସେତେବେଳେ ମେଘ କଟିଯାଏ, ପୁଣି ନିର୍ମଳ ଆକାଶର ପ୍ରକାଶ ; ପୁଣି ମେଘାଚ୍ଛନ୍ନ—ପୁଣି ପରିଷ୍କାର । ଏହିତ ହେଲା ସୃଷ୍ଟିର ନିୟମ ଯାହାକୁ ସାଗର ଆକାଶ ମଧ୍ୟ ଲଙ୍ଘନ କରିପାରୁ ନାହାନ୍ତି । ସେଥିରେ ମନୁଷ୍ୟ କାହିଁକି ଆଶା ଅଭିଳାଷ ପ୍ରତିହତ ହେଲେ ବ୍ୟଥିତ ହେବ ? କାହିଁକି ସେ ଆଶା ଅଭିଳାଷଠାରୁ ଦୂରେଇ ନିଜ ମନକୁ ନ ରଖିବ, ଯେପରି ସମୁଦ୍ର ରଖିଛି ନିଜକୁ ଶାନ୍ତକରି ତୀରଠାରୁ ବହୁଦୂରରେ ଅତଳ ଗଭୀରତାର ଆଶ୍ରୟ ନେଇ । ଆକାଶ ରହିଛି ଶାନ୍ତ ମେଘଛାୟାର ବହୁ ଊର୍ଦ୍ଧ୍ୱରେ ଯେଉଁଠି କି ଆଶା-ନିରଶା ପ୍ରବେଶ କରିବ ନାହିଁ ।

ଏହି ହେଉଛି ସେଦିନ ସନ୍ଧ୍ୟାରେ ପୁରୀର ସମୁଦ୍ର ତୀରରେ ଜଗଦୀଶଙ୍କର ଭାବନା । କଲେଜ୍ ପାଠ ଶେଷ କରି ବାପାମାଆ ଯେତେବେଳେ ଓକିଲାତି ଆରମ୍ଭ କରିବାକୁ ବା ଚାକିରି କରିବାକୁ ଉତ୍ସାହିତ କରୁଥାଆନ୍ତି ସେତେବେଳେ ଜଗଦୀଶଙ୍କ ଅଭିଳାଷ ଏତେ ପ୍ରଖର ଯେ ତା'କୁ ତା' ହୃଦୟ ଧରି ରଖିପାରୁ ନ ଥାଏ । ଦେଶ ସ୍ୱାଧୀନ ହେବ—ସେ ହେବ ଜଣେ ସମାଜରେ ବିଶିଷ୍ଟ ବ୍ୟକ୍ତି-ସେଥିପାଇଁ ତ ନିଜକୁ ପ୍ରସ୍ତୁତ ହେବାକୁ ହେବ । ପ୍ରସ୍ତୁତ ହେବାକୁ ହେଲେ ନିଜକୁ ସ୍ୱାଧୀନତାର ଆନ୍ଦୋଳନରେ ତ ଭସାଇ ଦେବାକୁ ହେବ—ମନୁଷ୍ୟ ଏକ ସାମାଜିକ ଜୀବ—ନିଜର ଅଭିଳାଷ ପାଇଁ ସେ ଯେତେ ଦାୟୀ, ତା'ଠାରୁ ବେଶୀ ଦାୟୀ ସେ ଯେଉଁ ସମାଜରେ ରହୁଛି, ସେ ସମାଜ ସେତେବେଳେ ଗାନ୍ଧିଜୀଙ୍କ ଆହ୍ୱାନ, ବଜ୍ର ନିର୍ଘୋଷରେ ଡାକ ଦେଉଛି ଯୁବକ ବୃଦ୍ଧ ସମସ୍ତଙ୍କୁ ସ୍ୱାଧୀନତା ପାଇଁ ନିଜ ସୁଖସମ୍ପଦ ଜୀବନକୁ ଝାସ ଦେବାପାଇଁ, ସାରା ଦେଶ ମାତିଛି । ଶତ ଶତ ସଂଖ୍ୟାରେ ଯୁବକ ଜୀବନକୁ ଭସାଇ ଦେଉଛନ୍ତି ଆନ୍ଦୋଳନର ପ୍ରଖର ସ୍ରୋତରେ । ଜଗଦୀଶ୍ ମଧ୍ୟ ପ୍ରବେଶ କଲେ ସେ ସ୍ରୋତ ମଧ୍ୟରେ, ଭସିଲେ, ପହଁରିଲେ, କେତେବେଳେ ଅବା ଘୂର୍ଣ୍ଣିରେ ପଡ଼ି ବୁଡ଼ିଯାଇ ପାଣି ପିଇଯାଇ ପୁଣି ଉଠିଲେ । ଏହିପରି ହୋଇଯାଇ ଲାଗିଲେ ସ୍ୱାଧୀନତାର କୂଳରେ । ସ୍ରୋତରେ ଥିଲା ସମସ୍ତଙ୍କର ସୀମାବଦ୍ଧ ଅଭିଳାଷ ଓ ସୀମିତ ଲକ୍ଷ୍ୟ—ଦେଶର ସ୍ୱାଧୀନତା, କିନ୍ତୁ ସ୍ୱାଧୀନତା ପରେ ଜାଗ୍ରତ ହେଲା ସମସ୍ତଙ୍କର ବ୍ୟକ୍ତିଗତ ଅଭିଳାଷ, ଅଭିଳାଷ ପରିପୂର୍ତ୍ତି ପାଇଁ ହେଲା ପ୍ରତିଦ୍ୱନ୍ଦିତା—ଏଥିପାଇଁ ଆବଶ୍ୟକ ହେଲା ଚତୁରତା, ଅର୍ଥ ଏବଂ ବୈଷୟିକ ଜ୍ଞାନ—ଏ ତିନୋଟିଯାକ ଜଗଦୀଶଙ୍କର ନ ଥିଲା । ସେ ମନେ କରିଥିଲେ ଜୀବନଟା ସିମେଣ୍ଟର ମସୃଣ ପଥ । ପରସ୍ପର ସହାନୁଭୂତିରେ ଭରା ମନୁଷ୍ୟ ଜୀବନ—ପରାଧୀନ ଅବସ୍ଥାରେ ଏସବୁ କ୍ଷୁଣ୍ଣ ହୋଇଯାଇଥିଲା ସିନା, ସ୍ୱାଧୀନତା ଏ ସବୁକୁ ପୁଣି ଫେରାଇ ଆଣିବ । ସ୍ୱାଧୀନତା ଯେ ଏସବୁକୁ ଆହୁରି ଜଟିଳ କରିଦେବ, ଏ ଧାରଣା ତାଙ୍କର ନ ଥିଲା । ପ୍ରତିଷ୍ଠା ଦିଗରେ, ଅର୍ଥ ଉପାର୍ଜନ ଦିଗରେ ଏବଂ ଅନ୍ୟ ସବୁ କ୍ଷେତ୍ରରେ ଯେଉଁ ତୀବ୍ର ପ୍ରତିଦ୍ୱନ୍ଦିତା ଲାଗିଲା, ସେଥିରେ ଜଗଦୀଶ ହୀନଭାବରେ ପରାଜିତ ହେଲେ । ଏପରିକି ଯେଉଁମାନଙ୍କୁ ନିକଟତମ ସୁହୃଦ୍ ବୋଲି ସେ ମନେ କରୁଥିଲେ ସେମାନେ ମଧ୍ୟ ତାଙ୍କୁ

ଆଉ ପଶ୍ଚରିଲେ ନାହିଁ । ଜୀବନର ପ୍ରତ୍ୟୂଷରେ ଯେଉଁ ସ୍ୱପ୍ନ ଦେଖି ଙ୍କେ ନିଜକୁ ଅଜାଡ଼ି ଦେଇଥିଲେ ସେଚେବେନ୍ଦ୍ରକାର କର୍ମ କ୍ଷେତ୍ରରେ, ମଧ୍ୟାହ୍ନରେ ସେ ସ୍ୱପ୍ନ ସଫଳ ହେବା ପରେ ସେ ଦେଖିପାରିଲେ ସେ ସଫଳତାରେ ତାଙ୍କର ସ୍ଥାନ କେଉଁଠି ନାହିଁ । ତଥାପି ଚେଷ୍ଟା କଲେ ନିଜ ସ୍ଥାନ ଖୋଜି ବାହାର କରିବା ପାଇଁ, ପାଇଲେ ନାହିଁ । ଆସି ପହଂଚିଲେ ଜୀବନର ଅପରାହ୍ନରେ । ପଛକୁ ଫେରି ହେବ ନାହିଁ । ଆଗକୁ ଆସିଯାଉଛି ଘୋର ଅନ୍ଧକାର । ଏଥିରେ ନିଜକୁ ସବୁ କୋଳାହଳରୁ ଦୂରେଇଁ ନେଇ କୌଣସିଠି ଆଶ୍ରୟ ନେବାହିଁ ଶ୍ରେୟସ୍କର । ଏହାହିଁ ସ୍ଥିରକରି ଜଗଦୀଶ୍ ଆସି ବୁଲୁଛନ୍ତି ପୁରୀରେ, ଯେଉଁଠି ବହୁ ସାଧୁସନ୍ଥ ଥାଆନ୍ତି ବୋଲି ସେ ଶୁଣିଥିଲେ, ସେଥିପାଇଁ ତାଙ୍କ ପୁରୀ ଆଗମନ । ଜଗଦୀଶଙ୍କ ଆଉ ଦୁଇଜଣ ସାଙ୍ଗ ତାଙ୍କରି ପରି । ପଦ୍ମଫୁଲ ପରି ପୂର୍ବାହ୍ନର ଆଶାରେ ପ୍ରସ୍ଫୁଟିତ ହୋଇ, ମଧ୍ୟାହ୍ନର ଉଦ୍ୟମରେ ସୌରଭ ବିକାଶ କରି ଅପରାହ୍ନର ନିରାଶାରେ ଧୀରେ ଧୀରେ ପାଖୁଡ଼ା ସବୁ ବନ୍ଦ କରି କରି ଅସ୍ତଗଲାପରି ପୁରୀରେ ଆସି କରୁଛନ୍ତି ଶାନ୍ତିର ସନ୍ଧାନ । ଜଗଦୀଶ୍ ସମୁଦ୍ର କୂଳକୁ ଯାଇ ଯେପରି ଉପବିଷ୍ଟ ହେଲେ ତାଙ୍କ ସାଙ୍ଗ ଶରତ ମଧ୍ୟ ସେହିପରି ବଡ଼ଦାଣ୍ଡରେ ଛିଡ଼ାହୋଇ ଜଗନ୍ନାଥଙ୍କ ମନ୍ଦିରଆଡ଼କୁ ଅନାଇ ଭାବବିଭୋର । କିଏ ଇନ୍ଦ୍ରଦ୍ୟୁମ୍ନ ? ଲିଖିତ ଇତିହାସରେ ତାଙ୍କର ପତ୍ତା ନାହିଁ । ପ୍ରତିଷ୍ଠା ଅର୍ଜନ କରିବାର ଥିଲେ, ଶୀଳାରେ ହେଉ, ତାମ୍ର ଶାସନରେ ହେଉ, ସେ ବା ତାଙ୍କର ବଂଶଧର କେହି ତାଙ୍କ ନାମ ରଖିଦେଇ ଯାଇଥାନ୍ତେ, ଯେପରି ଗଙ୍ଗଗଙ୍ଗଙ୍କ ପକ୍ଷରେ ହୋଇଛି । ଇନ୍ଦ୍ରଦ୍ୟୁମ୍ନ ତୁଆଡ଼େ ମନ୍ଦିର ତୋଳାଇସାରି ଜଗନ୍ନାଥଙ୍କୁ ପ୍ରାର୍ଥନା କରିଥିଲେ, ତାଙ୍କ ବଂଶରେ କେହି ନ ରହନ୍ତୁ । ମନ୍ଦିରଟିକୁ ନିଜର ବୋଲି ଦାବୀ କରିବା ପାଇଁ ବା ମନ୍ଦିର ସହିତ ତାଙ୍କ ନାମକୁ ସଯୋଗ କରିବା ପାଇଁ, ଯେପରି ଦିଲ୍ଲୀରେ ବିଷ୍ଣୁଙ୍କ ମନ୍ଦିର ଆଜିକାଲି ବିରଳା ମନ୍ଦିର ନାମରେ ପରିଚିତ ହେଉଛି । ଶହେ ନୁହେଁ, ଦୁଇଶହ ନୁହେଁ ସହସ୍ରାଧିକ ବର୍ଷକାଳ ଛିଡ଼ା ହୋଇଛି ଏ ମନ୍ଦିର ଓ ରହିଛନ୍ତି ମୂର୍ତ୍ତି । ଆସିଲେ ଗଙ୍ଗଗଙ୍ଗ, ମନ୍ଦିର ପୁନର୍ନିର୍ମାଣ କଲେ । ଆସିଲା କଳାପାହାଡ଼, ମୂର୍ତ୍ତିକୁ ଭସ୍ମ କରିଦେଲା, କିନ୍ତୁ ରହିଗଲା ତାଙ୍କର ଅନ୍ତଃ । ସେଥିରୁ ପୁଣି ଉଦ୍ଭୂତ ହେଲେ ମୂର୍ତ୍ତି । ଲକ୍ଷ ହିସାବରେ ନୁହେଁ କି ନିୟୁତ

ହିସାବରେ ନୁହେଁ, ପଗର୍ବ ହିସାବରେ ଆସୁଛନ୍ତି ଭକ୍ତ, ବିସୂଚିକା ବସନ୍ତ, ମହାମାରୀ କାହାରିକୁ ଭୟ ନ କରି, ମରିଯିବା ପାଇଁ ଦୃଢ଼ସଂକଳ୍ପ ନେଇ । ଗହଁ ଦେଉଛନ୍ତି ଜଗନ୍ନାଥଙ୍କୁ । ସେଇଥିରେ ତାଙ୍କର ମନସ୍କାମନା ପୂର୍ଣ୍ଣ । କିଛିକ୍ଷଣ ଶରତ ମନ୍ଦିର ଚୂଡ଼ାକୁ ଅନାଇ ଏହିପରି ଭାବୁଁ ଭାବୁଁ ଆଉ ଏକ ସାଙ୍ଗ ବାଳକୃଷ୍ଣ ଟିକିଏ ସେ ଆଡ଼େ ବୁଲିବାକୁ ଚାଲିଯାଇଥିଲେ, ଫେରିଆସି ଶରତଙ୍କ ବାହାରେ ହାତ ମାରିଦେଇ କହିଲେ, "କ'ଣ ଏଠି ଏତେ ଭାବୁଛୁ ? ଏଠିପରା କେତେଟା ଆଶ୍ରମ ଓ ମଠକୁ ଆମେ ଯିବା । ଜଗଦୀଶ୍ ତ କୁଆଡ଼େ ଯାଇଛି ଫେରିନାହିଁ । ସମୁଦ୍ରକୂଳଆଡେ ଯାଇଥିଲା । ଆମେ କ'ଣ ଖାଲି ଏହି କୀର୍ତ୍ତି ସବୁ ପ୍ରାକୃତିକ ହେଉ ବା ମନୁଷ୍ୟକୃତ ହେଉ ତା'କୁଇ ସବୁ ଦେଖି ବୁଲୁଥିବା ?" ଶରତ କ୍ଷଣେ ନୀରବ ରହି କହିଲେ, "କେଉଁଠିକି ଯିବା କହିଲୁ ? ଏ ତ ସବୁ ଅତୀତର ସ୍ମୃତି—ଭବିଷ୍ୟତର ଆଲୋକ ତ କେଉଁଆଡ଼ୁ ଆସୁନାହିଁ ।" ବାଳକୃଷ୍ଣ ଟାଣିଦେଇ କହିଲେ, "ଆ, ଯିବା ଧର୍ମଶାଳାକୁ, ସେଇଠି କଥା ହେବା । ଜଗଦୀଶ୍ ବି ଆସିଯାଇଥିବ । ଦୁହେଁଯାକ ଗୋଏଙ୍କା ଧର୍ମଶାଳାକୁ ଗଲେ । ଦୋତାଲା ଉପରେ କକ୍ଷଟିଏ ନେଇ ତିନି ଦିନ ହେଲା ଏମାନେ ଆସିଅଛନ୍ତି. ଅନ୍ଧକାରରେ ଆଲୋକର ସନ୍ଧାନ ପାଇଁ । ସନ୍ଧ୍ୟା ହୋଇ ଆସିଲା । ଧର୍ମଶାଳାଟି ଏପରି ସ୍ଥାନରେ ସ୍ଥିତ ଯେଉଁଠି ସନ୍ଧ୍ୟାବେଳେ ଚାରିଆଡ଼ୁ ସନ୍ଧ୍ୟା ଆରତୀର ଘଣ୍ଟା ଶଙ୍ଖଧ୍ୱନି ଶୁଣାଯାଏ । କେବଳ ମଠ ମନ୍ଦିରମାନଙ୍କରୁ ନୁହେଁ, ଦୂରଗତ ଭକ୍ତମାନେ ମଧ୍ୟ ନିଜ ନିଜ ପୂଜା ଧ୍ୟାନରେ ବସିବା ପୂର୍ବରୁ ଘଣ୍ଟା ଶଙ୍ଖଧ୍ୱନୀ କରନ୍ତି । ଶରତ ଇଲେକ୍‌ଟ୍ରିକ୍ ଲାଇଟର ସ୍ୱିଚ୍ ଟିପିଦେଇ ଖଟ ଉପରେ ବସିଗଲେ । ବାଳକୃଷ୍ଣ ବାରନ୍ଦାରେ ଅପେକ୍ଷା କରିଥା'ନ୍ତି ଜଗଦୀଶଙ୍କ ଆସିବାକୁ । ସେ ଆସି ପହଞ୍ଚିଗଲେ, ତିନିହେଁ ବସି ଆଲୋଚନା ଆରମ୍ଭ କରିଦେଲେ । ଶରତ ପ୍ରଥମେ କଥା ଆରମ୍ଭ କଲେ । ସେ ଗମ୍ଭୀର ଭାବରେ କହିଲେ—"ମୁଁ ଏ କେତେଦିନ ବୁଲି ମଠ କେତୋଟି ଦେଖିଲି । ଏଥିରୁ କେତେକ ତ ବିଫଳ ମନୋରଥ ବିପ୍ଳବୀଙ୍କ ଉତ୍ତର ଜୀବନରେ ସ୍ଥାପିତ । ରାଜନୈତିକ ଜୀବନ ବ୍ୟର୍ଥ ହେଲେ କଅଣ ମଠରେ ତା'ର ପରିସମାପ୍ତି ? ମୁଁ ସେ ବିପ୍ଳବୀମାନଙ୍କ ଭାବନାର ଗତି ସମ୍ବନ୍ଧରେ ଚିନ୍ତା କରୁଛି । ଅରବିନ୍ଦ ଘୋଷ୍ ଥିଲେ ବଙ୍ଗ ଦେଶରେ ବିପ୍ଳବର ଅଗ୍ରଦୂତ, ଶେଷରେ ହେଲେ ପଣ୍ଡିଚେରୀରେ ଶ୍ରୀ ଅରବିନ୍ଦ ।

ସେ ଯେ ବିପ୍ଳବପଥରେ ବ୍ୟର୍ଥ ହୋଇଥିଲେ, ଏହା ତାଙ୍କ ଜୀବନୀରୁ ସ୍ପଷ୍ଟ ପ୍ରମାଣ ମିଳେ । ନିଜର ମାନବିକ ଶକ୍ତି ପରାସ୍ତ ହେବା ପରେ, ଅତିମାନବ ଶକ୍ତିଆଡ଼କୁ ମନଯାଏ । ଏହାହିଁ ଏକ ସାଧାରଣ ମନୋବିଜ୍ଞାନର ତତ୍ତ୍ୱ ।” ବାଳକୃଷ୍ଣ ବିରକ୍ତ ହୋଇ କହିଲେ, “ରଖ ତୋ ମନସ୍ତାତ୍ତ୍ୱିକ ଆଲୋଚନା । ଏମ୍. ଏ. ପାସ୍ କରିସାରିଲ ପରେ କଲେଜ୍‌ରେ ପ୍ରଫେସର୍ ହୋଇଥିଲେ ସବୁ ଆଲୋଚନା କରିଥାନ୍ତୁ । ଏତେବେଳେ ଜୀବନର ଅପରାହ୍ନରେ ସେସବୁ ଆଲୋଚନା କରି ଲାଭ କଅଣ ? ବର୍ତ୍ତମାନଟାକୁ ଭାବି ସ୍ଥିର କର । ମୋ ମତରେ ଆମେ ବ୍ୟର୍ଥ ହୋଇଛୁ ବୋଲି ଭାବିବା ଠିକ୍ ନୁହେଁ । ମଧ୍ୟାହ୍ନ ଅତିକ୍ରମ କରି ଅପରାହ୍ନରେ ପହଞ୍ଚିଥିଲେ ମଧ୍ୟ ଅପରାହ୍ନର ମଧ୍ୟ ଏକ ଉଦ୍ଦୀପନା ଅଛି, ତାହା ଭୁଲିଗଲେ ଚଳିବ ନାହିଁ । ଫୁଟବଲ୍ ଖେଳ ଶେଷ ହେବାର ମିନିଟ୍‌କ ଆଗରୁ ମଧ୍ୟ ଗୋଲ୍‌ଦେଇ ପ୍ରତିପକ୍ଷକୁ ହରାଇ ଦିଆଯାଇଥାଏ । ବତୀ ଲିଭିଯିବା ଆଗରୁ ଅତି ଉଜ୍ଜ୍ୱଳ ହୋଇଉଠେ । ତେଣୁ ଯେଉଁଥିପାଇଁ ଜୀବନ ଉତ୍ସର୍ଗ କରିଥିଲୁ, ସେଇଥିରେ ହିଁ ଜୀବନ ଶେଷ ହୋଇଯାଉ ।” ଚୁପ୍ ହୋଇ ବସିଥିଲେ ଜଗଦୀଶ୍—ସେ ନୀରବତା ଭଙ୍ଗକରି କହିଲେ, “ବାଜେ କଥା କହନାହିଁ, ଜୀବନ ଉତ୍ସର୍ଗ କରିଥିଲେ ସ୍ୱାଧୀନତା ପାଇଁ, ସ୍ୱାଧୀନତା ତ ହୋଇଗଲା, ତା ପରବର୍ତ୍ତୀ କାର୍ଯ୍ୟକ୍ରମ ବି ହୋଇଗଲା, ଏମ୍. ଏଲ୍. ଏ., ଏମ୍. ପି., ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ପ୍ରଧାନ ମନ୍ତ୍ରୀ ହେବା । ସେଇଥିରେ ମାତି ଜୟଯୁକ୍ତ ହେବାର ଶକ୍ତି ଓ ସମ୍ବଳ ଥିଲେ ଆଜି ଏଠି ପୁରୀ ଧର୍ମଶାଳାରେ ଆମେ ବିଲୁଆ ବିଚାର କରୁନଥାନ୍ତେ । ସ୍ୱାଧୀନ ହେଲା ଦେଶ—ସେଇଥିରେ ତୃପ୍ତ ହୋଇ ଜୀବନର ଅନ୍ୟ ଦିଗରେ କିଛି ତୃପ୍ତି ଅଛି କି ନାହିଁ ଖୋଜିବାକୁ ହେବ ।” ବାଳକୃଷ୍ଣ ହସିଦେଇ କହିଲେ—“ଜଣେ ତ ଫିଲୋସଫର୍, ଆଉ ଜଣେ ତ ଆଧ୍ୟାତ୍ମବାଦୀ—ମୁହିଁ ସିନା ଅଛି ଏକା ରାଜନୀତି କ୍ଷେତ୍ରରେ । ମୋ ମତରେ ସ୍ୱାଧୀନତାର ପରବର୍ତ୍ତୀ କାର୍ଯ୍ୟ ହେଉଛି ଯେଉଁ ବିପ୍ଳବ ଆରମ୍ଭ ହୋଇଛି ତାକୁ ସମ୍ପୂର୍ଣ୍ଣ କରିବା । ଖେଳର ହାଫ୍ ଟାଇମ୍‌ରେ ଆମେ ଗୋଲ୍ ଦେଇ ଜିତିଛୁ ସତ, ପୁଣି ପର ହାଫ୍ ଟାଇମ୍‌ରେ ଆମେ ଗୋଲ୍ ଖାଇଯାଇ ପରାସ୍ତ ବି ହୋଇପାରୁଁ । ସ୍ୱାଧୀନତା ମିଳିଲା ସତ କିନ୍ତୁ ଧଳା ପରିବର୍ତ୍ତେ କଳା ରାଜତ୍ୱ ମଧ୍ୟ ଲୋକଙ୍କ ଉପରେ ଲଦି ହୋଇଯାଇପାରେ । ହୋଇଯାଉଛି ମଧ୍ୟ । ଲୋକଙ୍କ ଚେତନା ଜାଗ୍ରତ

ହୋଇଛନ୍ତି ସତ । କିନ୍ତୁ ସେତେ ଜାଗ୍ରତ ହୋଇନାହିଁ । ନିଜର ମତରେ ଶାସନକୁ ପରିଚାଳନା କରିବାର ଶକ୍ତି ଲୋକଙ୍କର ଆସିନାହିଁ । ସେ ଶକ୍ତି ଜାଗରଣ କରିବା ହେଉଛି ଆମର ପ୍ରଧାନ କର୍ତ୍ତବ୍ୟ । ଜଗଦୀଶଙ୍କ ଆଧ୍ୟାତ୍ମବାଦର ଏକ ଉଦାହରଣ ହେଉଛି, ଈଶ୍ୱର ଦର୍ଶନ ପାଇଁ ସାଧନା କରୁ କରୁ ମଝିରେ ନାନା ବିଭୂତି ପ୍ରକାଶ ପାଏ ବୋଲି ଯୋଗୀମାନେ କହନ୍ତି । ସେ ବିଭୂତିରେ ମାତିଗଲେ ଯୋଗ ତ ଭ୍ରଷ୍ଟ ହୁଏ, ଈଶ୍ୱର ଦର୍ଶନ ମଧ୍ୟ ହୁଏ ନାହିଁ । ସେହିପରି ସ୍ୱାଧୀନତା ପରେ ଏମ୍. ଏଲ୍. ଏ., ଏମ୍. ପି., ମନ୍ତ୍ରୀ ଇତ୍ୟାଦି ସବୁ ବିଭୂତି । ସେଇଥିରେ ସମର୍ଥ ବା ବ୍ୟର୍ଥ ହୋଇ ନିଜ ଜୀବନର କାର୍ଯ୍ୟକ୍ରମ ସମ୍ବନ୍ଧରେ ଚିନ୍ତା କରିବା ଭ୍ରମାତ୍ମକ ।" ଶରତ ଗ୍ଲପିଧରି କହିଲେ, "ତା'ହେଲେ କ'ଣ କାର୍ଯ୍ୟକ୍ରମ ହେବ ଆମର ତୋ ମତରେ ?" ବାଳକୃଷ୍ଣ ତାଙ୍କ କାର୍ଯ୍ୟକ୍ରମ ଉପସ୍ଥାପନା କଲେ । "ସମାଜର ସବା ତଳେ ଯେଉଁମାନେ ପଡ଼ିଛନ୍ତି ଯାହାଙ୍କୁ କେହି ପଚାରୁନାହାନ୍ତି, ଯେଉଁମାନେ ଦିନେ କେବଳ ଗାନ୍ଧିଜୀଙ୍କ ନାମ ଶୁଣି "ଜୟ ମହାତ୍ମାଗାନ୍ଧୀଙ୍କ ଜୟ" କହି ଜେଲ୍ ଯାଇଥିଲେ, ଗୁଳିରେ ବି ପ୍ରାଣ ଦେଇଥିଲେ, କେତେ ନିର୍ଯ୍ୟାତନା ସହିଥିଲେ (କହୁ କହୁ ବାଳକୃଷ୍ଣ କାନ୍ଦକାନ୍ଦ ହୋଇଗଲେ ।) ସେହିମାନଙ୍କ ଭିତରେ ତାଙ୍କରି ପରି ଜଣେ ହୋଇ ଆମେ ତ ରହିବା । ତାଙ୍କରି ପରି ମୂଲ ମଜୁରୀ ଲଗି ବା ବଣର ଫଳମୂଳ ଖାଇ ରହିବା । ସବୁ ରକମର ଅତ୍ୟାଚାର ବିରୋଧରେ ଛିଡ଼ା ହେବାର ଶକ୍ତି ସେହିମାନଙ୍କ ଭିତରେ ଜାଗ୍ରତ କରାଇବା । ଏହି ହେଉଛି ମୋର କାର୍ଯ୍ୟକ୍ରମ, ଏଇଥିରେ ଆମର ଜୀବନ ଶେଷ ହୋଇଯାଉ । କିନ୍ତୁ ଆମେ ଦେଖି ଦେଇଯିବା ପରବର୍ତ୍ତୀ ବଂଶଧରମାନଙ୍କ ପାଇଁ ଏକ ଜନଚୈତନ୍ୟ କାର୍ଯ୍ୟକ୍ରମ ।" ଶରତ ଦୀର୍ଘ ନିଶ୍ୱାସ ପକାଇ କହିଲେ, "ଏପରି କାର୍ଯ୍ୟକ୍ରମ ବର୍ଣ୍ଣନା କରିବା ସହଜ— ମାତ୍ର କାର୍ଯ୍ୟରେ ପରିଣତ କରିବା ନିତାନ୍ତ କଷ୍ଟସାଧ୍ୟ । ଜଗଦୀଶ କହିଲେ— "ସେଥିପାଇଁ ଆବଶ୍ୟକ ଆଧ୍ୟାତ୍ମିକ ଶକ୍ତି, ଯାହା ଆମର ନାହିଁ । ସେହି ଶକ୍ତି ଆହରଣ କରିବା ପାଇଁ ଚେଷ୍ଟା ବା କାହିଁକି ନ କରିବା ଆମେ ?" 'ତା' ହେଲେ ତୋ ମତରେ କଅଣ କରିବା ଆଗେ ?" ବାଧା ଦେଇ ପଚାରିଲେ ବାଳକୃଷ୍ଣ । 'ନିଭୃତ କକ୍ଷରେ ବସି ଆଧ୍ୟାତ୍ମସାଧନା କଲେ ଯେ କେବଳ ନିଜର ଆଧ୍ୟାତ୍ମିକ ଚେତନା ଜାଗ୍ରତ ହୁଏ ତାହା ନୁହେଁ, ଏଥିରେ ଜନଚୈତନ୍ୟ ମଧ୍ୟ ପରୋକ୍ଷ ଭାବରେ ଜାଗ୍ରତ ହୁଏ, ଅଦୃଶ୍ୟ ଅଜ୍ଞାତଭାବରେ

ସେ ଶକ୍ତି କାର୍ଯ୍ୟ କରେ ବୋଲି ମୁଁ ଯୋଗୀ ଋଷିମାନଙ୍କ ଜୀବନୀରୁ ପଢ଼ିଛି ।” ଏହା ହେଲା ଜଗଦୀଶ୍‌ଙ୍କ ଉତ୍ତର । “ତାତ୍ତ୍ୱିକ ବିଚାରରେ ଏଥିରେ ମୁଁ ସମ୍ମତ । କାରଣ ଏହିପରି ଘଟିଥିଲେ ବ୍ୟର୍ଥ ବିପ୍ଳବୀମାନେ ।” —ଶରତଙ୍କ ମନ୍ତବ୍ୟ । ବାଳକୃଷ୍ଣ ଜେ.ର୍ ହସିଦେଇ କହିଲେ—“ତାହାହେଲେ ଏକା ଏ ପୁରୀରେ ଯେତେ ମଠ ଅଛି, ସେଥିରୁ ଯେଉଁ ଆଧ୍ୟାତ୍ମିକ ଶକ୍ତି ଉଦ୍‌ଗତ ହେଉଥିବ, ତା’ ତ ଶତ ଶତ ହାଇଡ୍ରୋଜେନ୍ ବମ୍‌ର ଶକ୍ତି ସହିତ ସମାନ୍ ବା ତା’ଠାରୁ ବେଶି ହେଉଥିବ, ପୁଣି ବାହାରେ ବାରଣାସୀ, ପଣ୍ଡିଚେରୀ, ଶ୍ରୀରଙ୍ଗପଟ୍ଟଣ, ନଦୀୟା ପ୍ରଭୃତି ବହୁ ସ୍ଥାନରେ ଯେଉଁ ଆଧ୍ୟାତ୍ମିକ ଶକ୍ତି ନିର୍ଗତ ହେଉଥିବ, ସେ ସବୁକୁ ମିଶାଇଦେଲେ ତ ସୌର ଜଗତର ସମସ୍ତ ଶକ୍ତି ସହିତ ସମାନ ହେବ । ତେବେ କାହିଁକି ଆଜି ଅଧିକାଂଶ ଲୋକେ ଅର୍ଦ୍ଧାଶନ, ଅନାହାରରେ ପଡ଼ିଛନ୍ତି ? କାହିଁକି ଆଜି ମୁଷ୍ଟିମେୟଙ୍କ ଧନ ଓ କ୍ଷମତା ଦର୍ପରେ ବିଶାଳ ଜନତା ଦଳିମକ୍ଟି ହୋଇ ଯାଉଛନ୍ତି ? କାହିଁକି ଏତେ ଦୁଃଖ ଓ ନିର୍ଯ୍ୟାତନା ? କେବଳ କଳ୍ପନାରେ ଶକ୍ତିର ମାପ ହୋଇପାରେନା—ମାପ ହୁଏ କାର୍ଯ୍ୟରେ ।” ଜଗଦୀଶ୍ ଛାଡ଼ିଲାବାଲା ନୁହଁନ୍ତି—ସେ ଆଗକୁ ଝୁଙ୍କି ଦୃଢ଼ ସ୍ୱରରେ କହିଲେ—“ଏହି ମଠ ଆଶ୍ରମରୁ ଶକ୍ତି ନିର୍ଗତ ହେଉଛି ବୋଲି ତ ଏ ଦେଶ, ଏ ସମାଜ ତିଷ୍ଠିଛି । ପୃଥିବୀ ବକ୍ଷରୁ କେତେ ସଭ୍ୟତା କେତେ ସମାଜ, ବେବିଲୋନ୍, ମିଶର, ମୟ, ଏଜ୍‌ଟେକ୍, ଗ୍ରୀକ୍, ରୋମାନ୍ ଇତ୍ୟାଦି ଯେଉଁମାନେ ଶତ ଶତ ବର୍ଷକାଳ ମାନବ ସମାଜକୁ ଝଲସାଇ ଦେଇଥିଲେ, ସବୁ କୁଆଡ଼େ କାଳସ୍ରୋତରେ ଭାସିଗଲେ । କିନ୍ତୁ ଭାରତ ତିଷ୍ଠି ରହିଛି ସହସ୍ର ସହସ୍ର ବର୍ଷ ହେଲା । ଝଡ଼ତୋଫାନ ସବୁ ସହି ରହିଛି ଏ ଦେଶ ଓ ସମାଜ, ଏହି ମଠ ଆଶ୍ରମ ନିର୍ଗତ ଆଧ୍ୟାତ୍ମିକ ଶକ୍ତି ଯୋଗେ ।” ଶରତ ଅଳ୍ପ ହସି କହିଲେ, “ଜଣେ ଦର୍ଶନ ଶାସ୍ତ୍ରରେ ଏମ୍. ଏ. ଆଉ ଜଣେ ଇତିହାସରେ ଏମ୍. ଏ. ଆଉ ମୁଁ ହିଁ କେବଳ ରାଜନୀତି ବିଜ୍ଞାନରେ ଏମ୍. ଏ. । ଦର୍ଶନ, ଇତିହାସ ହେଉଛି ମାନସିକ ଜଗତର ବସ୍ତୁ । ବ୍ୟବହାରିକ ଜଗତର ନିତ୍ୟନୈମିତ୍ତିକ ଦୈନନ୍ଦିନ ଜୀବନ ସହିତ ରାଜନୀତିର ଘନିଷ୍ଠ ସମ୍ବନ୍ଧ । ପ୍ରବଳ ବନ୍ୟାରେ ଯେପରି ବହୁ ଜନ୍ତୁ, ସାପ ବେଙ୍ଗ, ବାଘ ମଣିଷ ପରସ୍ପର ଭେଦ ଭୁଲିଯାଇ ଏକ ସାଙ୍ଗରେ ଭାସିଯାଆନ୍ତି,

ସେହିପରି ଆମେ ସବୁ ଏକ ସାଙ୍ଗରେ କଲେଜରୁ ବାହାରି ଆନ୍ଦୋଳନରେ ଲାଗିଗଲୁ । ବନ୍ୟା ଛାଡ଼ିବା ପରେ ଆମ୍ଭେମାନେ ଆମ୍ଭମାନଙ୍କ ମୂଳ ଘର ରକୁ ଫେରିଆସିଛୁ ବୋଲି ମୋର ମନେହୁଏ । ଭଲ କରି ଭାବ, ଆମରି ଉପରେ ନିର୍ଭର କରୁଛି ଆମ, ସମାଜର ବର୍ତ୍ତମାନ ଓ ଭବିଷ୍ୟତ, କାରଣ ଆମରି ଜୀବନ ହେବ ଭବିଷ୍ୟତ ବଂଶଧରମାନଙ୍କ ପକ୍ଷରେ ଦିଗ୍‌ଦର୍ଶକ । ପଚିଶ ବର୍ଷ ପଚାଶ ବର୍ଷ ପରେ ଆମର ପୁତ୍ର ପୌତ୍ର ପ୍ରପୌତ୍ରମାନେ ଯେପରି ନ କହନ୍ତି ତୁମେମାନଙ୍କ ପିତା, ପିତାମହ, ପ୍ରପିତାମହମାନେ ସ୍ୱାଧୀନତାକୁ ପାଇ ତା'କୁ ମଝି ନଈରେ ଭସାଇ ଦେଇଗଲେ । ମନସ୍ତତ୍ତ୍ୱ, ଇତିହାସ ଓ ରାଜନୀତି ସବୁଦିଗରୁ ଭାବି ଆମକୁ କାର୍ଯ୍ୟକ୍ରମ ନିର୍ଣ୍ଣୟ କରିବାକୁ ହେବ ।"

ଏହିପରି ଚାଲିଲା ରାତି ଅଧ ପର୍ଯ୍ୟନ୍ତ ଆଲୋଚନା । ମଝିରେ ପୂର୍ବରୁ ବରାଦ ଦେଇଥିବା ଅନୁସାରେ ମହାପ୍ରସାଦ ଆସିଲା । ଭୋଜନ ସମୟରେ ମଧ୍ୟ ଆଲୋଚନା ବନ୍ଦ ହୋଇପାରି ନ ଥିଲା । କିଏ କାହାରି ଠାରୁ ଊଣା ନୁହନ୍ତି, କିନ୍ତୁ ତିନିହେଁଯାକ ଜୀବନର ଅପରାହ୍ନରେ । ବିଗ୍ରହ ଶକ୍ତିରେ କେହି

—୬—

ଅସନ୍ତୁଷ୍ଟ କେତେକ ବିଗ୍ରହ ସାର ହୋଇ ସନ୍ତୋଷ ବିଧାନ ପାଇଁ କୌଣସି ଏକ ନିର୍ଦ୍ଦିଷ୍ଟ ସର୍ବସମ୍ମତ ସିଦ୍ଧାନ୍ତରେ ପହଞ୍ଚିବା ଅସମ୍ଭବ ଯଦି ସମସ୍ତଙ୍କର ଅସନ୍ତୋଷର କାରଣ ଏକ ନ ହୋଇଥାଏ । ତାହା ହିଁ ହେଲା ଜଗଦୀଶ୍, ଶରତ ଓ ବାଳକୃଷ୍ଣଙ୍କ ପକ୍ଷରେ । ବହୁଦିନ ସକାଳ, ସନ୍ଧ୍ୟା, ରାତି ଆଲୋଚନା କରି କରି ଶେଷରେ ନିଜ ଭିତରେ ତିକ୍ତତା ସୃଷ୍ଟି ହେବାର ଉପକ୍ରମ ହେଲା ସିନା । କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ତିନିଜଣଙ୍କୁ ସୁହାଇବା ଭଳି ସ୍ଥିର ହୋଇପାରିଲା ନାହିଁ । ତେଣୁ ମତଭେଦରେ ସମ୍ମତି ଜ୍ଞାପନ କରି ଯେ ଯାହା ବାଟରେ ଯିବା ପାଇଁ ତିନିହେଁଯାକ ରାଜି ହୋଇଗଲେ । ଅନ୍ୟ ଦୁଇଜଣ ପୁରୀରୁ ଅନ୍ୟତ୍ର ଗଲେ—ଜଗଦୀଶ୍ ରହିଗଲେ ପୁରୀରେ । ସେ ଶୁଣିଛନ୍ତି ପୁରୀ ବାୟୁମଣ୍ଡଳରେ ଏକ ଆଧ୍ୟାତ୍ମିକ ସୂକ୍ଷ୍ମ ପ୍ରବାହ ଅଛି, ଯାହା ସାଧକମାନଙ୍କୁ ଆକର୍ଷଣ କରେ । ବହୁ ସାଧକ ସିଦ୍ଧ ଶଙ୍କରାଚାର୍ଯ୍ୟଙ୍କଠାରୁ ଆରମ୍ଭ କରି ପରମହଂସ ଯୋଗାନନ୍ଦଙ୍କ ପର୍ଯ୍ୟନ୍ତ ଦୀର୍ଘ ପ୍ରାୟ ହଜାରେ ବର୍ଷରୁ ଊର୍ଦ୍ଧ୍ୱ ସମୟ ଭିତରେ କେତେ ସାଧକଙ୍କ ସାଧନାରେ କ୍ଷେତ୍ରର

ଧର୍ମିମ ଟିରେ ଆଧ୍ୟାତ୍ମିକତା ମିଶିଯାଇଛି । ଏଣୁ ଏଇଠି ଶେଷ ଜୀବନଟା କଟାଇବା ପାଇଁ ଜଗଦୀଶ୍ ସ୍ଥିର କଲେ । ଏହି ଶେଷ ଜୀବନରେ ସେ ନିଜେ ଆଧ୍ୟାତ୍ମିକ ଶକ୍ତି ତ ଆହରଣ କରିବେ ଏବଂ ସମାଜରେ ଆଧ୍ୟାତ୍ମିକ ଶକ୍ତିର ବିକାଶ ପାଇଁ ମଧ୍ୟ ପରୋକ୍ଷରେ କାର୍ଯ୍ୟ କରିବେ । ଏହା ଭାବି ସେ ମଠ ଆଦି ବୁଲିଲେ କେଉଁଠି ରହିବେ । ବଡ଼ ବଡ଼ ମଠ ସବୁ ତାଙ୍କ ପସନ୍ଦ ହେଲା ନାହିଁ । ସେ ସବୁ ଆରମ୍ଭ ହୋଇଥିଲା ବିଭିନ୍ନ ମତବାଦର ଗୁରୁମାନଙ୍କ ଆଧ୍ୟାତ୍ମିକ ଉତ୍ସାହରେ ସତ, ମାତ୍ର କାଳକ୍ରମେ ସେ ସବୁରୁ କର୍ପୂର ଉଡ଼ିଯାଇ ରହିଛି କେବଳ କନା । କନାରୁ ବାସ ମଧ୍ୟ ଉଡ଼ିଯାଇଛି କେତେକଙ୍କ କ୍ଷେତ୍ରରେ । ବୁଲି ବୁଲି ଯାଇ ସ୍ୱର୍ଗଦ୍ୱାର ପାଖରେ ଏକ ଅତି ଛୋଟ ଘରଟିଏ ଦୂରରୁ ଦିଶୁଛି ଛୋଟ ପରିତ୍ୟକ୍ତ କୁଡିଆଟିଏ ପରି—କେହି ଭିତରେ ନାହାନ୍ତି. କୌତୂହଳବଶତଃ ସେଠି ଯାଇ ପହଞ୍ଚିଲେ ଜଗଦୀଶ୍ । ଘର ପାଖକୁ ଯାଇ ନଜର ପଡ଼ିଲା ଏକ ଓହଳିଥିବା ସାଇନ ବୋର୍ଡ ପରି ପଟା ଖଣ୍ଡେ । ଗୋଟେ ପାଖ ଖସିଯାଇ ଅଧା ଝୁଲା ହୋଇ ରହିଛି, ସେଥିରେ ଲେଖାଅଛି, "ଶେଷାଶ୍ରୟ" । ଘର କବାଟ ମେଲା. ଭିତରକୁ ପଶିଯାଇ ଦେଖିଲେ କାନ୍ଥରେ ଅନେକ ଲୋକଙ୍କ ନାମ ଓ ସେମାନଙ୍କ ନାମଧାଡ଼ିରେ ଅର୍ଥର ପରିମାଣ । ଘରଟି ନିତାନ୍ତ ଅପରିଷ୍କାର ଅବସ୍ଥାରେ । ପାଖ ଏକ ଛୋଟ ଘରେ କଡ଼େଇ ଓ ଚଟୁଟିଏ ପଡ଼ିଛି—ଛୋଟ ଚୁଲିଟିଏ, ପାଙ୍ଗରେ ଏକ ଛୋଟ ପାତ୍ରରେ କିଛି ଅଟା କେବେ ରହିଥିବାର ଅନୁମାନ କଲେ । ଜଗଦୀଶ୍ଙ୍କ କୌତୂହଳ କ୍ରମଶଃ ବୃଦ୍ଧି ପାଇଲା । ସେ ଆଖପାଖ ଲୋକଙ୍କୁ ପଚାରି ବୁଝିଲେ ସେ ଘରଟିର ବିବରଣୀ । ଶୁଣିଲେ ସେଠି ଜଣେ ଅଦ୍ଭୁତ ଶକ୍ତିଧର ସ୍ୱାମୀ ବଙ୍ଗ ଦେଶରୁ ଆସି ରହିଥିଲେ । ତାଙ୍କ ପାଖକୁ ଭୁବନେଶ୍ୱରରୁ ମନ୍ତ୍ରୀସବୁ ମଧ୍ୟ ଆସୁଥିଲେ ଏବଂ ତାଙ୍କର ଶିଷ୍ୟ ଥିଲେ । ସେ ସ୍ୱାମିଜୀଙ୍କୁ ପୋଲିସ୍ ଧରିଲେ । ଥାନା ପାଖରେ ପହଞ୍ଚିଲାବେଳକୁ ସ୍ୱାମିଜୀଙ୍କ ଦେହରେ ପ୍ରାଣ ନ ଥିଲା । ସେ ଗଲା ପରେ ଆଉ କେହି ସେ ଘରକୁ ଯାଉନାହାନ୍ତି । ସନ୍ଧ୍ୟାବେଳେ ସେ ଘର ଭିତରୁ ଏକ ଆବାଜ୍ ଆସେ । ସେ ଘରେ ଆଗରୁ ଜଣେ ସ୍ୱାମିଜୀଙ୍କ ଚେଲା ମଧ୍ୟ ମରିଯାଇଥିଲେ । ଭୟରେ ଗୋରୁ ଗାଈ ମଧ୍ୟ ସେ ଘର ଭିତରକୁ ଯାଆନ୍ତି ନାହିଁ । ଯେଉଁ ମହାତ୍ମା ସେଠି ଥିଲେ ତାଙ୍କ ପରି ଯୋଗୀ ପୁରୀରେ ନାହାନ୍ତି । ସେ ମରିଯାଇଥିଲେ କ'ଣ ହେଲା,

ସେ ତାଙ୍କ ଘରେ ଅଛନ୍ତି । ଗତି ଅଧରେ ଚଞ୍ଚପଚଞ୍ଚ ହେଉଥିବାର ଶବ୍ଦ ଶୁଣାଯାଏ । ବେଳେ ବେଳେ ଓଁ ଓଁ ଶବ୍ଦ ମଧ୍ୟ ଶୁଣାଯାଏ । ଏସବୁ ଶୁଣି କିଏ କିଏ ମନ୍ତ୍ରୀ ଆସୁଥିଲେ ନାମ ଜାଣିବାକୁ ଜଗଦୀଶ୍ ଚେଷ୍ଟା କଲେ । ଅନୁସନ୍ଧାନ କରିବାକୁ ଚେଷ୍ଟା କରି ଜାଣିଲେ ମନ୍ତ୍ରୀମାନେ ନୁହଁନ୍ତି, କେବଳ ହରିଚରଣ ଦାସ ମନ୍ତ୍ରୀ ସେଠାକୁ ଆସୁଥିଲେ । ହରିଚରଣ ଦାସଙ୍କୁ ସେ ଚିହ୍ନନ୍ତି ବହୁ ଆଗରୁ । ଏକ ସଙ୍ଗରେ ଆନ୍ଦୋଳନରେ କାମ କରିଛନ୍ତି । ଜଗଦୀଶ୍ କଟକ ଜିଲ୍ଲାରେ କାମ କରୁଥିଲେ । ହରିଚରଣ ବାଲେଶ୍ୱର ଜିଲ୍ଲାରେ । ହରିଚରଣଙ୍କୁ ମନ୍ତ୍ରୀପଦରୁ ଏବଂ କଂଗ୍ରେସରୁ ଯେ ବାଦ୍ ଦିଆହୋଇଛି, ଏହା ମଧ୍ୟ ଜଗଦୀଶଙ୍କୁ ଜଣା । ବିରକ୍ତ ହୋଇ ରାଜନୀତିରୁ ଅପସରି ଯାଇଥିଲେ ମଧ୍ୟ ସେ ରାଜନୀତିର ଖବର ରଖୁଥିଲେ ଅଭ୍ୟାସ ବଶତଃ । କେଜାଣି କାହିଁକି ତାଙ୍କର ମନେ ହେଲା ସେହି ପରିତ୍ୟକ୍ତ ଘରଟିରେ ସେ ବିନିକ୍ତସେବୀ ହୋଇ ରହିବେ । ସେଇଠି ସେ ତାଙ୍କର ଆଧ୍ୟାତ୍ମ ସାଧନାରେ ଲାଗିବେ । କିନ୍ତୁ ଘରଟିର ସମୁଦାୟ ବୃତ୍ତାନ୍ତ ଜାଣିବାକୁ ହେବ । ହରିଚରଣଙ୍କଠାରୁ ସବୁ ଜଣାଯିବ ବୋଲି ଭାବି ସେ ଗଲେ ଭୁବନେଶ୍ୱର । ହରିଚରଣ ଅତି ବିବ୍ରତ ଓ ବିଷର୍ଣ୍ଣ । ତାଙ୍କ ଘରକୁ ଯାଇ ଦେଖା କରି ନିଜ ପରିଚୟ ଦେବା ମାତ୍ରେ ହରିଚରଣ କୁଣ୍ଢେଇପକାଇ 'ଆସ ଜଗଦୀଶ ବସ ବସ' କହି ତାଙ୍କୁ ଚୌକୀରେ ବସାଇଲେ । ବହୁବର୍ଷ ପରେ ଦେଖା—କୁଶଳ ମଙ୍ଗଳ ସମ୍ବାଦ ପଚରାପଚରି କରିବା ତ ଦୂରର କଥା, ଜଗଦୀଶ୍ ସମ୍ବନ୍ଧରେ କିଛି ଜାଣିବାକୁ ଚେଷ୍ଟା ନ କରି ସେ ତାଙ୍କର ଅନ୍ତର୍ବେଦନା ପ୍ରକାଶ କରିବାକୁ ଲାଗିଲେ । ମନେହେଲା ଯେପରି ସେ ତାଙ୍କର ପୂର୍ବପରିଚିତ ବନ୍ଧୁମାନଙ୍କ ଆଗରେ ନିଜର ମନକୁ ଅଜାଡ଼ି ଦେଇ, ଦୁଃଖର ଭାର କମାଇ ଦେଇ ମନକୁ ହାଲୁକା କରିଦେବେ । ସେତେବେଳକୁ ଆଉ ହରିଚରଣଙ୍କ ସଙ୍ଗ କେହି ନାହାନ୍ତି । ମନ୍ତ୍ରୀପଦ ଗଲା ପରେ ଏବଂ କଂଗ୍ରେସରୁ ବାହାରିଗଲା ପରେ ପ୍ରଥମେ ପ୍ରଥମେ ତାଙ୍କରି ପରି ଅସନ୍ତୁଷ୍ଟ କେତେକ ଆସୁଥିଲେ—ଅସନ୍ତୁଷ୍ଟ ଗୋଷ୍ଠୀ ଗଠନ, ସ୍ୱତନ୍ତ୍ର ଦଳ ଗଠନ ଇତ୍ୟାଦିର ପ୍ରସ୍ତାବ ନେଇ । ଧୀରେ ଧୀରେ ସେମାନେ ଛାଡ଼ି ଚାଲିଗଲେ— ଅସ୍ତଗତ ସୂର୍ଯ୍ୟକୁ କିଏ ବା କାହିଁକି ଆଦର କରିବ ? ଯେ ଯାହା ବାଟ ସେ ଦେଖିଲେ । ହରିଚରଣ ବର୍ତ୍ତମାନ ଏକାକୀ, ମନେ ପଡୁଛି ତାଙ୍କର ପୁରୁଣା

ସାଙ୍ଗ ଓ ପରିଚିତ ବନ୍ଧୁମାନଙ୍କ କଥା । ସେଥିପାଇଁ ସେ ଜଗଦୀଶଙ୍କ ସହିତ ଆକସ୍ମିକ ସାକ୍ଷାତରେ ଭବ-ବିହ୍ୱଳ ହୋଇ ତାଙ୍କ କଥା କିଛି ନ ଶୁଣି ତାଙ୍କ ଭଲ ମନ୍ଦ ନ ପଚାରି ଆଗେ ନିଜର ଦୁଃଖ ସବୁ ବଖାଣିଲେ । କିପରି ସେ ଦଳରୁ ବହିଷ୍କୃତ ହେଲେ, କିପରି ସେ ଦୁର୍ନୀତିରେ କର୍ତ୍ତୃପକ୍ଷଙ୍କୁ ସାହାଯ୍ୟ କରୁ ନ ଥିବାରୁ, ଶେଷରେ କଳି ପଡ଼ିଲେ ! ଜଗଦୀଶ୍ ସବୁ ଶୁଣୁଥାନ୍ତି । ମନେ ମନେ ବିସ୍ମିତ ହେଉଥାନ୍ତି । ଭାବୁଥାନ୍ତି—ପ୍ରଚଣ୍ଡ ଆଘାତ ପାଇଲେ ଯେପରି ଜଣେ ଜ୍ଞାନ ହରାଇ ଅର୍ଦ୍ଧଚେତନ ହୋଇଯାଏ, ସେହିପରି ହରିଚରଣଙ୍କ ଅବସ୍ଥା । କିଛି ସମୟ ହରିଚରଣଙ୍କ କଥା ଶୁଣି, ଆଉ ଧୈର୍ଯ୍ୟ ରଖି ନ ପାରି ଜଗଦୀଶ୍ ଅଳ୍ପ ହସିଦେଇ କହିଲେ, "ଶୁଣ, ହରିଚରଣ, ମୁଁ ଆସିଥିଲି ଗୋଟିଏ ଖବର ଜାଣିବା ପାଇଁ । ତୁମ ଖବର ସବୁ ମୁଁ ଖବର କାଗଜରେ ପଢ଼ିଛି । ସେ ବିଷୟରେ ପରେ କଥା ହେବା । ପୁରୀରେ ମୁଁ ସମୁଦ୍ର କୂଳରେ ବୁଲୁ ବୁଲୁ ଦେଖିଲି ଏକ ଛୋଟଘର । ସାଇନ୍‌ବୋର୍ଡ ମରା ହୋଇଛି "ଶେଷାଶ୍ରମ" । ସେଠି ଜଣେ ସ୍ୱାମୀ ରହୁଥିଲେ । ତୁମେ ଯାଇଥିଲ ସେଠିକି ! କଅଣ ସେ ଘର ଓ ସ୍ୱାମୀଙ୍କ ଖବର ଜାଣିବା ପାଇଁ ପୁରୀରୁ ଆସିଛି ଭୁବନେଶ୍ୱର । 'ଶେଷାଶ୍ରମ ସ୍ୱାମୀ' !! ହରିଚରଣଙ୍କ ହୃଦୟର ଏକ ନିଭୃତ କୋଣରେ ପ୍ରବଳ ଝଡ଼ ସୃଷ୍ଟି ହେଲା । ସେ ଆବେଗ ସମ୍ଭାଳି ନ ପାରି କାନ୍ଦି ପକାଇଲେ । ବେଶୀ ଦିନର କଥା ନୁହେଁ—ମାତ୍ର ଏହି କେତେ ମାସ ତଳର କଥା । ଭୁଲିଯାଇଥିଲେ ସେ ସବୁ ନିଜ ଅବସ୍ଥାର ବିପର୍ଯ୍ୟୟ ଚାପରେ । ଉଚ୍ଛୁଳି ଉଠିଲା ଭାବର ଆବେଗ । କି ଭାବ ତାହା ବୁଝିବା କଠିନ । ତୁଳସୀର ମୃତ୍ୟୁର କାରଣ ସେ ବୋଲି ପଶ୍ଚାତ୍ତାପ ନାଁ ସ୍ୱାମିଜୀଙ୍କ କୃପା ପ୍ରାପ୍ତ ନ ହୋଇ ମନ୍ତ୍ରୀ ପଦକୁ ଫେରି ନ ପାରିଲେ ବୋଲି ଦୁଃଖ ନାଁ କେବଳ ଅତୀତର ସ୍ମୃତିରେ ସାଧାରଣ ଦୁଃଖର ସାଗର । ସେ ଜାଣିଥିଲେ ପୋଲିସ୍ ହାତରେ ସ୍ୱାମିଜୀଙ୍କ ପ୍ରାଣ ଯାଇଛି । ସେ ଆଶା କରୁଥିଲେ, କ୍ଷମା ପ୍ରାର୍ଥନା କରି ଦଳପତିଙ୍କଠାକୁ ଯେଉଁ ପତ୍ର ଦେଇଛନ୍ତି ସେଥିରେ ତାଙ୍କର ମନ୍ତ୍ରୀପଦକୁ ପୁନରାବର୍ତ୍ତନ ହୁଏତ ସମ୍ଭବ ହେବ । ତା' ହେଲା ନାହିଁ । ସେତେବେଳକୁ ସ୍ୱାମିଜୀ, ତୁଳସୀ ସମସ୍ତଙ୍କ ସ୍ମୃତି ନିଜ ସ୍ମୃତିରେ ଅହରହ ଚିନ୍ତନ ଘର୍ଷଣରେ ମାନସପଟରୁ ପୂରାପୂରି ଲିଭିଯାଇଥିଲା । କିନ୍ତୁ ସ୍ମୃତି ଏକ ଜିଦ୍‌ଖୋର ମାୟାବିନୀ । ସେ ଉଭେଇଗଲା ବୋଲି

ଛଳନା କରେ । ପୁଣି ନିମିଷକେ ଜୀବନ୍ତ ଜ୍ୱଳନ୍ତ ରୂପରେ ପ୍ରକାଶ ପାଏ । ତାହାହିଁ ଘଟିଛି ହରିଚରଣଙ୍କ ମନରେ ଜଗଦୀଶଙ୍କ ପ୍ରଶ୍ନ ପରେ । କାନ୍ଦି କାନ୍ଦି ସେ କହିଲେ, "ସେ ସବୁ କାହାଣୀ ଜୀବନ ଥିବାଯାଏ ତୁଷ ପରି ମୋର ହୃଦୟରେ ପୋଡ଼ି ହେଉଥିବ"—କିଛିକ୍ଷଣ ନିରବ ରହି ରୁମାଲ କାଢ଼ି ଆଖି ପୋଛିଲେ । ଏ ଦୃଶ୍ୟ ଦେଖି ଜଗଦୀଶ୍ ଅବାକ୍ । ବିସ୍ମିତ ଚକ୍ଷୁରେ ଏକ ଧ୍ୟାନରେ ଚାହିଁ ରହିଥାନ୍ତି ଜଗଦୀଶ୍ । କିଛିକ୍ଷଣ ପରେ ହରିଚରଣ ଧୀରେ ଧୀରେ କହିଲେ, "ଜଗଦୀଶ୍, ତୁମେ ଜାଣିଥିବ ତୁଳସୀକୁ ।" "ହଁ ହଁ ସେ ଯେ ତୁମ ସାଙ୍ଗରେ ବାଲେଶ୍ୱରରେ ଲବଣ ସତ୍ୟାଗ୍ରହବେଳେ କାମ କରୁଥିଲା, କଟକରୁ ଆମେ ଦଳେ ଯାଇ ଯେତେବେଳେ ପହଞ୍ଚିଲୁ, ସେତେବେଳେ ସେ ଆମର ରହିବା ଖାଇବା ଇତ୍ୟାଦି କଥା ବୁଝୁଥିଲା । ତା'ପରେ ତ ତୁମେ ସବୁ କୁଆଡ଼େ ଜେଲ୍ ଗଲ । ଆମେ ତ ଏଆଡ଼େ ପାରଦୀପରେ ଜୁଜଙ୍ଗ ସାଆନ୍ତାଣୀଙ୍କ ନେତୃତ୍ୱରେ ସତ୍ୟାଗ୍ରହ କରି ଜେଲ୍ ଗଲୁ । ତା'ପରେ ଆଉ ମୋର ତୁଳସୀ ସାଙ୍ଗରେ ଦେଖା ହୋଇନାହିଁ ।" ଜଗଦୀଶ୍ କଥା ସାରିବା ପରେ ହରିଚରଣ ତଳକୁ ମୁହଁ କରି କହିଲେ, "ମୋର ବି ତା' ସହିତ ବହୁବର୍ଷ ଦେଖା ସାକ୍ଷାତ୍ ହୋଇ ନ ଥିଲା । ମୁଁ ତ ଚାଲି ଆସିଲି ପାର୍ଲାମେଣ୍ଟାରି ପଲିଟିକ୍ସକୁ—ନିର୍ବାଚନ, ଭୋଟ, ଏମ୍. ଏଲ୍. ଏ., ମନ୍ତ୍ରୀ ଏହି ସବୁଥିରେ ମାତିଲି । ହଠାତ୍ ଦିନେ ତୁଳସୀ ଆସି ମୋତେ ସେ "ଶେଷାଶ୍ରୟ" କଥା କହିଲା । ମୁଁ ଦୁଇ ତିନି ଥର ସ୍ୱାମିଜୀଙ୍କ ସହିତ ଦେଖା ସାକ୍ଷାତ୍ କରିଛି । ଅଦ୍ଭୁତ ଶକ୍ତି ସମ୍ପନ୍ନ ସେ ମହାଯୋଗୀ । କେତେ ଛାତ୍ର, କେତେ ରୋଗୀ ଯେ ତାଙ୍କର ଆଶୀର୍ବାଦ ଲଭ କରି କୃତ୍ୟକୃତ୍ୟ ହୋଇଛନ୍ତି ତା'ର ହିସାବ ନାହିଁ । ତାଙ୍କ ଜନପ୍ରିୟତା ଏପରି ବଢ଼ିଗଲା ଯେ ଶେଷରେ ତାଙ୍କୁ ଧରି ନେଇ ଜେଲ୍‌ରେ ରଖିବାକୁ ସରକାର ସିଦ୍ଧାନ୍ତ ଗ୍ରହଣ କଲେ । ତୁମେ ଜାଣ ଜନପ୍ରିୟତା ଆଜିର ଶାସନରେ ଏକ ଘୋର ଅପରାଧ, ଯେଉଁ ଅପରାଧରେ ମୋତେ ମଧ୍ୟ ଦଣ୍ଡ ଦିଆ ହୋଇଛି । ସେ ଯାହାହେଉ, ସ୍ୱାମିଜୀଙ୍କୁ ଆଉ ଜେଲ୍‌କୁ ନେବା ହୋଇପାରିଲା ନାହିଁ । ଏପରି କି ଥାନା ହାଜତ୍‌କୁ ମଧ୍ୟ ଯିବା ତାଙ୍କର ନ ହେଲା । ସେ ବଡ଼ ଦାଣ୍ଡରେ ପୋଲିସ୍ ଗାଡ଼ିରେ ଆଖି ବୁଜିଦେଲେ । ସେ ଇଚ୍ଛା କରି ନିଜକୁ ନିଜେ ଏ ଅତ୍ୟାଚାରର ଉର୍ଦ୍ଧ୍ୱକୁ ଅପସାରଣ କରିନେଲେ ।" "ଆଉ ତୁଳସୀ ଗଲେ କୁଆଡ଼େ ?"

ଫସ୍ତୀରେ ଜଗଦୀଶ୍ । ଅନ୍ତ ଇତସ୍ତତଃ ହୋଇ ହରିଚରଣ କହିଲେ "ସେ ସେହି ଶେଷ ସମୟର ସ୍ୱାମିଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲା । ସ୍ୱାମିଜୀଙ୍କ ତିରୋଧାନର କିଛିକାଳ ପୂର୍ବରୁ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ସେ ଚାଲି-ଯାଇଥିଲା । ବଡ଼ ଦୁଃଖରେ ତାର ଶେଷ ଜୀବନ କଟିଛି । ସ୍ୱରିଆଡୁ ବିଫଳ ମନୋରଥ ହୋଇ ଶେଷରେ ଖାଇବାକୁ ମୁଠା ଗଣ୍ଡେ ନ ପାଇ ସେ ଆଶ୍ରୟ ନେଇଥିଲା ସ୍ୱାମିଜୀଙ୍କଠାରେ । ଗର୍ଦ୍ଧିଯୁଗର ସତ୍ୟ ଘଟଣାକୁ କେନ୍ଦ୍ର କରି ଦୁଃଖାନ୍ତ ନାଟକ ଲେଖିବାକୁ ଗଲେ, ତୁଳସୀର ଜୀବନ ହିଁ ସବୁଠୁଉପାଦାନ ଯୋଗ ଇଦେବ ।"

"ବର୍ତ୍ତମାନ ସେ ଆଶ୍ରମର ମାଲିକ କିଏ ?" "କେହି ନାହାନ୍ତି । ସ୍ୱାମିଜୀ ଥିଲେ ତା'ର ମାଲିକ । ସ୍ୱଦାଦାତାମାନଙ୍କ ନାମ ସେ କଣ୍ଠରେ ଲେଖି ଟଙ୍ଗାଇ ଦେଇଥିଲେ । ଖାଲି ପଡ଼ିଥିବା ସେ ଆଶ୍ରମ ବା କେହି ତାକୁ ଇତିମଧ୍ୟରେ ଦଖଲ କରିସାରିଲେଣି ।"

"ମୁଁ ଭାବିଛି ସେଠି ରହିବି ।" ଏତିକି କହିଲା ପରେ ହରିଚରଣଙ୍କ ମନକୁ ଲାଗିଲା, ତାଙ୍କର ପୂର୍ବ ପରିଚିତ ଜଗଦୀଶଙ୍କ ଖବର ସେ ଆଗେ ଜାଣିବା ଉଚିତ୍ ଥିଲା । ଅନ୍ତ ବିବ୍ରତ ହୋଇ ତରତର ହୋଇ କହି-ପକାଇଲେ, "କ୍ଷମା କର ଜଗଦୀଶ୍ । ବହୁବର୍ଷ ପରେ ତୁମ ସହିତ ସାକ୍ଷାତ ହେଲେ ମଧ୍ୟ ତୁମର କୁଶଳ ମଙ୍ଗଳ ମୁଁ ପଚାରି ପାରିନାହିଁ । ମୋ ମନ ଭିତରେ ଏପରି ଏକ ପ୍ରବଳ ଚାପ କାର୍ଯ୍ୟ କରୁଛି, ତାକୁ କାହାରି ଆଗରେ ଓହ୍ଲାଇ ନ ଦେଲେ ମୁଁ ଶ୍ୱାସରୁଦ୍ଧ ହୋଇ ପଡ଼ିଲା ପରି ହେଉଯାଉଛି କାହା ଆଗରେ ବା ମନକଥା କହିବି–କେହି ତ ବନ୍ଧୁ ନାହାନ୍ତି । ସେହି ସମୟକାର ବନ୍ଧୁଙ୍କୁ ଦେଖିଲେ ତାଙ୍କରିଠାରେ ମୋର ମନ ଅଳାଡ଼ି ହୋଇ ପଡ଼ୁଛି ଆପେ ଆପେ । ହଁ, କଅଣ ତୁମ କଥା କୁହ । ଆଉ ତୁମ ଆମର ସେ ସମୟର ସାଙ୍ଗ, ସେମାନଙ୍କ ଖବର ବା କଅଣ ? ମନେ ହେଉଛି ଯେପରି ଏହି କେତେବର୍ଷ ଆମକୁ ଏକ ପ୍ରବଳ ଭୂତ ଗ୍ରାସ କରିଯାଇଥିଲା । ଭୂତ ଛାଡ଼ିଯିବାରୁ ପୂର୍ବର ସବୁକଥା ମନେ ପଡ଼ିଯାଉଛି । ହଁ, ତୁମ କଥା ସବୁ କହ ତ । ଆମେ ସବୁ 'ପୁରୁଣା ଲୋକ ତ ଖାପ୍‌ଛଡ଼ା ହୋଇ ଯାଉଛୁଁ । ପୁଣି ହୁଏତ ଜୋଡ଼ି ହୋଇଯିବା ।

ଜଗଦୀଶ୍ ଈଷତ୍ ହସି କହିଲେ, "ହାଣ୍ଡି ଫାଟିଗଲେ ତ ଖପର, ଆଉ କଅଣ ଯୋଡ଼ି ହେବ ? ମୋ କଥା କଅଣ ବିଶେଷ କିଛି ନୁହେଁ— ଯାହା ଅଧିକାଂଶ ସତ୍ୟାଗ୍ରହୀଙ୍କ ଅବସ୍ଥା, ମୋର ମଧ୍ୟ ସେୟା । ସ୍ୱାଧୀନତା ପରେ ଯେଉଁ ପାର୍ଲାମେଣ୍ଟାରି ପଲିଟିକ୍ସ ଆରମ୍ଭ ହେଲା, ସ୍ରୋତ ବହିଲେ ଯେପରି ଧାନ ସବୁ ଅଗାଡ଼ି ହୋଇଯାଏ, ଆମେ ସେହିପରି ହୋଇଗଲୁ । ବୁଲାବୁଲି କରି ଗାନ୍ଧିଜୀଙ୍କ ଗଠନମୂଳକ କାମ କିଛି କରିବି ବୋଲି ଭାବି ସେଥିରେ ଲାଗିଲି । ସେ ସବୁ କାମ ପାଇଁ ଯେଉଁସବୁ ସଂସ୍ଥା ଗଠିତ ହୋଇଛି ସେସବୁ ଭିକ୍ଷାରୀକୁ କିଛି ପଇସା ଫୋପାଡ଼ି ଦେଇ ବିଦା କଲା ଭଳି । କିଛି ଆର୍ଥିକ ସାହାଯ୍ୟ ଦେଇ ଚରମ ଅବହେଳାରେ ପକାଇ ଦିଆ ହୋଇଛି । ଗାନ୍ଧିଜୀଙ୍କ ନାଁରେ କିଛି ଦାନ କରି ପୁଣ୍ୟ ଅର୍ଜନ କରା ହେଉଛି ବୋଲି ମନେ କରାହେଉଛି । ଆନ୍ତରିକତା ନାହିଁ କର୍ତ୍ତୃପକ୍ଷଙ୍କର । ପୁଣି ଯୋଗ ଦେଲି ଭୂଦାନ ଆନ୍ଦୋଳନରେ । ସେଠି ମଧ୍ୟ ସେହି ଆତ୍ମପ୍ରବଞ୍ଚନା—ଭଲ ଲାଗିଲା ନାହିଁ । ଛାଡ଼ିଛୁଡ଼ି ଦେଇ ଜୀବନର ଆଉ ଏକ ଦିଗ, ଯାହା ଅବହେଳିତ, ସେଇ ଆଡ଼କୁ ଯିବାକୁ ବାହାରିଲି, ଆଉ କଅଣ, ମୋ ସମ୍ବନ୍ଧରେ ଆଉ ବିଶେଷ କିଛି କଥା ନାହିଁ । ଅବଶ୍ୟ ପରିବାର ପ୍ରତି ମୋର କର୍ତ୍ତବ୍ୟରେ ଗୁରୁତର ତ୍ରୁଟି ଘଟନ୍ତା, ଯଦି ମୋର ଜଣେ ଭାଇ ରୋଜଗାର କରି ପରିବାର ଚଳାଉ ନ ଥାନ୍ତା । ମୋର ପୁଅ ମଧ୍ୟ ଖଣ୍ଡେ ଚାକିରି ପାଇ ଯାଇଛି । ମୋର ସ୍ତ୍ରୀର ତ ବହୁ ପୂର୍ବରୁ କାଳ ହୋଇଯାଇଛି । କିନ୍ତୁ ମୁଁ ସେମାନଙ୍କ କଥା ବୁଝେ ନାହିଁ କି ସେମାନେ ମୋ ଉପରେ କିଛି ଦାବୀ ରଖନ୍ତି ନାହିଁ କି ମୋଠାରୁ କିଛି ଆଶା କରନ୍ତି ନାହିଁ । ଜୀବନଟା ତ ମୋର ଗୋଟେ ଅସ୍ୱାଭାବିକ ବାଟରେ ଯୌବନାବସ୍ଥାରେ ଗ୍ଳଲିଗଲା । ମୁଁ ଆଉ ମୋ ପରି ଅନେକ ଭାବିଥିଲେ ସେ ବାଟଟି କ୍ରମକ୍ରମେ ସ୍ୱାଭାବିକ ହୋଇଯିବ, କିନ୍ତୁ ତା' ହେଲା ନାହିଁ । ସ୍ରୋତ ଯାଇ ସମୁଦ୍ରରେ ନ ମିଶି ବାଟରେ ବାଧା ପାଇ ଅଟକି ଗଲା । ପାଣି ଛାଡ଼ିଗଲେ ଜଳଜନ୍ତୁ ଯେପରି ଛଟପଟ ହୁଅନ୍ତି, ସେହିପରି ଆମେ ହେଉଛୁ । ଛାଡ଼, ଏ ତ ମୋ ପରି ବହୁ ଲୋକଙ୍କର ଅବସ୍ଥା—ଚର୍ଚ୍ଚା କରି କିଛି ଲାଭ ନାହିଁ । ଆଚ୍ଛା, "ଶେଷାଶ୍ରୟ"ର ଯେଉଁ ସ୍ୱାମୀ କଥା କହୁଥିଲ, ସେ କଅଣ ଅତି ବୟସ୍କ ନା ମଧ୍ୟ ବୟସ୍କ । ଚେହେରା କିପରି ? ତାଙ୍କଠାରେ କିଛି ଅଲୌକିକତା ଲକ୍ଷ୍ୟ କରିଥିଲୁ ?"

"ସ୍ୱାମିଜୀ ଅତି ବୃଦ୍ଧ—ସେ କୁଆଡେ ପୂର୍ବ ବଙ୍ଗ ଦେଶର ବମ୍ ଆନ୍ଦୋଳନରେ ଦଶ ବର୍ଷ ଜେଲ୍ ଯାଇଥିଲେ । ଦେଖିବାକୁ ଗମ୍ଭୀର, ଆକାର ପ୍ରକାର ଦେଖିଲେ ସ୍ୱତଃ ଜଣକର ଭକ୍ତି ହୁଏ । କଥା ସ୍ପଷ୍ଟ—ଚିନ୍ତା ମଧ୍ୟ ପରିଷ୍କାର । ସେ ଯେ ମୋତେ ଶେଷଥର କହିଥିଲେ ରାଜନୈତିକ ଉଦ୍ଦେଶ୍ୟରେ ଆଧ୍ୟାତ୍ମିକତାର ବ୍ୟବହାର ନିନ୍ଦନୀୟ । ମୁଁ ତାଙ୍କୁ କେବେ ଭୁଲିପାରିବି ନାହିଁ । ସ୍ୱାମିଜୀଙ୍କ ପାଖକୁ ମୁଁ ଆଉ ଥରେ ଯାଇଥାନ୍ତି—କିନ୍ତୁ ଇତିମଧ୍ୟରେ ସେ ତ ଦେହତ୍ୟାଗ କଲେ । ଆଚ୍ଛା, ଏଠି ଅନ୍ନ କେଉଁଠି ? ଆଜି ଏଠି ରହିଯା" ଅନୁରୋଧ କଲେ ହରିଚରଣ ।

"ନାଁ ମୋର କାମ ଅଛି । ମନ ମଧ୍ୟ ସ୍ଥିର ନାହିଁ—ଯା' ହେଉ, ବହୁ ବର୍ଷ ପରେ ଦେଖା ହେଲା, ମୁଁ ଶୁଣିଛି ସ୍ୱାମିଜୀଙ୍କ ସାଙ୍ଗରେ ତୁମର ପରିଚୟ ଥିଲା । ସେଇକଥା ବୁଝିବାକୁ ଆସିଥିଲି ।"

"ଆଉ ଆମ ପୂର୍ବ ବନ୍ଧୁମାନଙ୍କ ଖବର କଅଣ ?" କିଏ ସବୁ କେଉଁଠି ଅଛନ୍ତି—ତୁମ ସହିତ କାହାର କାହାର ସମ୍ପର୍କ ଅଛି ?" କୌତୂହଳୀ ହୋଇ ପଚାରିଲେ ହରିଚରଣ ।

"ହଁ, ଅଛି ସେହିପରି କେତେଜଣ ଅନ୍ତରଙ୍ଗ ବନ୍ଧୁଙ୍କ ସାଙ୍ଗରେ । ଅବସ୍ଥାର ଚାପରେ ସମସ୍ତେ ତ ଛିନ୍ନ ବିଛିନ୍ନ । ମେଳା ଭାଙ୍ଗିଗଲେ ଯେପରି କିଏ କୁଆଡ଼େ ଚାଲିଯାଆନ୍ତି, କାହାକୁ କେହି ପଚାରନ୍ତି ନାହିଁ । ସେହିପରି ଆମର ଅବସ୍ଥା । ବର୍ଷା ଝଡ଼ିରେ ରାତି ଆସିବା ଆଗରୁ ଯେପରି ଦୂରପଥଗାମୀ ଆଶ୍ରୟ ଖୋଜି ବୁଲେ, ସେହିପରି ଆମେ ହେଉଛୁ—ଯା' ହେଉ, ତୁ ଏକ ଆଶ୍ରୟ ପାଇ ରହିଯାଇଛୁ—ଆନନ୍ଦର ବିଷୟ ।"

"କି ଆଶ୍ରୟ ସେ, ଅନିଶ୍ଚିତ ତା'ର ଅବସ୍ଥା, କେତେବେଳେ ଖୁଣ୍ଟ ଭାଙ୍ଗିପଡୁଛି ତ କେତେବେଳେ କାନ୍ଥ ଧସି ହୋଇଗଲଣି । ପୁଣି ଘରୁ ବାହାର କରି ଦେଇ ନିଜେ ରହିବା ପାଇଁ ଆଉ କେତେଜଣ ବାହାରିଲେଣି ..............। "ଛାଡ଼, ସେ ସବୁ ତ ଜୀବନର ସାଧାରଣ ଅବସ୍ଥା—ଆଚ୍ଛା, ମୁଁ ଆଜି ଯାଉଛି । ପୁଣି ପରେ କେବେ ଆସିବି । କଥା ହେବା—" କହି ଜଗଦୀଶ୍ ବିଦାୟ ନେଲେ ।

ଧର୍ମଶ ଳାଲ୍ଲ ବିଛଣାପତ୍ର ଲୁଗାପଟା ନେଇ ଆସି ଜଗଦୀଶ୍ ରହିଲେ ଶେଷାଶ୍ରଯରେ । ନିଜେ ଲାଗିପଡ଼ି ଘରକୁ ସଫା କରାଇଲେ । ଘର ଭିତରେ କାଚ ଆଲମାରି ଖୋଲି ଦେଖିଲେ ସେଥିରେ କେତେଖଣ୍ଡ ବହି ଓ ଡାଏରିଟିଏ ଅଛି । ବହି କେତେଖଣ୍ଡ ହେଉଛି ଯୋଗ ପ୍ରକ୍ରିୟା ସମ୍ବନ୍ଧରେ । ବିବେକାନନ୍ଦଙ୍କ ରାଜଯୋଗ, ପରମହଂସ ଯୋଗାନନ୍ଦଙ୍କ ଜୀବନୀ ଓ ତାଙ୍କର କ୍ରିୟାଯୋଗ ଆଉ ଖଣ୍ଡେ ଦୁଇଖଣ୍ଡ ଗୋରଖନାଥଙ୍କ ଯୋଗ ଓ ପରମହଂସ ନିଗମାନନ୍ଦଙ୍କ ସାଧନା ସମ୍ପର୍କରେ । ଏ ସବୁ ସାଙ୍ଗରେ ଶ୍ରୀ ଅରବିନ୍ଦଙ୍କ "ପୂର୍ଣ୍ଣଯୋଗ" ସମ୍ବନ୍ଧରେ କୌଣସି ବହି ନ ଥିବାର ଦେଖି ଜଗଦୀଶ୍ ବିସ୍ମିତ ହେଲେ । କାରଣ ଶ୍ରୀ ଅରବିନ୍ଦ ହେଉଛନ୍ତି ଅତ୍ୟାଧୁନିକ ଯୋଗୀ ଏବଂ ବ୍ୟର୍ଥତାକୁ ସାର୍ଥକତାରେ ପରିଣତ କରିବାର ଉପାୟ ସେ ବତାଇ ଦେଇଛନ୍ତି ବୋଲି ଜଗଦୀଶ୍‌ଙ୍କ ଧାରଣା ଓ ବିଶ୍ୱାସ । ଡାଏରିଟି ଏକ ବଡ଼ ଏକ୍‌ସରସାଇଜ୍ ଖାତା ୫୦୦ ପୃଷ୍ଠାର । ଖୁବ୍ ଛୋଟ ଛୋଟ ଅକ୍ଷରରେ ଲେଖା । ବହୁ ବର୍ଷ ହେଲା ଡାଏରି ଲେଖା ବନ୍ଦ ହୋଇଯାଇଥିବାର ଦେଖାଗଲା । କଲିକତାରେ ଥିବାବେଳେ ଡାଏରି ନିୟମିତ ଭାବରେ ଲେଖା ହେଉଥିଲା । ତା'ପରେ ପୁରୀ ଆସିବା ପରେ ମଧ୍ୟ ବର୍ଷେ ଦୁଇବର୍ଷ ଲେଖା ହୋଇଛି । ତା'ପରେ ବନ୍ଦ । ଡ଼ାଏରୀଟାକୁ ସମୟାନୁସାରେ ଭଲ ଭାବରେ ପଢ଼ିବେ ବୋଲି ତାକୁ ଝାଡ଼ିଝୁଡ଼ି ରଖିଦେଲେ । ନିଜେ ରୋଷାଇବାସ କରି ଚଳିବା ଅପେକ୍ଷା ସକାଳ ସଞ୍ଜ ମହାପ୍ରସାଦ କିଣି ଆଣି ଚଳିବାରେ ସୁବିଧା ଓ କମ୍ ଖର୍ଚ୍ଚ ଭାବି ଜଗଦୀଶ୍ ସେୟା କଲେ । ଘରେ ଯେଉଁ ଇଲେକ୍‌ଟ୍ରିକ୍ ସଂଯୋଗକୁ କାଟି ଦିଆ ଯାଇଥିଲା, ତାକୁ ସେ ଇତିମଧ୍ୟରେ ଇଞ୍ଜିନିୟରଙ୍କୁ କହି ପୁନର୍ଯୋଗ କରାଇଲେ । ସବୁ ହେଲା, କିନ୍ତୁ ରାତିରେ ଏକୁଟିଆ ସେ ଘରେ ରହିବା ଓ ଶୋଇବାକୁ ପ୍ରଥମ ରାତିରୁ ହିଁ ଭୟ କଲେ । ବାହାର ସମୁଦ୍ରର ନିଶିଦିନ ଗର୍ଜ୍ଜନ, ନିଶୀଥର ସର୍ବତ୍ର ନିସ୍ତବ୍‌ଧତା ଭିତରେ ଏ ଗର୍ଜ୍ଜନ ଭୟର ସଂଗ୍ରହ କରେ । ମନେହୁଏ ଯେପରି ସର୍ବଗ୍ରାସୀ କାଳ ମୁଖବ୍ୟାଦାନ କରି ମାଡ଼ି ଆସୁଛି । ଏ ଭୟ ସାଙ୍ଗକୁ ମିଶି ଯାଉଥାଏ, ଆଶ୍ରମରେ ବୃନ୍ଦାବନର ମୃତ୍ୟୁ ଓ ଆଶ୍ରମ ସ୍ୱାମୀଙ୍କର ଅସ୍ୱାଭାବିକ ଭାବେ ଦେହତ୍ୟାଗ । ମନେହୁଏ

ଯେପରି ଏ ଦୁଇଜଣଙ୍କ ସୂକ୍ଷ୍ମ ଶରୀର ଘତିବେଳେ ଘର ଭିତରେ ବିଚରଣ କରୁଛନ୍ତି । କିଛି ଟିକିଏ ଶବ୍ଦ ହେଲେ ଚଟ୍‌କରି ନିଦ ଭାଙ୍ଗିଯାଏ । ଘରିଆଡ଼କୁ ଘହିଁ ପୁଣି ମୁହଁରେ ଲୁଗା ଢାଙ୍କି ଦେଇ ଶୁଅନ୍ତି । ସମୁଦ୍ର ଗର୍ଜ୍ଜନ କିନ୍ତୁ ଏକ ଦିଗରେ ତାଙ୍କର ସହାୟକ ଥିଲା ପ୍ରକୃତି ସମ୍ପୂର୍ଣ୍ଣ ନିରବ ନିସ୍ତବ୍ଧ ନୁହେଁ । ସଦା ଜାଗରୁକ ଅବସ୍ଥାରେ ସେ ଥିବାରୁ ଅସଙ୍ଗ ନିସ୍ତବ୍ଧତାରୁ କିଛି ପରିମାଣରେ ଜଗଦୀଶ ଛାଡ଼ି ପାଉଥାନ୍ତି ।

ପରମହଂସ ଯୋଗାନନ୍ଦଙ୍କ ଜୀବନୀ ଓଲଟାଉଁ ଓଲଟାଉଁ ଯାଙ୍କ ଦୃଷ୍ଟିରେ ପଡ଼ିଲା ସେ ପୁରୀରେ ଆସି ବର୍ଷେ ଥିଲେ ଏବଂ ତାଙ୍କ ଗୁରୁ ଯୁକ୍ତେଶ୍ୱର ଗିରିଙ୍କର ସମାଧି ପୁରୀରେ ଅଛି ତାଙ୍କ ଦ୍ୱାରା ପ୍ରତିଷ୍ଠିତ "ଯୋଗଦା ଆଶ୍ରମ"ରେ । ସେଠି ତାଙ୍କର ଗୁରୁଙ୍କ ଦ୍ୱାରା ପ୍ରବର୍ତ୍ତିତ କ୍ରିୟାଯୋଗର ସାଧନା ଶିକ୍ଷା ଦିଆ ହୁଏ । ଏ ଯୋଗଦା ଆଶ୍ରମଟି ସ୍ୱର୍ଗଦ୍ୱାର ପାଖରେ । ଅଧ୍ୟାତ୍ମ ପ୍ରୟାସୀ ଜଗଦୀଶଙ୍କୁ ଏକ ବାଟ ଦେଖାଇଲା ପରି ଏ ସମ୍ବାଦ ତାଙ୍କୁ ଜଣାଗଲା । ସେ ଖୋଜିଲେ ଯୋଗଦାଶ୍ରମ । ସେହି ଶେଷାଶ୍ରୟ ନିକଟରେ ପାଇଗଲେ ସେ ସହଜରେ । ତାଙ୍କର ମନେ ହେଲା, ଶେଷାଶ୍ରୟର ସ୍ୱାମିଜୀ ବୋଧହୁଏ ଜାଣିଶୁଣି ତାଙ୍କର ଆଶ୍ରମ ସ୍ଥାପନ କରିଥିଲେ ସେହି ସ୍ଥାନରେ ଯେଉଁଠ ଯୋଗଦାଶ୍ରମ ସହିତ ଯୋଗାଯୋଗ ରହିପାରିବ । ବାସ୍ତବିକ୍ ସେ ଅନୁମାନ ସତ୍ୟ ବୋଲି ଜଣାଗଲା ଯେତେ-ବେଳେ ଜଗଦୀଶ୍ ଯୋଗଦାଶ୍ରମରେ ସେଠାରେ ଆଗ୍ନର୍ଯ୍ୟଙ୍କ ସହିତ ସାକ୍ଷାତ କଲେ । ଆଗ୍ନର୍ଯ୍ୟ ଜଣେ ସିଦ୍ଧଯୋଗୀ । ସେ ଶେଷାଶ୍ରୟ ସ୍ୱାମିଜୀଙ୍କୁ ଭଲ ଭବରେ ଜାଣିଥିଲେ । ତୁଳସୀଙ୍କୁ ମଧ୍ୟ ଭଲ ଭବରେ ଜାଣିଥିଲେ । ଜଗଦୀଶ୍ ଯୁକ୍ତେଶ୍ୱରଙ୍କ ସମାଧି ଏବଂ ତାଙ୍କର ପ୍ରତିମୂର୍ତ୍ତି ଦର୍ଶନ କଲେ । ଆଗ୍ନର୍ଯ୍ୟଙ୍କଠାରୁ ଶୁଣିଲେ କୁଆଡ଼େ ମଝିରେ ମଝିରେ ଯୁକ୍ତେଶ୍ୱରଙ୍କ ସୂକ୍ଷ୍ମ ଶରୀର ଆଶ୍ରମରେ ମଧ୍ୟରାତ୍ରୀରେ ବିଚରଣ କରେ ଏବଂ ଆଗ୍ନର୍ଯ୍ୟ ନିଜେ ତାଙ୍କୁ କେତେଥର ଦର୍ଶନ କରିଚନ୍ତି । ଏଥିରେ ଜଗଦୀଶଙ୍କ ରୋମାଞ୍ଚ ଜାତ ହେଲା । ପ୍ରଥମ ପରିଚୟରେ ସେ ଯୋଗଦାଶ୍ରମକୁ ତାଙ୍କର ସାଧନ ପୀଠ ମନେ କରି ନେଲେ । ଦୀକ୍ଷା ନେବାକୁ ବେଶି ଦିନ ଲାଗିଲା ନାହିଁ । ତାଙ୍କ ପକ୍ଷରେ ଅତି ଆଶ୍ଚର୍ଯ୍ୟର ବିଷୟ ଥିଲା ଯୋଗଦାଶ୍ରମକୁ ଯେଉଁମାନେ ସାଧନା ଶିକ୍ଷା କରିବାକୁ ଆସନ୍ତି, ସେମାନଙ୍କ ଭିତରୁ ଅଧିକାଂଶ ବିଦେଶୀ,

ଆମେରିକା, ଜାପାନ, ଜର୍ମାନୀ ପ୍ରଭୃତି ଦେଶମାନଙ୍କର ଲୋକ । ସେମାନେ ଆଶ୍ରମ ଜୀବନକୁ ପୂର୍ଣ୍ଣ ଭାବରେ ଗ୍ରହଣ କରି ଶାସ୍ତ୍ର ବର୍ଣ୍ଣିତ ବ୍ରହ୍ମଚର୍ଯ୍ୟ ଆଚରଣ ପୂର୍ଣ୍ଣ ଭାବରେ ଆନ୍ତରିକତାର ସହ ପାଳନ କରନ୍ତି । ସେମାନେ ଜାଣନ୍ତି ନାହିଁ କେଉଁ ସହର, କେଉଁ ପ୍ରଦେଶରେ ସେମାନେ ଅଛନ୍ତି । ବାହାରର କୌଣସି ଖବର ସେମାନେ ରଖନ୍ତି ନାହିଁ ବା ରଖିବା ପାଇଁ ଆଗ୍ରହ ସେମାନଙ୍କର ଆଦୌ ନାହିଁ । ବିଦେଶୀମାନଙ୍କ ଏ ପ୍ରକାର ଦୃଢ଼ ବିଶ୍ୱାସ, ଜଗଦୀଶଙ୍କ ବିଶ୍ୱାସକୁ ଦୃଢ଼ କରିବାରେ ବହୁ ପରିମାଣରେ ସାହାଯ୍ୟ କରିଥିଲା ।

ଜଗଦୀଶଙ୍କ ମନରେ ଅଛି ଜନଚୈତନ୍ୟ ଜାଗ୍ରତ କରିବା ପାଇଁ ତାଙ୍କର ଯୋଗସାଧନା । ବାରମ୍ବାର ଏ ପ୍ରଶ୍ନ ଆଚାର୍ଯ୍ୟଙ୍କୁ କରିଛନ୍ତି । ବାରମ୍ବାର ଆଚାର୍ଯ୍ୟ କହିଛନ୍ତି–"ଆଗେ ତୁମେ ତୁମ ବ୍ୟାଟେରିକୁ ଚାର୍ଜ କର । ତାପରେ ସିନା ସେ ବ୍ୟାଟେରିରୁ ଅନ୍ୟମାନେ ବିଦ୍ୟୁତ୍ ସଂଗ୍ରହ କରିବେ । ତୁମରି ବ୍ୟାଟେରି ଚାର୍ଜ କରିବାରେ ତୁମେ ତୁମର ସବୁ ମନ ଟିକକୁ ଲଗାଅ । ଅନ୍ୟମାନଙ୍କ କଥା ମନକୁ ନିଅ ନାହିଁ । ସୃଷ୍ଟିର ନିୟାମକ ତୁମେ ନୁହଁ । ଯେ ସୃଷ୍ଟିର ବିଧାନକର୍ତ୍ତା ସେ ସମସ୍ତଙ୍କ କଥା ବୁଝିବେ । ତୁମେ ନିଜଠାରେ କୌଣସି ପ୍ରକାର କର୍ତ୍ତୃତ୍ୱ ଆରୋପ କରନାହିଁ, ନିଜେ ତୃଣାଦପି ସୁନୀଚ ହୋଇ ନିଜ ସାଧନରେ ବ୍ରତୀ ହୁଅ ।" ଏ ସବୁ ଶୁଣନ୍ତି, ବିଶ୍ୱାସ ଜାତହୁଏ, ପୁଣି ଉଙ୍କିମାରେ ଜନତାର ସମସ୍ୟା । କ୍ରମେ କ୍ରମେ ସେ ନିଜ ମନକୁ କେନ୍ଦ୍ରୀଭୂତ କରିବାକୁ ଚେଷ୍ଟା କଲେ । ଗୁରୁ ପ୍ରଦତ୍ତ ମନ୍ତ୍ର ଧ୍ୟାନ କରି ଭ୍ରୂ ମଧ୍ୟସ୍ଥଳରେ ଦୃଷ୍ଟି ନିବଦ୍ଧ କରିବା ଅଭ୍ୟାସ କଲେ । ଏ ଅଭ୍ୟାସ ପାଇଁ ଆଚାର୍ଯ୍ୟଙ୍କ ପରାମର୍ଶ ଗ୍ରହଣ କରି ସେ ନିଶୀଥ ଘଡ଼ୀକୁ ପ୍ରକୃଷ୍ଟ ସମୟ ବୋଲି ସ୍ଥିର କଲେ । କିନ୍ତୁ ନିଶୀଥର ନିସ୍ତବ୍ଧତା ତ ଏକ କାରଣଶୂନ୍ୟ ଭୟ ସୃଷ୍ଟିକାରିଣୀ । ଧ୍ୟାନରେ ବସି ମନେହୁଏ ଯେପରି ତୁଳସୀ ପଛଆଡ଼ୁ ଆସିଯାଇଛି । ମନେହୁଏ ଯୋଗଦା ଆଶ୍ରମରେ ଯେପରି ଯୁକ୍ତେଶ୍ୱର ଗିରି ନିଶୀଥରେ ବିଚରଣ କରନ୍ତି ସେହିପରି ସ୍ୱାମିଜୀ ଶେଷାଶ୍ରୟ ଭିତରେ ଆସି ବିଚରଣ କରୁଛନ୍ତି । ଏ ସବୁ ଭାବନାରେ ଏପରି ଭୟ ହୁଏ ସେ ଧ୍ୟାନ ଛାଡ଼ି ମୁହଁ ଘୋଡ଼େଇ ଶୋଇ ପଡ଼ିବା ପାଇଁ ଚେଷ୍ଟା କରନ୍ତି । ଆଲୁଅ ଲିଭନ୍ତି ନାହିଁ । କାରଣ ଅନ୍ଧାର ହେଲେ ଆହୁରି ଭୟ ।

ମାତ୍ର ପ୍ରାୟ ମାସେ କାଳ କ୍ରିୟାଯୋଗର ସାଧନା ଚାଲିଛି । ସବୁ ଦିନ ପରି ସନ୍ଧ୍ୟାବେଳେ ଯୋଗଦା ଆଶ୍ରମକୁ ନ ଯାଇ ସେ ଦିନ ଅତି ପ୍ରତ୍ୟୁଷରୁ ଜଗଦୀଶ୍ ଯାଇ ଆଚାର୍ଯ୍ୟଙ୍କ ପାଖରେ ପହଞ୍ଚିଲେ, ଆଚାର୍ଯ୍ୟ ସେତେବେଳକୁ ପୂଜା ସାରି ଘଣ୍ଟାବାଦନ କରି ଉଚ୍ଚସ୍ୱରରେ ମନ୍ତ୍ରପାଠ କରୁଛନ୍ତି । କିଛି ସମୟ ଅପେକ୍ଷା କଲେ । ଘଣ୍ଟାବାଦନ ଓ ମନ୍ତ୍ରୋଚ୍ଚାରଣରେ ତାଙ୍କର ହୃଦୟରେ ମଧ୍ୟ ଏକ ଅନୁଭୂତି ଆସୁଛି ଯାହାକୁ ସେ ବୁଝିପାରୁ ନ ଥାନ୍ତି । କାର୍ଯ୍ୟକ୍ରମ ଶେଷ ହେବା ପରେ ଆଚାର୍ଯ୍ୟ ସ୍ନେହଭରେ ପଚାରିଲେ "ଜଗଦୀଶ୍, ଆଜି ଏତେ ସକାଳୁ କାହିଁକି ? କାଲି ରାତିରେ ଭଲ ନିଦ ହେଲା ନାହିଁ କି ? ଜଗଦୀଶ୍ ଅବନତ ମସ୍ତକ ହୋଇ ଧୀରେ ଧୀରେ କହିଲେ ନାଁ, କେବଳ କାଲି ରାତି ନୁହେଁ, ଗତ ଅନେକ ରାତି ହେଲା ଭଲ ନିଦ୍ରିତ ହେଉନାହିଁ, ଟିକିଏ ଆଖି ଢ଼ାଙ୍କି ହୋଇପଡ଼ିଲେ ଅତୀତର ସ୍ମୃତିଯାକ ଆସି ଜମା ହୋଇଯାଉଛନ୍ତି, ଏପରିକି ଦିନରେ ମଧ୍ୟ କିଛି ସମୟ ନିରବ ହୋଇ ବସିରହିଲେ ସେହି ସ୍ମୃତିମାନଙ୍କ ଧାଡ଼ି, ଗୋଟାକ ପରେ ଗୋଟେ ଚଢ଼ିଯାଉଛନ୍ତି । ବାଲ୍ୟ ଜୀବନ, ଛାତ୍ର ଜୀବନ, ରାଜନୈତିକ ଜୀବନର ସ୍ମୃତି ସବୁ କେଉଁଠି ଯେ ଜମା ହୋଇଥିଲା ସବୁ ତ ଉପରକୁ ଉଠିଆସୁଛନ୍ତି । ମନ ଅସ୍ଥିର ହେଉଛି, କିଛି କାମରେ ନ ଲାଗିଲେ ଖାଲି ବସି ବସି ଧ୍ୟାନ କଲେ ଅତୀତର ସ୍ମୃତିକୁ ମୁଁ ସମ୍ଭାଳି ପାରିବି ନାହିଁ ।" ଆଚାର୍ଯ୍ୟ ସବୁ ଶୁଣିଲେ, ହସିଲେ, କହିଲେ, "ତୁମେ କେବେ ପୋଖରୀରେ ସ୍ନାନ କରିଥିବ, ଘାଟ ପାଖରେ ବାଲି ସର ପଡ଼ିଯାଇଥାଏ । ବାଲିଚର ପାର ହୋଇ ଆହୁରି ଭିତରକୁ ଗଲେ ତଳୁ ପଙ୍କଯାକ ଉପରକୁ ଉଠେ । ଯେତେ ଭିତରକୁ ଯିବ ସେତେ ବେଶି ପଙ୍କ ଉଠିବ । ତେଣୁ ପଙ୍କ ଭୟରେ ଲୋକେ ଘାଟ ପାଖ ବାଲିଚରରେ ଆଣ୍ଠୁ ପର୍ଯ୍ୟନ୍ତ ପାଣି ଥାଉ ପଛକେ, ସେଥିରେ ଯଥା ତଥା ସ୍ନାନ କରି ଚାଲି ଆସନ୍ତି । ପୋଖରୀରୁ ପଙ୍କ ଉଦ୍ଧାର କରିବା ଚିନ୍ତା କରନ୍ତି ନାହିଁ । ସବୁ ପଙ୍କକୁ ବାହାର କରିଦେଇ ସ୍ୱଚ୍ଛ ନିର୍ମଳ ପୁଷ୍କରିଣୀଟିରେ ସ୍ନାନ କରିବାର ସ୍ପୃହା ଜାଗ୍ରତ ହୁଏ ନାହିଁ । ତୁମେ ସ୍ୱଚ୍ଛ ନିର୍ମଳ ଜଳର ଅଭିଳାଷ କରି ବାହାରିଛ । ତୁମର ଅବଚେତନ ଗହ୍ୱରରେ ଯେତେ ପଙ୍କ ଜମା ହୋଇଛି ସବୁ ଉପରକୁ ଉଠିବ । ସେ ସବୁକୁ ପରିଷ୍କାର କରିଦେବାକୁ ହେବ । ମନର ଚାରି ଭାଗରୁ ତିନି ଭାଗ ବା ତା'ଠୁ ଉର୍ଦ୍ଧ୍ୱ ହେଉଛି

ଅବଚେତନ, ଅବଶିଷ୍ଟ ଅଳ୍ପାଂଶ ଚେତନ, ଚେତନା ଅବଚେତନ ସ୍ତରକୁ ଯିବାରୁ ପୂର୍ବ ସ୍ମୃତି ସବୁ ଜାଗିଉଠୁଛି । ବ୍ୟସ୍ତ ହୁଅନାହିଁ । ଚଳାଅ ତୁମର ସାଧନା ବୀର ଯେପରି ଶତ୍ରୁ ସେନା ଭିତରକୁ ସାହସରେ ପ୍ରବେଶ କରିଥାଏ, ସେହିପରି ଉତ୍ସାହରେ ତୁମେ ମାଡ଼ିଯାଅ । ବୁଝିଲ ।" ଜଗଦୀଶ୍ଙ୍କ ମନ ମାନୁନାହିଁ । ସେ କହିଲେ ତାଙ୍କର ପୂର୍ବ ରାତ୍ରୀର ସ୍ୱପ୍ନ କଥା । "ତୁଳସୀ ଆସି ଆଗରେ ଠିଆ ହୋଇଛି–ଅର୍ଦ୍ଧ ନିଦ୍ରିତାବସ୍ଥାରେ ସେ ତାକୁ ସ୍ପଷ୍ଟ ଦେଖିପାରୁଛନ୍ତି–ସେ ପରିହାସ କରି କହୁଛି "କି ଜଗଦୀଶ୍ ବାବୁ ଶେଷରେ ମୋରି ଶେଷାଶ୍ରୟରେ ଆସି ପହଞ୍ଚିଲ । ଏ ଯେ ଶେଷାଶ୍ରୟ ଅର୍ଥାତ୍ ମୃତ୍ୟୁର ଅବ୍ୟବହିତ ପୂର୍ବାଶ୍ରମ । ତୁମେ ପରା ଜନଚୈତନ୍ୟ ଜାଗରଣ କରିବା ପାଇଁ ବାହାରିଥିଲ । ଏଠି ବସିଲେ ତା' କିପରି ହେବ ? ଜନତା ଭିତରେ ତାଙ୍କର ସୁଖ ଦୁଃଖରେ ଭାଗୀ ନ ହେଲେ ସେମାନଙ୍କ ଚେତନା ଜଗାଇବ କିପରି ?" ଏହିପରି କହି ସେ ଅନ୍ତର୍ହିତ ହୋଇଗଲା– ମୁଁ ଭୟଭୀତ ହୋଇ ଉଠି ପଡ଼ିଲି । ଆଲୁଅ ଲଗାଇ ଦେଲି । ଜଣେ ଦୀର୍ଘ ଶୁଶ୍ରୁବିଶିଷ୍ଟ ଅତି ବୃଦ୍ଧଙ୍କ ଛାୟା ମଧ୍ୟ ଆଲୋକରେ ଅପସରି ଗଲା ବୋଲି ବୋଧ ହେଲା । ଭାବିଲି, ସେ ବୋଧହୁଏ ଶେଷାଶ୍ରୟର ସ୍ୱାମୀ । ସେ ଘର ପ୍ରେତଙ୍କର ବାସସ୍ଥାନ ବୋଲି ସେଠିକି କେହି ଯାଉ ନ ଥିବେ ବୋଲି ମୁଁ ଶୁଣିଥିଲି । ସାହସ କରି ମୁଁ ସେଠାରେ ରହିଲି । ଏ ସ୍ୱପ୍ନରେ ତ ମୋର ଭୟ ହୋଇଯାଇଛି । ସେ ଭୟ ଧ୍ୟାନର ପରିଣାମ କି ଆଶ୍ରମ ବାସର ପରିଣାମ ମୁଁ ଜାଣିପାରୁ ନାହିଁ ।" ସ୍ୱାମିଜୀ ବୁଝାଇଲେ, ସେ ଆଶ୍ରମରେ ସତ୍ତ୍ୱଗୁଣ–ପ୍ରଧାନ ଦୁଇଜଣ ବ୍ୟକ୍ତି ଥିଲେ, ସ୍ୱାମିଜୀ ଥିଲେ ଜଣେ ସିଦ୍ଧସାଧକ ତୁଳସୀ ମଧ୍ୟ ସିଦ୍ଧି ପଥରେ ଅଗ୍ରସର ହେଉଥିଲେ । କିନ୍ତୁ ମଝିରେ ସେ ମାର୍ଗରୁ ଟିକିଏ ଅପସରି ଯିବାରୁ ତାଙ୍କ ପକ୍ଷରେ ଜୀବନ ଦୁର୍ବିସହ ହେଲା..." ଏତିକି ଶୁଣିବା ପରେ ଜଗଦୀଶ୍ କୁତୂହଳୀ ହୋଇ ତୁଳସୀଙ୍କ ବୃତ୍ତାନ୍ତ ଶୁଣିବାକୁ ମନ କଲେ । ଆଗ୍ରହୀ କହିଲେ–ସେ ଜୀବନରେ ଶରୀର ଧର୍ମ ପଡ଼ି ନାନା କାରଣରୁ ବୀତସ୍ପୃହ ହୋଇ ସ୍ୱାମିଜୀଙ୍କ ଆଶ୍ରୟ ନେଇ ଆଧ୍ୟାତ୍ମ ସାଧନ ପଥ ଧରିଥିଲେ । ସ୍ୱାମିଜୀ ତାଙ୍କୁ ପରୀକ୍ଷା କରିବା ପାଇଁ ଥରେ ତାଙ୍କୁ ତାଙ୍କର ପୂର୍ବ ବନ୍ଧୁମାନଙ୍କ ପାଖକୁ ଯାଇ ଆଶ୍ରମ ପାଇଁ ସାହାଯ୍ୟ ସଂଗ୍ରହ କରିବାକୁ କହିଲେ । ଅତି ଉତ୍ସାହରେ ସେ ତାଙ୍କର ଜଣେ ପୂର୍ବବନ୍ଧୁ

ଯେ ମନ୍ତ୍ରୀ ଥିଲେ ତାଙ୍କ ପାଖକୁ ଗଲେ । ସେଠି ନିରାଶ ହେବାରେ ତାଂ
ମନରେ ଏପରି ଧକ୍କା ଲାଗିଲା ସେ ତାକୁ ସମ୍ଭାଳି ପାରିଲେ ନାହିଁ ।
ଆଧ୍ୟାତ୍ମ ମାର୍ଗକୁ ଆସିଲେ ନୂତନ ଜୀବନର ଆରମ୍ଭ । ପୂର୍ବ ସ୍ମୃତି ସହିତ
ଜଡ଼ିତ ହେଲେ ପ୍ରବଳ ଆଘାତ ଲାଗେ ନୂତନ ସାଧକମାନଙ୍କୁ । ଏଣୁ ପୂର୍ବ
ସ୍ମୃତି ଜାଗିଉଠିବା ମାତ୍ରେ ତାକୁ ଗୋଟି ଗୋଟି କରି ବିସ୍ମୃତି ଗର୍ଭକୁ
ଫୋପାଡ଼ି ଦେବାକୁ ହେବ ।" ସବୁ ଶୁଣିଲେ, ମନ ନ ମାନିଲା ପରି ହୋଇ
ଆଚାର୍ଯ୍ୟଙ୍କଠାରୁ ଯେତିକି ଶୁଣିଲେ ସେଥିରୁ ସେ ଜାଣିପାରିଲେ ହରିଚରଣଙ୍କ
ବ୍ୟବହାରରେ ତାଙ୍କର ଗଭୀର ଦୁଃଖ ପାଇଥିଲେ । ସାହାଯ୍ୟ ପାଇଁ ସ୍ଥାଙ୍କ
ନିରାଶ ହୋଇଥିଲେ । ମନ ତାଙ୍କର ଘାଣ୍ଟି ଚକଟି ହେଲା । କିନ୍ତୁ ଆଚାର୍ଯ୍ୟଙ୍କୁ
ବିଶ୍ୱାସ କରି ସେ ପଡ଼ିରହିଲେ ଶେଷାଶ୍ରମରେ ଓ ଗୁରୁଙ୍କ ଆଦେଶମତେ
ଧ୍ୟାନ ଧାରଣା ଇତ୍ୟାଦି ଅଭ୍ୟାସ କଲେ ।

— ୮ —

ନାନା ଯୁକ୍ତିତର୍କ ଚାଲିଲା ପରେ ଜଗଦୀଶଙ୍କୁ ତାଙ୍କ ଆଧ୍ୟାତ୍ମ ସାଧନା
ମାର୍ଗରେ ଛାଡ଼ିଦେଇ ଶରତ ଓ ବାଳକୃଷ୍ଣ ପୁରୀ ଛାଡ଼ି ଚାଲିଗଲେ କଲିକତାକୁ ।
କଲିକତା ଯିବାର ସିଦ୍ଧାନ୍ତ କଲେ ନାନା ଦିଗ ଭାବିଚିନ୍ତି । "ପୁରୀଟାକୁ
ପ୍ରାଚୀନତା ଏପରି ମାଡ଼ି ବସିଛି ତା'କୁ ଠେଲି ଦେଇ ଉଠିବା ଅତି କଠିନ ।
ପୁରୀରେ ରହିଲେ ହିଁ ମୁହଁ ଆଗକୁ ନ ହୋଇ ପଛକୁ ହୋଇଯାଏ ।
ଅଗ୍ରଗତି ପକ୍ଷେ ଜଗନ୍ନାଥ ମନ୍ଦିର ଏପରି କି କର୍ମଠ ବନ୍ଦର ବିହୀନ ସୌଖିନ
ସମୁଦ୍ର ମଧ୍ୟ ଏକ ପ୍ରବଳ ବାଧକ । ପୁରୀର ଶ୍ମଶାନ ଯେ ସ୍ୱର୍ଗଦ୍ୱାର ଆଖ୍ୟା
ଦିଆଯାଇଛି ତାହା ଯଥାର୍ଥ କାରଣ ଶ୍ମଶାନ ଅଭିମୁଖୀ ନ ହେଲେ ପୁରୀକୁ
ଆସିବାକୁ ମନ ବଳିବ ନାହିଁ । ଯାତ୍ରୀ ଆସନ୍ତି, ପ୍ରାର୍ଥନା କରି ପୁରୀରେ
ଦେହତ୍ୟାଗ କରିବା ଲାଗି—ଶ୍ରାନ୍ତକ୍ଳାନ୍ତ ଜୀବନ ପାଇଁ ପୁରୀ ଏକ ଉତ୍କୃଷ୍ଟ
ସ୍ଥାନ ସିନା—କର୍ମପ୍ରବଣ ଜୀବନ ପକ୍ଷରେ ଏହା ଏକ ପ୍ରବଳ ପ୍ରତିରୋଧକ ।
ଯେପରି ଅଗ୍ନି ପକ୍ଷରେ ଶୀତଳ ଜଳ । ଅନ୍ୟ ପକ୍ଷରେ କଲିକତା ଏକ
କର୍ମଜୀବନର କେନ୍ଦ୍ର । ଶୁଣାଯାଏ ଆମେରିକାର ନିଉୟର୍କ, ଜାପାନର
ଟୋକିଓ, ରୁଷିଆର ମସ୍କୋ ପ୍ରଭୃତି ସ୍ଥାନ କର୍ମ ଉଦ୍ଦୀପନାରେ ଅଗ୍ନିତ

ଭାବରେ ଉଦ୍ଦୀପ୍ତ । ମାତ୍ର ସେ ସବୁ ସ୍ଥାନକୁ ଯାଇ ରହିବାକୁ ସମ୍ବଳ ନାହିଁ । ଭାରତରେ କଲିକତା ହିଁ ସବୁଠାରୁ ବେଶି କର୍ମାତ୍ମକ । କର୍ମପନ୍ଥା ନିର୍ଣ୍ଣୟ ପାଇଁ କଲିକତାର ପରିବେଶ ହିଁ ସହାୟକ । ଆମେ ରହସ୍ୟାବୃତ ଆଧ୍ୟାତ୍ମିକ ଜୀବନ ପ୍ରତି ଆଗ୍ରହୀ ନୋହୁଁ । କର୍ମାତ୍ମକ ଜୀବନ ହିଁ ଆମର ଧ୍ୟେୟ—" ଏହିପରି କେତେ ବିଚାର ଆଲୋଚନା ନିଜ ଭିତରେ କଲେ । ବାଳକୃଷ୍ଣ ଶରତଙ୍କୁ ମନେ ପକାଇ ଦେଲେ ଫରାସୀ ଉପନ୍ୟାସ "ଥ୍ରୀ ମସ୍କେଟିୟର" —ତ୍ରୀ ଡୁମାରେ ଲିଖିତ ଟ୍ୱେଣ୍ଟି ଇୟର୍ସ ଆପ୍‌ଟର—କିପରି ତିନିଜଣ ଦୃଢ଼ପ୍ରତିଜ୍ଞ ଯୁବକଶକ୍ତି କୋଡ଼ିଏ ବର୍ଷ ପରେ ମଧ୍ୟ ପରିଶ୍ରାନ୍ତ ମନେ ନ କରି ପୁଣି ବାହାରିଲେ ଲକ୍ଷ୍ୟ ସାଧନାରେ । ରବୀନ୍ଦ୍ରନାଥଙ୍କ କବିତାମାନଙ୍କୁ ମଧ୍ୟ ସେ କାମରେ ଲଗାଇଲେ ।"

ଜୀବନେ ଯତପୂଜାକାଲ ନାଁ ସାର
ଜାନିତ ଜାନି ନା ହଏନି ଘାର......

ବାଳକୃଷ୍ଣଙ୍କ ପ୍ରବଳ ପ୍ରବର୍ତ୍ତନାରେ ଶରତଙ୍କ ଦାର୍ଶନିକ ମନୋବୃତ୍ତି କୁଆଡ଼େ ଉଡ଼ିଗଲା । ଯେପରି ଦକ୍ଷିଣା ପବନରେ ଜମାଟ ବାନ୍ଧିଥିବା ମେଘମାଳାର ଅବସ୍ଥା ହୋଇଥାଏ ।

ଶରତ ଓ ବାଳକୃଷ୍ଣ ପକ୍ଷରେ କଲିକତା ଏକ ଅପରିଚିତ ସ୍ଥାନ ନୁହେଁ । ବହୁବାର ସେମାନେ କଲିକତା ଆସିଛନ୍ତି । ଓଡ଼ିଶା ଯେତେବେଳେ ସ୍ୱତନ୍ତ୍ର ପ୍ରଦେଶ ହୋଇ ନ ଥିଲା, ସେତେବେଳେ ବିହାର ଓଡ଼ିଶା ପ୍ରଦେଶର ହେଡ୍‌କ୍ୱାର୍ଟର ପାଟଣା ବହୁ ଦୂରରେ ଥିବାରୁ ଏବଂ ଅପେକ୍ଷାକୃତ ଛୋଟ ସହର ଥିବାରୁ ଓଡ଼ିଶାର ଶିକ୍ଷିତ ଲୋକେ ବିଶେଷତଃ କଟକ, ପୁରୀ, ବାଲେଶ୍ୱର ଲୋକେ କଲିକତା ସହିତ ଘନିଷ୍ଠ ସମ୍ପର୍କ ରଖୁଥିଲେ । ତା'ଛଡ଼ା ୧୯୧୯ରେ ଓଡ଼ିଶା ପାଟଣା ୟୁନିଭର୍‌ସିଟି ଅଧୀନକୁ ଆସିବା ପୂର୍ବରୁ, ଓଡ଼ିଶା କଲିକତା ୟୁନିଭରସିଟି ଅଧୀନରେ ଥିଲା । ଶରତ ଓ ବାଳକୃଷ୍ଣ ମେଟ୍ରିକୁଲେସନ୍ ପାସ୍ କରିଥିଲେ କଲିକତା ଇଉନିଭର୍‌ସିଟି ଅଧୀନରେ । ସେତେବେଳେ କଟକରେ ଆଇନ୍ କଲେଜ ନ ଥିବାରୁ କଲିକତାରେ ଓକିଲାତି ପଢିବାକୁ ମଧ୍ୟ ଓଡ଼ିଶାରୁ ବି. ଏ. ପାସ୍ କରି ଛାତ୍ରମାନେ ଆସୁଥିଲେ । ଓଡ଼ିଶାର ବିଶେଷତଃ ଉପକୂଳବର୍ତ୍ତୀ ଜିଲ୍ଲା ତିନୋଟିର

ବ୍ୟବସାୟଗତ କାରବାର ସବୁ କଲିକତା ସହିତ । ଲକ୍ଷ ଲକ୍ଷ ଶ୍ରମଜୀବୀ ଏହି ଜିଲ୍ଲାମାନଙ୍କରୁ ଆସି କଲିକତାରେ କାମ କରନ୍ତି । ଅନେକ ଘରବାଡ଼ି କରି କଲିକତାରେ ସ୍ଥାୟୀ ଅଧିବାସୀ ହୋଇଗଲେଣି । ସେ ଦିଗରୁ ବିଚାର କରି ଇତିହାସ ଖୋଳିଲେ ଜଣାଯିବ—କଲିକତା ସହର ଗଢ଼ିଉଠିଥିଲା ଏହି ଜିଲ୍ଲାମାନଙ୍କର ଶ୍ରମ ସାହାଯ୍ୟରେ । ଶହ ଶହ ବର୍ଷ ହେଲା ଅନେକ ଓଡ଼ିଶାବାସୀ କଲିକତାର ସ୍ଥାୟୀ ବାସିନ୍ଦା ହୋଇଯାଇଛନ୍ତି । ସେମାନଙ୍କ ମାତୃଭାଷା ବଙ୍ଗଳା ହୋଇଯାଇଥିଲେ ମଧ୍ୟ ଜାତି ଭିତରେ ବିବାହ ଯାହା ପୁଣି କୁଳ ପୁରୋହିତଙ୍କ ଦ୍ୱାରା ଅନୁଷ୍ଠିତ ହେବା ଆବଶ୍ୟକ । ଏହି ପରମ୍ପରାଗତ ସାମାଜିକ ନିୟମ ହେତୁ କଲିକତାବାସୀ ଓଡ଼ିଆଙ୍କର, ଓଡ଼ିଶା ସହିତ ଘନିଷ୍ଠ ସମ୍ପର୍କ ନିରବଚ୍ଛିନ୍ନ ଭାବରେ ରହିଆସିଛି । ଶରତଙ୍କ ଘର ଯାଜପୁର । ଜାତିରେ କରଣ—ତାଙ୍କର ବାପା କଲିକତାବାସୀ କରଣ ଝିଅ ସହିତ ବାହା ହୋଇଥିଲେ । ମା'ର ବଙ୍ଗଳା ଭାଷାରେ ଦଖଲ ଥିବାରୁ ଶରତ ମଧ୍ୟ ବଙ୍ଗ ଭାଷା ଭଲ ଜାଣିଥିଲେ । ବାଳକୃଷ୍ଣଙ୍କ ଘର ପୁରୀରେ, ଜାତିରେ ବ୍ରାହ୍ମଣ । ଜାତି ନିୟମ ମାନିବା ଦୃଷ୍ଟିରୁ ତାଙ୍କ ପରିବାର ଥିଲେ 'ନିଷ୍ଠାପର' କିନ୍ତୁ ଆଧୁନିକ ଶିକ୍ଷା ଓ ସଭ୍ୟତା ପ୍ରଭାବରେ ବାଳକୃଷ୍ଣଙ୍କ ପାଖରେ ସେ 'ନିଷ୍ଠାପରତା'ର ଲେଶ ସୁଦ୍ଧା ନାହିଁ । ଜଗଦୀଶ୍, ଶରତ, ବାଳକୃଷ୍ଣ ଏକ ସଙ୍ଗରେ କଟକ କଲେଜରୁ ଏମ୍. ଏ. ପାସ୍ କରିଥିଲେ । ଏକା ବର୍ଷ, ସ୍ୱାଧୀନତା ଆନ୍ଦୋଳନର ପ୍ରଥମ ବର୍ଷରେ ଖ୍ରୀ ୧୯୨୧ରେ, ପାସ୍ କରିସାରି ଡ଼େଇଁ ପଡ଼ିଲେ ଆନ୍ଦୋଳନ ଭିତରକୁ । ଆନ୍ଦୋଳନ ଭିତରେ ମଧ୍ୟ ଏମାନେ କଲିକତା ବାରମ୍ବାର ଯାଆସ କରୁଥାନ୍ତି । ବଙ୍ଗଦେଶର ରାଜନୈତିକ ନେତା ବିଶେଷତଃ ବିପ୍ଳବୀ ଦଳର ନେତାମାନଙ୍କ ସହିତ ଏମାନଙ୍କ ପରିଚୟ ସେହି ଦିନଠୁ । ଆନ୍ଦୋଳନ ଭିତରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଗଲା । ପୁଣି ଅଳ୍ପ କେତେବର୍ଷ ପରେ ଦେଶ ସ୍ୱାଧୀନ ହୋଇଗଲା । କଲିକତା ସହିତ ଆଉ ପୂର୍ବ ପରି ଘନିଷ୍ଠ ସମ୍ପର୍କ ରହିଲା ନାହିଁ। ହିସାବ କଲାବେଳକୁ ମାତ୍ର କେଇଟା ବର୍ଷ ହେଲେ ସୁଦ୍ଧା ଏହି କେତେଟା ବର୍ଷରେ ପୂର୍ବାବସ୍ଥା ସମ୍ପୂର୍ଣ୍ଣ ଓଲଟା ହୋଇଯାଇଛି । ଯେ ଥିଲେ ପୂର୍ବେ ବିପ୍ଳବୀ ସେମାନଙ୍କ ଭିତରୁ କେତେକ ରାଜନୀତି ଛାଡ଼ି ବ୍ୟବସାୟ ବାଣିଜ୍ୟରେ ରହିଗଲେଣି । କେତେକ ଡକାୟତିକୁ ମଧ୍ୟ ଏକ ବ୍ୟବସାୟ

ହିସାବରେ ଧରିସାରିଲେଣି । କେତେକ ପାର୍ଲାମେଣ୍ଟାରୀ ପଲିଟିକ୍‌ସରେ ଯୋଗଦେଇ ବ୍ୟବସ୍ଥାସଭାର ସଭ୍ୟ ଓ ମନ୍ତ୍ରୀ ହୋଇଗଲେଣି । କେତେକ ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଗଠନମୂଳକ କାର୍ଯ୍ୟ ଯଥା :—ଅରଟ ପ୍ରଚାର, ଅସ୍ପୃଶ୍ୟତା ନିବାରଣ ଇତ୍ୟାଦି କାର୍ଯ୍ୟରେ ବିଭିନ୍ନ ସ୍ଥାନରେ ଆଶ୍ରମମାନ ସ୍ଥାପନ କରି ବସିଲେଣି । କଲିକତାରେ କେଉଁ ଶ୍ରେଣୀଠାରୁ ନିଜର ମନ ଅନୁସାରେ ପ୍ରେରଣା ପାଇବେ ଏହା ହିଁ ହେଲା କଲିକତାରେ ପହଞ୍ଚିବା ପରେ ଶରତ ଓ ବାଳକୃଷ୍ଣଙ୍କ ସମସ୍ୟା । ସେମାନେ ଯାଇ ରହିଲେ ଏକ ମଧ୍ୟମ ଶ୍ରେଣୀ ହୋଟେଲରେ, ନାମ "ଧୈର୍ଯ୍ୟ ହୋଟେଲ ।" ଓଡ଼ିଶାରୁ ଅନେକ ଯାଇ ସେଠି ରହନ୍ତି କାରଣ ସେଠି ରହିବା ଖାଇବା ଖର୍ଚ୍ଚ ଅପେକ୍ଷାକୃତ କମ୍ ।

ଶରତ ଓ ବାଳକୃଷ୍ଣଙ୍କର ଘରର ଚିନ୍ତା କିଛି ନାହିଁ । ମଧ୍ୟବିତ୍ତ ଶ୍ରେଣୀର ପରିବାର । ଶରତଙ୍କ ବାପା ଡେପୁଟି ମାଜିଷ୍ଟ୍ରେଟ୍ କାମରୁ ଅବସର ନେଇ ପେନ୍‌ସନ୍ ପାଉଛନ୍ତି । ଘରେ ବିଷୟବାଡ଼ି ଅଛି । ଏକମାତ୍ର ପୁଅର ଶିକ୍ଷା ଓ ଭରଣ ପୋଷଣର ଭାର ପିତାମହଙ୍କ ଉପରେ । ସ୍ତ୍ରୀଙ୍କର କାଳ ହୋଇଯାଇଛି । ବାଳକୃଷ୍ଣଙ୍କ ବାପା ଓକିଲାତି କରନ୍ତି । ଅତି ବୃଦ୍ଧ ବୟସରେ ମଧ୍ୟ ସେ କଚେରୀକୁ ଯିବା ବନ୍ଦ କରିନାହାନ୍ତି । ତାଙ୍କର ଓକିଲାତିରୁ ବେଶ୍ ଆୟ ହେଉଥିଲା । ବିଷୟ ଆଶ୍ରୟ ଜମିବାଡ଼ି କିଛି କରିଯାଇଛନ୍ତି । ସ୍ତ୍ରୀଙ୍କ ମୃତ୍ୟୁ ପରେ ବାଳକୃଷ୍ଣ ଆଉ ବିବାହ କଲେ ନାହିଁ କି ଘର କଥା କିଛି ବୁଝିଲେ ନାହିଁ । ତାଙ୍କ ଦଳ ଦୁଇଭାଇ, ଜଣେ ବ୍ୟବସାୟ ଓ ଆଉଜଣେ ଓକିଲାତି କରି ଘର ସମ୍ଭାଳିଛନ୍ତି । ଘର ଚଳାଇବାର ଦାୟିତ୍ୱ ନ ଥିଲେ ମଧ୍ୟ ନିଜେ ଚଳିବା ପାଇଁ ଯାହା ଯେତେବେଳେ ଦରକାର ହୁଏ, ବାଳକୃଷ୍ଣ ଓ ଶରତ ତାଙ୍କ ଘରୁ ପାଇଯାଇଥାନ୍ତି । ଘରେ ମଧ୍ୟ ଅଲକ୍ଷିତ ଭାବରେ ଏକ ଆଶା କାମ କରୁଛି ଲୁଚି ଲୁଚି । ଦିନେ ହୁଏତ ଏମାନେ ମନ୍ତ୍ରୀ ହୋଇଯାଇପାରନ୍ତି, ସେଥିପାଇଁ ଏମାନଙ୍କ ଜାତକ ପରୀକ୍ଷା କରଯାଇଥାଏ ଜ୍ୟୋତିଷମାନଙ୍କ ଦ୍ୱାରା । ଜାତକରେ ଅଛି ଭ୍ରମଣ ଯୋଗ ତା'ପରେ ଧନ ସମ୍ମାନର ଯୋଗ ଅଛି ବୋଲି ଜ୍ୟୋତିଷମାନେ କହନ୍ତି ।

ତେଣୁ ଘରର ଲୋକେ ଆଶାବାଦୀ ରହିଛନ୍ତି, ପୁଅମାନଙ୍କୁ ଆର୍ଥିକ ସାହାଯ୍ୟ କରୁଛନ୍ତି । ଜ୍ୟୋତିଷମାନେ ପରୋକ୍ଷ ଭାବେ ଅନେକଙ୍କୁ ସାହାଯ୍ୟ କରିଥାନ୍ତି, ଏ କଥା ଜ୍ୟୋତିଷ ଶାସ୍ତ୍ରର ସମାଲୋଚକମାନେ ଭୁଲିଯାଆନ୍ତି ସିନା—କିନ୍ତୁ କିନ୍ତୁ ପରମ୍ପରାଗତ ବିଶ୍ୱାସ, ଅନ୍ଧ ହେଉ ବା ଚକ୍ଷୁଷ୍ମାନ ହେଉ ତା'ର ମଧ୍ୟ କିଛିହେଲେ ବ୍ୟବହାରିକ ଉପଯୋଗିତା ଅଛି ।

୮

ଯା' ହେଉ "ସେଭୟ ହୋଟେଲ"ରେ ବସି ସ୍ଥିର କଲେ ଦୁଇବନ୍ଧୁ କାହାକୁ କାହାକୁ ଦେଖା କରିବେ ଓ କେଉଁଠିକି କେଉଁଠିକି ଯିବେ । ପୁରୁଣା ଗାନ୍ଧିବାଦୀ ବିଶିଷ୍ଟ ନେତାମାନେ, ପୂର୍ବକାଳର ପୁରୁଣା ବିପ୍ଳବୀ, ପୁଣି ନୂତନ ଯୁଗରେ ନୂତନ ଧରଣର ଯେଉଁ ବିପ୍ଳବର ସୂତ୍ରପାତ ହୋଇଛି ସେମାନଙ୍କୁ, ନେତାମାନଙ୍କ ଗୁପ୍ତ ସ୍ଥାନରେ, ପୁଣି ସମ୍ବାଦପତ୍ରରେ ବହୁଳ ପ୍ରଚାରିତ ବୟସ୍କ ଓ ତରୁଣ ନେତାମାନଙ୍କୁ ଦେଖା ସାକ୍ଷାତ କରିବେ ବୋଲି ଭାବିଲେ । ତତ୍ ସଙ୍ଗେ ସଙ୍ଗେ କଲିକତାର ସାଧାରଣ ଜୀବନ, ଛାତ୍ର, ଶ୍ରମଜୀବୀ ଓ ଅନ୍ୟମାନଙ୍କ ସଂସ୍ପର୍ଶରେ ଆସିବା ଆବଶ୍ୟକ ବୋଲି ମନେ କଲେ ।

ସକାଳେ ହୋଟେଲର ଖାଇବାଘରେ ଏକ କୋଣରେ ସକାଳ ଜଳଖିଆ ଖାଇବା ପାଇଁ ବସିଛନ୍ତି—ଖାଉଥାନ୍ତି, ନିଜ ଭିତରେ କଥାବାର୍ତ୍ତା ମଧ୍ୟ ହେଉଥାନ୍ତି । ଏହି ସମୟରେ ଜଣେ ଭଦ୍ରଲୋକ ସଂପୂର୍ଣ୍ଣ ଅପରିଚିତ ଆସି କୁତୂହଳୀ ହେଲା ପରି ହୋଇ ଶୁଦ୍ଧ ଓଡ଼ିଆରେ ପଚାରିଲେ— "ଆପଣମାନେ କ'ଣ ଓଡ଼ିଶାରୁ ଆସିଛନ୍ତି ?" "ଆଜ୍ଞା, ହଁ" କହି ପଚାରିଲେ ଭଦ୍ରଲୋକଙ୍କ ପରିଚୟ । ସେ କହିଲେ ମୋର ନାମ ଶଶୀକାନ୍ତ ଘୋଷ । ଓଡ଼ିଆରେ କଥାବାର୍ତ୍ତା ଶୁଣି ମୁଁ ଧାଇଁ ଆସିଛି । ମୁଁ ଓଡ଼ିଶାରେ ବହୁବର୍ଷ ଥିଲି । ମୋର ବାପା ମଧ୍ୟ ସେଠି ଚାକିରି କରିଥିଲେ । ଓଡ଼ିଶାବାସୀଙ୍କୁ ଦେଖିଲେ ମୋର ସେହି ଓଡ଼ିଶା ଜୀବନ କଥା ମନେ ପଡ଼େ ।" ଦୀର୍ଘ ସମୟ ଧରି ଏହି ଭଦ୍ରବ୍ୟକ୍ତିଙ୍କ ସାଙ୍ଗରେ ନାନା ବିଷୟରେ କଥାବାର୍ତ୍ତା ହେଲା । କଟକ କଲେଜରେ ସେ ପଢୁଥିଲେ । ଶରତ ଓ ବାଳକୃଷ୍ଣଙ୍କର ପ୍ରାୟ ୭ ବର୍ଷର ଜୁନିଅର । ସେ କଲେଜିଏଟ୍ ସ୍କୁଲରେ ପଢୁଥିଲେ । ତାଙ୍କ ସାଙ୍ଗ ପିଲାମାନଙ୍କ ନାମ କହିଲେ । ସେମାନଙ୍କ ଭିତରୁ କେତେକ

ଯେତେବେଳେ କଲିକତା ଆସନ୍ତି, ସେମାନେ ତାଙ୍କୁ ଦେଖା କରନ୍ତି । ସେ ବର୍ତ୍ତମାନ ଏକ ବ୍ୟବସାୟ ପ୍ରତିଷ୍ଠାନର ଏସିଷ୍ଟାଣ୍ଟ ଜେନେରାଲ ମ୍ୟାନେଜର ବୋଲି କହିଲେ । ବ୍ରେକ୍‌ଫାଷ୍ଟ ଟେବୁଲ ଉପରେ କିଛି ସମୟ କଥାବାର୍ତ୍ତା ହେବା ପରେ ସମସ୍ତେ ଆସିଲେ ରୁମ୍ ଭିତରକୁ । ସେତେବେଳକୁ ଶରତ ଓ ବାଳକୃଷ୍ଣ ଶଶୀକାନ୍ତଙ୍କ ସହିତ ଅତି ପରିଚିତ ହୋଇସାରିଥିଲେ । ଅତି ଜଣାଶୁଣା ଲୋକ ହିସାବରେ ସେ କଥାବାର୍ତ୍ତା କରୁଛନ୍ତି । ବ୍ୟବହାରରେ ମଧ୍ୟ ଅତି ପ୍ରଶ୍ରିତ । କଲିକତାରେ ଜଣେ ବନ୍ଧୁ ମିଳିଲେ ଯାହାଙ୍କ ସାହାଯ୍ୟରେ ସେମାନେ ବିଭିନ୍ନ ସ୍ଥାନକୁ ଯାଇ ବିଭିନ୍ନ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କ ସହିତ ସମ୍ପର୍କରେ ଆସିପାରିବେ । ରୁମ୍ ଭିତରକୁ ଓଡ଼ିଶା, କଟକ ଇତ୍ୟାଦି ବିଷୟରେ ଅଳ୍ପ ସମୟ କଥାବାର୍ତ୍ତା ହେବା ପରେ ଶଶୀକାନ୍ତ ପଚାରିଲେ ସେମାନଙ୍କ କଲିକତା ଆସିବାର ଉଦ୍ଦେଶ୍ୟ । ସେତେବେଳକୁ ଶରତ ଓ ବାଳକୃଷ୍ଣଙ୍କ ମନ ସମ୍ପୂର୍ଣ୍ଣ ଖୋଲିଯାଇଥାଏ । ଶରତ ବେଶି କଥା କୁହନ୍ତି ନାହିଁ । ସ୍ୱଭାବତଃ ସେ ଅଳ୍ପଭାଷୀ । କିନ୍ତୁ ଅଟ୍ଟହାସ୍ୟ, ଈସତ୍‌ହାସ୍ୟ ନେତ୍ରବକ୍ର ବିକାର ଯୋଗେ ସେ ଯେ କଥୋପକଥନରେ ସକ୍ରିୟ ଅଂଶ ଗ୍ରହଣ କରୁଛନ୍ତି ଏହା ସେ ଜଣାଇ ଦିଅନ୍ତି । ବାଳକୃଷ୍ଣ କହିବାକୁ ଆରମ୍ଭ କଲେ "ଦେଖନ୍ତୁ ଶଶୀବାବୁ, ଆମେ ଆସିବାର ମାତ୍ର ଦିନକ ପରେ ଆପଣଙ୍କ ସହ ଦେଖା ହୋଇଗଲା, ପରିଚୟ ହେଲା, ଯଦି ଆପଣଙ୍କ ସମୟ ହୁଏ ତେବେ ଆମମାନଙ୍କୁ ଟିକିଏ ବିଭିନ୍ନ ସ୍ଥାନକୁ ନେଇଯିବାକୁ ହେବ । ଅତି ଆଗ୍ରହରେ ଶଶୀବାବୁ କହିଲେ "ନିଶ୍ଚୟ, ନିଶ୍ଚୟ ମୋର ନିଜର କାର ଅଛି, ମୋର ତ ସରକାରୀ କାମ ନୁହେଁ—ମୋତେ ତ କାହାରିଠାରୁ ଛୁଟି ନେବାକୁ ହେବ ନାହିଁ । ମୁଁ ଆପଣମାନଙ୍କୁ ନେଇ ଘୁରିଆଡ଼େ ବୁଲାଇବି । କେଉଁଠିକି କେଉଁଠିକି ଯିବେ, କାମ କଅଣ, ଖାଲି ଦେଖାସାକ୍ଷାତ ନା ଅନ୍ୟ କିଛି କାମ କାହାରିଠାରେ ଅଛି ?" ବାଳକୃଷ୍ଣ ସଫା କରି କହିଲେ, "ଦେଖନ୍ତୁ, ଆପଣ ତ କାର୍ଯ୍ୟତଃ ଆମ ଓଡ଼ିଶାର ଲୋକ, ଆମର ବନ୍ଧୁ । ଆପଣଙ୍କୁ ଲୁଚାଇବାର କିଛି ନାହିଁ । ଆପଣ ତ ଦେଖୁଛନ୍ତି, ଆମେ ଆସି ଜୀବନର ଶେଷ ପାଦରେ ପହଞ୍ଚିଲୁଣି । ତିରିଶ ଚାଳିଶ ବର୍ଷ କାଳ ସ୍ୱାଧୀନତା ଆନ୍ଦୋଳନରେ ମାତି ବାରମ୍ବାର ଜେଲ୍ ଯାଇଛୁ । କେତେ ନିର୍ଯ୍ୟାତନା ସହିଛୁ । କିନ୍ତୁ ଯେ ଉଦ୍ଦେଶ୍ୟରେ ଆମେ ଏ ସବୁ କଲୁ ସେ ଉଦ୍ଦେଶ୍ୟ ପୂର୍ଣ୍ଣ

ହେଲ ନାହିଁ ବୋଲି ଆମେ ଅନୁଭବ କରୁଛୁ ।'' ବାଧା ଦେଇ ଶଶୀବାବୁ କହିଲେ, ''କାହିଁକି ବର୍ତ୍ତମାନ ତ ଲୋକପ୍ରତିନିଧିମାନେ ଶାସନରେ, ଆମରି ଲୋକ ସବୁଠି କର୍ତ୍ତା—ଏହି ତ ଥିଲା ଉଦ୍ଦେଶ୍ୟ, ଆଉ କଅଣ ?'' ବାଳକୃଷ୍ଣ ଗମ୍ଭୀର ହୋଇଯାଇ କହିଲେ, ''ସେହି ଧାରଣା ଆମର ଥିଲା । ଆମେ କିନ୍ତୁ ଦେଖୁଛୁ ଧଳା ପରିବର୍ତ୍ତେ କଳା ବସିଛନ୍ତି ଆସନରେ । ଲୋକେ ଯେଉଁଠି ସେଇଠି । ସେମାନଙ୍କୁ ଶାସନରେ କେହି ପଗୁରୁ ନାହାନ୍ତି । ବରଂ ବ୍ରିଟିଶ୍ ଅମଳରେ ସେମାନେ ଯେପରି ଯାହା କିଛି ସମ୍ମାନ ପାଉଥିଲେ, ଆଜି ତା' ବି ନାହିଁ । ତୁଚ୍ଛ ତାଚ୍ଛଲ୍ୟ ଆଚରଣ ସେମାନଙ୍କ ପ୍ରତି ଏପରିକି ସେମାନଙ୍କ ପ୍ରତିନିଧିମାନଙ୍କର ମଧ୍ୟ ।'' ହସିଦେଇ ଶଶୀବାବୁ କହିଲେ, ''ସେମାନେ ତ ଭୋଟ୍ ଦେଉଛନ୍ତି, ଦୋଷ ଦେବେ କାହାକୁ ?'' ବାଳକୃଷ୍ଣ—''ଆପଣଙ୍କ କଲିକତା ସହର ଯେଉଁଠି ଶିକ୍ଷା ବିସ୍ତାର କରିଛି, ଯେଉଁଠି ରାଜନୈତିକ ଚେତନା ପୁଷ୍ଟ ହୋଇଛି, ସେଠି ହୁଏତ ଲୋକେ ଭୋଟ୍ ଅଧିକାରକୁ ଭଲ ଭାବରେ ବ୍ୟବହାର କରୁଥିବେ । କିନ୍ତୁ ସାଧାରଣ ବିଶାଳ ଜନତା ଯେ ଗାଁ ଗହଳରେ ପଡ଼ିଛନ୍ତି ସେମାନଙ୍କ ଠାରୁ ଭୟ ବା ଲୋଭ ଦେଖାଇ ଭୋଟ୍ ସଂଗ୍ରହ କରୁଛନ୍ତି, ସେହି ଜନତାଙ୍କଠାରୁ, ଯେଉଁ ଜନତା ସ୍ୱାଧୀନତା ଆନ୍ଦୋଳନରେ ଅଗ୍ରଣୀ ଥିଲେ । ଏହା ଏକ ଭାଗ୍ୟର ପରିହାସ । ଆମରି ପରି ବୟସ୍କ ଲୋକ ଏ ସମ୍ବନ୍ଧରେ ଭାବୁଛନ୍ତି । ଆମଦ୍ୱାରା ଏବେ ସୁଦ୍ଧା କିଛି ହୋଇ ପାରିବ କି ନାହିଁ, ତାହାହିଁ ଜାଣିବାପାଇଁ ଆମେ କଲିକତା ଆସିଛୁ

ଏହା ପରେ ଶରତ ତାଙ୍କ ଚିରପୋଷିତ ମତ ପ୍ରକାଶ କଲେ ''ଆମେ ଜାଣୁ, ଆନ୍ଦୋଳନରେ ବ୍ୟର୍ଥ ମନୋରଥ ହୋଇ ବଙ୍ଗ ଦେଶର ବହୁ ମନୀଷି ଅତିମାନଙ୍କ ଶକ୍ତି ଆହରଣ ପାଇଁ ଯୋଗସାଧନା ବା ଅନ୍ୟ ଆଧ୍ୟାତ୍ମିକ ମାର୍ଗ ଧରିଛନ୍ତି । ଆମେ ସେଥିରେ ବିଶ୍ୱାସ କରୁନାହୁଁ ।'' ଗମ୍ଭୀର ଭାବରେ ଶଶୀବାବୁ ସବୁ ଶୁଣିଲେ । ମୁହଁରୁ ଜଣା ପଡ଼ିଲା ଯେପରି ସେ ନିଜକଥା ମନେ ପକାଇଲେ । ଧୀରେ ଧୀରେ ସେ କହିଲେ—''ଦେଖନ୍ତୁ, ମୋର ମଧ୍ୟ ସେଇପରି ମାନସିକ ଅବସ୍ଥା ଦିନେ ହୋଇଥିଲା । ମୁଁ ମଧ୍ୟ ଆନ୍ଦୋଳନରେ ଜେଲ୍ ଯାଇଥିଲି କିଛିକାଳ ପାଇଁ । ତା'ପରେ ଏପାଖ ସେପାଖ ହୋଇ ଆଶ୍ରୟ ନେଲି ଏହି ଶିଳ୍ପ ପ୍ରତିଷ୍ଠାନରେ । ସେଠିକାମରେ ଲଗିଯାଇ ମୁଁ ପୂର୍ବ କଥା ସବୁ ଭୁଲିଯାଇଛି । ଆଉ ସେ ଆନ୍ଦୋଳନ ବା ଜେଲ୍ କିଛି

ମନେପଡୁ ନାହିଁ । ଜୀବନଟା ତ ସେହିପରି ମନଖୁସିରେ କୌଣସି କାମରେ ଲଗିଲେ ହେଲା ।" ବାଳକୃଷ୍ଣ—"ଏ ହେଲା ଆପଣଙ୍କ ମତ, ଆପଣ ରାଜନୀତିରୁ ଦୂରେଇ ଯାଇଛନ୍ତି । କିନ୍ତୁ ଆମେ ପୁରାପୂରି ରାଜନୀତିରେ ଅଛୁ । ସ୍ୱାଧୀନତା ପରେ ପରେ ରାଜନୀତି ଛାଡ଼ିଦେଇଥିଲେ ହୋଇଥାନ୍ତା । ଆମେ ତ ତା' କରିନାହୁଁ । ଆମେ ଭାବିଲୁ, ସ୍ୱାଧୀନତାକୁ ଲୋକଙ୍କ ଦୃଷ୍ଟିକୋଣରୁ ପରିଗ୍ରହିତ କରିବା ପାଇଁ । ଦ୍ୱନ୍ଦ୍ୱରେ ଆମେ ଅଛୁ—କିନ୍ତୁ ଆମକୁ କିଛି ସ୍ପଷ୍ଟ ଉପାୟ ଦେଖାଯାଉ ନାହିଁ ।" ଏ ସବୁ କଥା ଶଶୀବାବୁ ଭଲ ଭାବରେ ବୁଝୁଥିଲେ କି ନାହିଁ ତାଙ୍କ ଚେହେରାରୁ କିଛି ଜଣାପଡୁ ନ ଥାଏ ବରଂ ତାଙ୍କ ମୁଖ ଭଙ୍ଗୀରୁ ଜଣାଯାଉଥାଏ ଏ ସବୁ ଅବାନ୍ତର କଥା ଚାଲିଛି ବୋଲି ସେ ମନେ କରୁଛନ୍ତି । ଯାହାହେଉ ସେ କହିଲେ, "ଏଠାରୁ ପ୍ରାୟ କୋଡ଼ିଏ ପଚିଶ୍ ମାଇଲ୍ ଦୂରରେ ସୋଦପୁରରେ ଜଣେ ବିଶିଷ୍ଟ ବୟସ୍କ ଗାନ୍ଧିବାଦୀ ନେତା ଅଛନ୍ତି । ଆପଣଙ୍କ ପରି ତାଙ୍କର ମଧ୍ୟ ସଙ୍କଳ୍ପ । ସେଠିକି ଯାଇପାରନ୍ତି ।" ବାଳକୃଷ୍ଣ—"ଆଉ ପୁରାତନ ବିପ୍ଳବୀ କାହାକୁ ଆପଣ ଜାଣନ୍ତି ?" ଶଶୀବାବୁ ଉଡ଼ାଇ ଦେଲାପରି କହିଲେ, "କାହାନ୍ତି ସେମାନେ କେହି ନାହାନ୍ତି, ସେମାନେ ଥିବେ ହୁଏତ କେଉଁଠି, କିନ୍ତୁ ସେମାନେ ବିସ୍ମୃତ । ଅଛନ୍ତି ବର୍ତ୍ତମାନ ନବୀନ ବିପ୍ଳବୀ ଦଳ—ଛାତ୍ର ମହଲରେ, ଯୁବକମାନଙ୍କ ଭିତରେ । ବଙ୍ଗଦେଶ ବିପ୍ଳବରେ ଗୌରବ ଅର୍ଜନ କରିଥିଲା । ସେ ଗୌରବର ଉତ୍ତରାଧିକାର ଏହି ଯୁବକମାନଙ୍କ ହାତରେ ଆସି ପଡ଼ିଛି ।" ଶରତ ପଚାରିଲେ—"ଆପଣ ଜାଣନ୍ତି କାହାକୁ କାହାକୁ ?" ଶଶୀବାବୁ ହସିଦେଲେ—"ବିପ୍ଳବୀ ଅଥଚ ସମସ୍ତଙ୍କୁ ଜଣାଶୁଣା, ଏପରି ହେବ କିପରି ? ବିପ୍ଳବ କହିଲେ ବୁଝାଏ ଗୋପନୀୟ କାର୍ଯ୍ୟ । ତା' ନ ହେଲେ ବିପ୍ଳବ ନାଁରେ ଯେଉଁ ଯୁବକମାନେ "ଯୁବଜନଙ୍କ ଫ୍ରେସ୍" "ଛାତ୍ରଙ୍କ ଫ୍ରେସ୍" ଆଦି ଆସ୍ଥାନ ଜମାଇ ବସିଛନ୍ତି, ସେମାନଙ୍କ କଥା ମୁଁ ଖବର କାଗଜରେ ପଢ଼େ । ମୋର ସେମାନଙ୍କ ସହିତ ଜଣାଶୁଣା ନାହିଁ । ତେବେ ଆପଣମାନେ ପ୍ରଥମେ ସୋଦ୍‌ପୁର ଯାଆନ୍ତୁ ।" ଏତିକିରେ ନିଜେ ତରତର ହେଲେ ଯିବା ପାଇଁ । ନିଜ ଫୋନ୍ ନମ୍ବର ଦେଲେ । ଯେତେବେଳେ କାର୍ ଦରକାର ହେବ ସେ ପଠାଇ ଦେବେ । ନିଜେ ମଧ୍ୟ ଆସିବେ । ମଝିରେ ମଝିରେ ଆସି ଦେଖା କରିବେ—ଭଦ୍ର ଭାବରେ ଏ ସବୁ କହି ସେ ବିଦାୟ ନେଲେ ।

ସେ ଗ୍ଲିଗଲା ପରେ ଶରତ ବିରକ୍ତି ପ୍ରକାଶ କରି କହିଲେ "ତୁ ସମସ୍ତଙ୍କୁ ସବୁ କଥା କାହିଁକି ଅଯାଚିତ ଭବରେ କହୁ । ସେ ଲୋକଟା ଗ୍କିରୀ କରୁଛି । ସେ ନିଜେ କହୁଛି ପୂର୍ବକଥା ଆଉ ତା' ମନକୁ ଆସୁନାହିଁ, ସେ ପୁଣି ଆମକୁ ସାହାଯ୍ୟ କରିବ ? ଏ ତ ତୋର ସରଳତା ନୁହେଁ, ଏ ତୋର ପାଗଳାମି । ଛାଡ଼ ସେ କଥା—ଆମେ ନିଜେ ନିଜେ ଖୋଜିନେବା କେଉଁଠି କିଏ ଅଛନ୍ତି ।

—୯—

କଲିକତାରେ ଅଭୟାଶ୍ରମ, ଖଦୀ ପ୍ରତିଷ୍ଠାନ, ଖଦୀମଣ୍ଡଳ ପ୍ରଭୃତି କେତୋଟି ଅନୁଷ୍ଠାନ ସହିତ, ଶରତ ବାଳକୃଷ୍ଣ ଏବଂ ତାଙ୍କର ଅନ୍ୟ ସହକର୍ମୀମାନେ ପୂର୍ବରୁ ପରିଚିତ ଥିଲେ । ଏ ସବୁ ଅନୁଷ୍ଠାନ ମୂଳରୁ ଆରମ୍ଭ ହୋଇଥିଲା ଉତ୍ସାହୀ ଉଚ୍ଚ ଶିକ୍ଷିତ ସ୍ୱାଧୀନତା ପ୍ରୟାସୀ ଯୁବକମାନଙ୍କ ଦ୍ୱାରା । ଏ ଅନୁଷ୍ଠାନମାନଙ୍କ ମାଧ୍ୟମରେ ବଙ୍ଗ ଦେଶରେ ସ୍ୱାଧୀନତା ପାଇଁ ଅହିଂସାତ୍ମକ ଆନ୍ଦୋଳନ ତ୍ୱରାନ୍ୱିତ ହୋଇଥିଲା । ସ୍ୱାଧୀନତା ପରେ ଏମାନେ ଖଦୀ, ଗ୍ରାମୋଦ୍ୟୋଗ ପ୍ରଭୃତି ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟ ନେଇ ପଡ଼ିରହିଛନ୍ତି । ମୁଖ୍ୟ ରାଜନୈତିକ ସ୍ରୋତଠାରୁ ଏମାନେ ବହୁ ଦୂରରେ । ଶରତଙ୍କ ଭାଷାରେ ଏ ସବୁ ହୋଇଯାଇଛି ଯୋଗାଶ୍ରମ ପରି ଆଶ୍ରମମାନ ଯେଉଁଥିରେ ବ୍ୟର୍ଥତା ମଧ୍ୟରୁ ସାର୍ଥକତା ସନ୍ଧାନ ପାଇବା ପାଇଁ ବୟସ୍କ ବ୍ୟକ୍ତିମାନେ ଚେଷ୍ଟା କରୁଛନ୍ତି । ଏ ସବୁ ଅନୁଷ୍ଠାନକୁ ଯାଇ ଲାଭ କିଛିନାହିଁ । ସୋଦ୍‌ପୁରରେ ଖଦୀ ପ୍ରତିଷ୍ଠାନ । ତେଣୁ ସେଠିକି ଯିବା ଆବଶ୍ୟକ ନୁହେଁ ବୋଲି ଶରତ ଓ ବାଳକୃଷ୍ଣ ଉଭୟ ମନେକଲେ । ନବୀନ ବିପ୍ଳବୀମାନଙ୍କ ସନ୍ଧାନ ପାଇବା ମଧ୍ୟ ସହଜସାଧ୍ୟ ନୁହେଁ । ଛାତ୍ର ବା ଯୁବକ ମହଲ ସମ୍ପର୍କରେ ଆସିବାକୁ ଚେଷ୍ଟା କରି ଏମାନେ ବ୍ୟର୍ଥ ହେଲେ । କାରଣ, ବୟସ୍କ ବ୍ୟକ୍ତିମାନଙ୍କ ପ୍ରତି ଯୁବକମାନଙ୍କ ସମ୍ମାନ ଓ ବିଶ୍ୱାସ ନାହିଁ । ସେମାନେ ସ୍ପଷ୍ଟ କହିବୁଲୁଛନ୍ତି, ଦେଶଟାକୁ ଭସେଇ ଦେଲେ ଏହି ବୁଢ଼ାମାନେ, ଜୀବନରେ ଅକୃତକାର୍ଯ୍ୟ ଏମାନେ—ଏମାନଙ୍କ ସହିତ ସଂଯୋଗ ନିଆଁ ସହିତ ପାଣିର ସଂଯୋଗ ପରି । ସାତ ଆଠ ଦିନ କାଳ କଲିକତାର ନାନା ସ୍ଥାନରେ ବୁଲିଲେ । ହଠାତ୍ ଦିନେ ଦେଖିଲେ କାଳିଘାଟର ଏକ ଗଳିରାସ୍ତାର ଗୋଟିଏ

ଘରେ ବହୁ ଲୋକଙ୍କ ଭିଡ଼ ଲାଗିଛି । ପଚାରି ବୁଝିଲେ ସେଠି ଜଣେ ସନ୍ନ୍ୟାସୀ ଅଛନ୍ତି । ଯାହାଙ୍କ ପାଖକୁ ବହୁ ତରୁଣ ତରୁଣୀ ଯା'ଆସ କରୁଛନ୍ତି । ସେ କୁଆଡ଼େ ପରୋକ୍ଷରେ ବିପ୍ଳବ ମାର୍ଗରେ ଯୁବକମାନଙ୍କୁ ଉତ୍ସାହିତ କରୁଛନ୍ତି । କେହି କେହି ମନେ କରୁଛନ୍ତି ସେ ପ୍ରକୃତରେ ସୁଭାଷ ବୋଷ୍ । ଚେହେରା ଦେଖିବାକୁ ତାଙ୍କରି ପରି । କିନ୍ତୁ ସେ ନିଜର ପରିଚୟ କାହାରିକୁ ଦେଉ ନାହାନ୍ତି । ଏ ରହସ୍ୟମୟ ସନ୍ନ୍ୟାସୀକୁ ଦେଖିବା ପାଇଁ ଶରତ ଓ ବାଳକୃଷ୍ଣଙ୍କ କୌତୂହଳ ଜାତ ହେଲା । ଭିଡ଼ ଭିତରେ ଠେଲାପେଲା କରି ଦୁହେଁଯାକ ଚାଲିଗଲେ ସନ୍ନ୍ୟାସୀଙ୍କ ଠିକ୍ ସମ୍ମୁଖକୁ । ଧୂପଧୂମରେ ପ୍ରକୋଷ୍ଠଟି ଭରା । ସନ୍ନ୍ୟାସୀଙ୍କ ଚେହେରାକୁ ଏ ଧୂମ କିଞ୍ଚିତ ଅସ୍ପଷ୍ଟ କରି ରଖିଛି । ତଥାପି ଚେହେରାରୁ ଏକ ଜ୍ୟୋତି ପ୍ରକାଶିତ ହେଉଛି । ସୌମ୍ୟ ବଦନ–ଚିକ୍କଣ ମୁଖମଣ୍ଡଳ, ମନେ ହେବ ଯେପରି ସେଥିରେ ଶ୍ମଶ୍ରୁ ଆଦୌ ଜାତ ହୋଇ ନାହିଁ, କେଶ କୃଷ୍ଣବର୍ଣ୍ଣ, ପ୍ରଶସ୍ତ ବକ୍ଷ, ବାହୁ ସବଳ ଓ ସୁଗଠିତ । ସନ୍ନ୍ୟାସୀ ବସିଛନ୍ତି ପଦ୍ମାସନରେ । କିଛି କାହାକୁ କହୁନାହାନ୍ତି । ଅଥଚ ଯେ ଯାଉଛନ୍ତି ସେମାନେ ଅସରନ୍ତି ଉତ୍ସାହ ତାଙ୍କଠାରୁ ପାଉଛନ୍ତି ବୋଲି ଅନୁଭବ କରନ୍ତି ବୋଲି କହୁଛନ୍ତି । କୁତୂହଳୀ ହୋଇ ଶରତ ଓ ବାଳକୃଷ୍ଣ ଅପେକ୍ଷା କଲେ । କ୍ରମେ ଭିଡ଼ କମି ଆସିଲା । ତର ସହି ନ ପାରି ବାଳକୃଷ୍ଣ କହିଲେ, "ମଶାୟ, ଆମରା ଓଡ଼ିଶା ଥେକେ ଏସେଛି" । (ମହାଶୟ, ଆମେ ଓଡ଼ିଶାରୁ ଆସିଛୁ) ଏତିକି ଶୁଣି ସନ୍ନ୍ୟାସୀ ଦୁଇଜଣଙ୍କୁ ନିଠେଇ ଚାହିଁଲେ । ବସିବା ପାଇଁ ସଙ୍କେତ ଦେଲେ । ଅନ୍ୟ ଯେ କେତେଜଣ ଥିଲେ ସେମାନଙ୍କୁ ହାତ ଉଠାଇ ଆଶୀର୍ବାଦ ଜଣାଇ ବିଦା କରିଦେଲେ । ରହିଗଲେ ସନ୍ନ୍ୟାସୀ, ଶରତ ଓ ବାଳକୃଷ୍ଣ । ସନ୍ନ୍ୟାସୀ ବଙ୍ଗଳାରେ ପଚାରିଲେ, "କେବେ ଆସିଛ, କାହିଁକି ଆସିଛ, କେତେଦିନ ରହିବ ଇତ୍ୟାଦି ।" ଏତିକି କଥାରେ ବାଳକୃଷ୍ଣ ଏକ ପ୍ରକାର ଉତ୍ସାହ ଅନୁଭବ କଲେ ଯାହାକୁ ପରେ ସେ ଆକସ୍ମିକ ବୋଲି ବର୍ଣ୍ଣନା କଲେ । ସେମାନଙ୍କ ଇତିବୃତ୍ତି ଓ କଲିକତା ଆସିବାର ଉଦ୍ଦେଶ୍ୟ ଭଲ ଭାବରେ ବଙ୍ଗଳାରେ ବୁଝାଇ କହିଲେ । ସବୁ ନୀରବରେ ଶୁଣି ସନ୍ନ୍ୟାସୀ କହିଲେ, "ବୁଝିଲି, ତୁମେ କାଳ ବିରୁଦ୍ଧରେ ଲଢ଼ାଇ କରିବା ପାଇଁ ଚାହୁଁଛ, ପାରିବ ନାହିଁ । ଦେଖ, ବର୍ତ୍ତମାନ ଯେପରି ଆନ୍ଦୋଳନ ଆବଶ୍ୟକ କରୁଛି, ସେଥିରେ ତୁମ ବୟସର ଲୋକେ ସକ୍ରିୟ ଅଂଶ ଗ୍ରହଣ କରିପାରିବେ

ନାହିଁ । ଗାନ୍ଧି ଯୁଗ ଗ୍ଲଲିଗଲଣି । ସେତେବେଳେ ତ ଶାରୀରିକ ଶକ୍ତିର ଅବଶ୍ୟକତା ନ ଥିଲ । କେବଳ ମାନସିକ ଶକ୍ତିରେ ହିଁ ଆନ୍ଦୋଳନ ଗ୍ଲଲୁଥିଲ । ବର୍ତ୍ତମାନ ମାନସିକ ଶକ୍ତି ସଙ୍ଗେ ସଙ୍ଗେ ଶାରୀରିକ ଶକ୍ତି ମଧ୍ୟ ଦରକାର । ଆଧ୍ୟାତ୍ମ ସାଧନ କହିଲେ ଆତ୍ମା ପରମାତ୍ମାର ମିଳନ ନୁହେଁ । ସେ ତ ପରଲୌକିକ କାରବାର । ଏ ଲୋକରେ ଆଧ୍ୟାତ୍ମିକ ଶକ୍ତି କହିଲେ ବୁଝାଏ ଶରୀର ପ୍ରତି ମମତା ତ୍ୟାଗ—ସେଥିରେ ମନର ଦୃଢ଼ତା ଆବଶ୍ୟକ, ଆଉ ମନର ଦୃଢ଼ତା ପାଇଁ ଆଧ୍ୟାତ୍ମରେ ବିଶ୍ୱାସ । ଆଜି ଯେଉଁମାନେ ବିପ୍ଳବ ବିପ୍ଳବ ବୋଲି ରଡ଼ି ଛାଡୁଛନ୍ତି, ସେମାନଙ୍କର ଶରୀର ଓ ମାନସିକ ଶକ୍ତି ଅଛି । କିନ୍ତୁ ସେ ଶକ୍ତି ଆଧ୍ୟାତ୍ମ ଶକ୍ତି ସହିତ ସଂଯୁକ୍ତ ନ ହୋଇଥିବାରୁ ଅଳ୍ପ ସମୟରେ ତା ଶେଷ ହୋଇଯାଉଛି । ଯେପରି ଖୁବ୍ ଗଭୀର ପ୍ରଦେଶରେ ଜଳ ସହିତ ସଂଯୋଗ ନ କରି ଯଦି ଟିଉବ୍—ୱେଲକୁ ଉପର ସ୍ତରରେ ଛାଡ଼ି ଦିଆଯାଏ, ତେବେ ପାଣି ମିଳିବ—ମାତ୍ର ଅଳ୍ପ କାଳ ପାଇଁ ।

ଧୈର୍ଯ୍ୟହରା ହୋଇ ଶରତ ପଚ୍ଚରିଲେ, "ତେବେ ବର୍ତ୍ତମାନ ଆମର କର୍ତ୍ତବ୍ୟ କଅଣ ?" ସନ୍ନ୍ୟାସୀ—"ତୁମର କର୍ତ୍ତବ୍ୟ ସତ୍ୟନିଷ୍ଠ ଯୁବକମାନଙ୍କୁ ଉତ୍ସାହ ଦେବା, ପ୍ରେରଣା ଦେବା । ଯାହା ମୁଁ କହିଲି ସେମାନଙ୍କ ଆଧ୍ୟାତ୍ମ ବିଶ୍ୱାସ ବୃଦ୍ଧି କରାଇ ସେମାନଙ୍କ ଶାରୀରିକ ଓ ମାନସିକ ଶକ୍ତି ବିକାଶ କରାଇବା । ଏଥିପାଇଁ ଆବଶ୍ୟକ ଯୁବକମାନଙ୍କ ସଂସ୍ପର୍ଶରେ ଆସିବା । ତା' ଆଗରୁ ତ ନିଜେ ଆଧ୍ୟାତ୍ମ ବିଶ୍ୱାସୀ ହେବାକୁ ହେବ ।" ଏ କଥାରେ ଶରତ ଓ ବାଳକୃଷ୍ଣଙ୍କ ମନ ମାନୁ ନ ଥାଏ । ଯୁକ୍ତି କରୁଥାଆନ୍ତି । କଥା ପ୍ରସଙ୍ଗରେ ସନ୍ନ୍ୟାସୀ କହିଲେ, "ମୋର ଜଣେ ପୂର୍ବତନ ବନ୍ଧୁ ସଦାନନ୍ଦ ବିଶ୍ୱାସ ଓଡ଼ିଶାରେ ପୁରୀରେ ଯାଇ ରହିଥିଲେ । ସେ ମୋରି ସାଙ୍ଗରେ ବମ୍ ଆନ୍ଦୋଳନରେ ଦଶବର୍ଷ ଜେଲ୍ ଖଟିଥିଲେ । ଦେଶର ବର୍ତ୍ତମାନ ସ୍ୱାଧୀନତାରେ ତାଙ୍କ ମନ ମାନିଲା ନାହିଁ । ତୁମେ ଯେପରି ଯୁକ୍ତି କରୁଛ, ସେ ସେହିପରି ଯୁକ୍ତି କରୁଥିଲେ । ଶେଷରେ ମୋ କଥାରେ ରାଜି ହୋଇ ସେ ପୁରୀ ଗଲେ । ସେଠାରେ ଶେଷାଶ୍ରୟ ବୋଲି ଏକ ଆଶ୍ରମ ସ୍ଥାପନ କଲେ । ସେଠି ସେ ସ୍ୱାମିଜୀ ବୋଲି ପରିଚିତ ହେଲେ । ସେଠି କିନ୍ତୁ ସେ ଓଡ଼ିଆ ଯୁବକମାନଙ୍କୁ ଆକର୍ଷଣ କରିପାରିଲେ ନାହିଁ । ତୁଳସୀ ବୋଲି ଜଣେ

ଆସି ତାଙ୍କ ପାଖରେ ପହଞ୍ଚିଥିଲେ । ସେ ତ ମରିଗଲେ । ଶେଷରେ ସଦାନନ୍ଦ ମଧ୍ୟ ବନ୍ଦୀ ଅବସ୍ଥାରେ ପ୍ରାଣତ୍ୟାଗ କଲେ । ମୋର ମନେହୁଏ ସେ ଦେଶର ଯଥାର୍ଥ ସ୍ୱାଧୀନତା ପାଇଁ ଯଥେଷ୍ଟ କିଛି କରିଛନ୍ତି । ବନ୍ଦୀ ଅବସ୍ଥାରେ ପ୍ରାଣତ୍ୟାଗ ତ ଯେ କୌଣସି ବିପ୍ଳବୀ ପକ୍ଷରେ ଏକ ଉଚ୍ଚ ଆକାଂକ୍ଷା । ଶୁଣିଲି ସେ ଯେଉଁଠି ରହୁଥିଲେ ସେଠି ଜଗଦୀଶ ବୋଲି ଜଣେ ପୁରୁଣା ସ୍ୱାଧୀନତା ସଂଗ୍ରାମୀ ଆସିଅଛନ୍ତି । କେତେଦୂର ସେ କଅଣ କରିପାରିବ, ମୁଁ ଜାଣେ ନାହିଁ । ଆଧ୍ୟାତ୍ମ ସାଧନାରେ ଇହଲୋକରୁ ଆଖି ଫେରାଇ ପରଲୋକକୁ ଆଖି ପକାଇବା ହେଉଛି ଭାରତୀୟ ପରମ୍ପରା । ସେଥିପାଇଁ ଏ ଦେଶର ଦୁର୍ଗତି, ପରଲୋକକୁ ଆଖି ନ ଦେଇ ଇହଲୋକର ସମସ୍ୟାମାନଙ୍କ ସହ ଜଡ଼ିତ ହୋଇ ସେ ସବୁର ମାନବିକ ସମାଧାନ ହେଉଛି ଯଥାର୍ଥ ଆଧ୍ୟାତ୍ମିକ ସାଧନ ।" ତୁଳସୀ, ଶରତ ଓ ବାଳକୃଷ୍ଣଙ୍କ ଜଣେ ପୂର୍ବ ଆନ୍ଦୋଳନ ଯୁଗର ପରିଚିତ ବନ୍ଧୁ । ତାଙ୍କର ମୃତ୍ୟୁ, ପୁଣି ଜଗଦୀଶଙ୍କ କଥା ଶୁଣି ସେମାନେ ବିସ୍ମିତ ତ ହେଲେ, କୌତୂହଳର ମଧ୍ୟ ସୀମା ରହିଲା ନାହିଁ । ପୁରୀର ସେ ଆଶ୍ରମର ସମସ୍ତ ବିବରଣୀ ସେ ସନ୍ନ୍ୟାସୀଙ୍କଠାରୁ ଶୁଣିଲେ । କୌତୂହଳ ଜାତ ହେଲା ଜାଣିବା ପାଇଁ ସନ୍ନ୍ୟାସୀଙ୍କ ସମ୍ବନ୍ଧରେ ସବୁ । ସେ ଦରହସିତ ହୋଇ କହିଲେ, "ମୋ ନାମ ମୁଁ କାହାକୁ କହେ ନାହିଁ । ମୁଁ କର୍ମପ୍ରବଣ ହେବା ପାଇଁ ସମସ୍ତଙ୍କୁ କହେ । ପରିବର୍ତ୍ତନକୁ ଭୟ ନ କରି ବା ଏଡ଼େଇ ନ ଦେଇ ତାକୁ ସ୍ୱାଗତ କରି ସେଥିରେ ସନ୍ତରଣ କରିବା ପାଇଁ ମୁଁ ସମସ୍ତଙ୍କୁ କହେ । ବିକାଶଶୀଳ ସୃଷ୍ଟି । ବିକାଶର ଅର୍ଥ ହେଉଛି ପୁରାତନର ପ୍ରସ୍ଥାନ ଓ ନୂତନର ଆଗମନ । ନୂତନର ଆଗମନକୁ ତ୍ୱରାନ୍ୱିତ କରିବା ପାଇଁ ପୁରାତନକୁ ବାଧ୍ୟତାମୂଳକ ବିଦାୟ ଦେବାକୁ ହୋଇଥାଏ । ଏ ଯେ ଦର୍ଶକମାନେ ଆସୁଛନ୍ତି, ଏମାନେ ମୋର ବାଣୀ, ମୋର ପରାମର୍ଶ ସମ୍ବନ୍ଧରେ ମୋର ଅନେକ ସହକର୍ମୀଙ୍କ ଠାରୁ ଶୁଣି କେବଳ ମୋତେ ଦର୍ଶନ କରିବାକୁ ଆସନ୍ତି । ଆଉ ମୋର ବେଶୀ କିଛି କହିବାର ନାହିଁ । ଯାଅ ତୁମେମାନେ–" କହିଦେଇ ସ୍ୱାମୀ ଆସନରୁ ଉଠି ଭିତରକୁ ଚାଲିଗଲେ ।

ଶରତ ଓ ବାଳକୃଷ୍ଣଙ୍କ ମସ୍ତିଷ୍କ ବର୍ତ୍ତମାନ ଶୂନ୍ୟରେ ବିଚରଣ କରୁଛି । ଏପରିକି ସେମାନେ ନିଜ ନିଜ ଭିତରେ ବି କଥା ହେଉନାହାନ୍ତି ।

ବସ୍‌ରେ ଚଢ଼ି ଆସି ପହଞ୍ଚିଲେ ହୋଟେଲରେ । ଅମନମନକି ଗର୍ତ୍ତି-ଭୋଜନ କରି ନିଜ ରୁମ୍ ଭିତରେ ଯାଇ କିଛି ସମୟ ନୀରବରେ ପ୍ରାର୍ଥନା କଲାଭଳି ବସି ରହିଲେ । ଶରତ ନୀରବତା ଭଙ୍ଗି ପରିହାସାତ୍ମକ ସ୍ୱରରେ କହିଲେ—"କି ତୋର ରାଜନୀତି ବିଜ୍ଞାନ ବାହାରେ ତ ସବୁ ଶୁଣିଲୁ । କ'ଣ ଭାବୁଛୁ ?" ବାଳକୃଷ୍ଣ ଗମ୍ଭୀର ସ୍ୱରରେ କହିଲେ "ମୁଁ ସେ ସନ୍ନ୍ୟାସୀର ମତ କଥା ସବୁ ଭାବୁ ନାହିଁ । ମୁଁ ଭାବୁଛି ସେ ରହସ୍ୟମୟ ସନ୍ନ୍ୟାସୀ କିଏ ? ସେ ଏକ ସରକାରୀ ସନ୍ନ୍ୟାସୀ ନୁହେଁ ତ !" ହସି ହସି ପଚାରିଲେ ଶରତ—"ସେ ପୁଣି କଅଣ ? ସରକାରୀ ସନ୍ନ୍ୟାସୀ ।" ବାଳକୃଷ୍ଣ ପୂର୍ବପରି ଗମ୍ଭୀର । ସେ କହିଲେ ବର୍ତ୍ତମାନର ସ୍ଥିତିକୁ ସମର୍ଥନ କରିବା ପାଇଁ ନ୍ୟସ୍ତସ୍ୱାର୍ଥ କର୍ତ୍ତାମାନେ ସାଧୁସନ୍ନ୍ୟାସୀଙ୍କ ସାହାଯ୍ୟ ମଧ୍ୟ ନେଉଛନ୍ତି । ଦେଶ ତ ବହୁ ପ୍ରକାର ତନ୍ତ୍ରରେ ଜଡ଼ିତ । ସେଥି ମଧ୍ୟରୁ ଗୋଟିଏ ହେଉଛି "ପୁରୋହିତ ତନ୍ତ୍ର" ଆଉ ଗୋଟିଏ ହେଉଛି ତା'ରି ଅନ୍ତର୍ଗତ "ବାବା ମାଆ ତନ୍ତ୍ର ।" ଏହି ଦୁଇ ତନ୍ତ୍ର ସାହାଯ୍ୟରେ ଦେଶର ଗଣତନ୍ତ୍ର ସୁରକ୍ଷିତ ହେବ ବୋଲି ମନେ କରା ହେଉଛି । ପରିବର୍ତ୍ତନ ଦିଗକୁ ଜନମନ ନ ଯାଉ ଏଥିପାଇଁ ଭାରତର ଏ ଦୁଇ ପରମ୍ପରାଗତ ତନ୍ତ୍ରର ବ୍ୟବହାର ଖୁବ୍ ଜୋର୍‌ରେ କରାହେଉଛି । ମୋର ମନେ ହୁଏ ସେ ସନ୍ନ୍ୟାସୀ ସେହି ଦୁଇ ତନ୍ତ୍ରର ଅନ୍ତର୍ଗତ ଏକ ସାଧୁ । ଛାଡ଼ ସେ କଥା । ଗୋଟିଏ ଖବର କିନ୍ତୁ ମିଳିଲା । ଜଗଦୀଶ୍ ଯାଇ ପୁରୀରେ ଶେଷାଶ୍ରୟରେ ରହିଛି । ଆମେ ଘୁରିଆଡୁ ବୁଲାବୁଲି କରି କିଛି କୁଆଡ଼େ ନ ହେଲେ ସେଇଠି ଯାଇ ବିଶ୍ରାମ ନେବା ସ୍ୱର୍ଗଦ୍ୱାରକୁ ଯିବା ପୂର୍ବରୁ ।" ଏହା କହିଦେଇ ତାଳିମାରି ଜୋର୍‌ରେ ହସିଲେ । ପରଦିନ ସୋଦ୍‌ପୁରର ବୟସ୍କ ଗାନ୍ଧିବାଦୀ ନେତାଙ୍କଠାକୁ ଯିବାକୁ ସ୍ଥିର କଲେ ମାତ୍ର ଶଶୀବାବୁଙ୍କୁ କାର୍ ପାଇଁ କହିଲେ ନାହିଁ । ନିଜେ ନିଜେ ସବୁଆଡ଼କୁ ଯିବାକୁ ସ୍ଥିର କଲେ ।

—୧୦—

ସୋଦ୍‌ପୁରର ବିଶିଷ୍ଟ ଗାନ୍ଧି ଯୁଗର ନେତା ଦାସଗୁପ୍ତ ଏକ ସମୟରେ କେବଳ ବଙ୍ଗ ନୁହେଁ, ବିହାର, ଓଡ଼ିଶା ଓ ଭାରତର ଅନ୍ୟ ପ୍ରାନ୍ତମାନଙ୍କରେ

ମଧ୍ୟ ଏକ ପ୍ରସିଦ୍ଧ ବ୍ୟକ୍ତି ଥିଲେ । ଗାନ୍ଧିଜୀଙ୍କ ଅତ୍ୟନ୍ତ ବିଶ୍ୱସ୍ତ ଅନୁଗାମୀମାନଙ୍କ ମଧ୍ୟରେ ଦାସଗୁପ୍ତ ଜଣେ ଥିଲେ । ଜଣେ ବିଶିଷ୍ଟ ବୈଜ୍ଞାନିକ ହିସାବରେ ସେ ଏକ ବିଶାଳ ଶିଳ୍ପ ପ୍ରତିଷ୍ଠାନରେ କର୍ମକର୍ତ୍ତା ଥିଲେ । ସେ ସମୟର ବିଶ୍ୱରରେ ସେ ଜଣେ ସର୍ବାଧିକ ବେତନଭୋଗୀ କର୍ମଚାରୀ ଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ସବୁ ଛାଡ଼ିଦେଇ ପରିଣତ ବୟସରେ ମଧ୍ୟ ବ୍ରହ୍ମଚାରୀ ଜୀବନର ଆଶ୍ରୟ ନେଇ ଗାନ୍ଧିଜୀଙ୍କ କାର୍ଯ୍ୟକ୍ରମ ସାଧନରେ ମନପ୍ରାଣ ଢାଳି ଦେଲେ । ତାଙ୍କର ବର୍ତ୍ତମାନ ବୟସ ପ୍ରାୟ ନବେ ହେବ । ତଥାପି କର୍ମଠ । ନିୟମିତ ନୈଗମିଂଷ ଆହାର, ନିୟମିତ ଦୈନନ୍ଦିନ କାର୍ଯ୍ୟକ୍ରମ ସମ୍ପାଦନ ପାଇଁ ପ୍ରାୟ ପାଞ୍ଚ ମାଇଲରେ ଯାତାୟତ,ଜୋତା ପରିବର୍ତ୍ତେ ଖଡ଼ମ୍ ବ୍ୟବହାରକରା, ମୁଣ୍ଡିତ ମସ୍ତକ—ଆଣ୍ଠୁ ପର୍ଯ୍ୟନ୍ତ ଖଦୀ ଓ ଉପରେ ଖଣ୍ଡେ ଗାମୁଛା ଭଳି ଚାଦର । ଦେଖିଲେ ମନେ ହେବ—ପ୍ରାଚୀନ ଯୁଗର ଗୁରୁକୁଳ ଆଶ୍ରମର ଜଣେ ବିଶିଷ୍ଟ ଆଚାର୍ଯ୍ୟ ସେ । ତାଙ୍କର ବର୍ତ୍ତମାନ କାର୍ଯ୍ୟକ୍ରମ ହେଉଛି—ଅରଟରେ ସୂତାକଟାଳିମାନଙ୍କ ସଗଠନ, ମଲା ଗୋରୁ ଚମଡ଼ାରେ ଜୋତା ତିଆରିପାଇଁ ଏକ କାରଖାନାର ପରିଚାଳନ (ଜୋତା ବ୍ୟବହାର ପାଇଁ ଗୋରୁ କାଟିବା ନିତାନ୍ତ ଅନ୍ୟାୟ ବୋଲି ଗାନ୍ଧିଜୀଙ୍କ ମତ) ଏବଂ ଅସ୍ପୃଶ୍ୟତା ନିବାରଣ ପାଇଁ ହରିଜନମାନଙ୍କ ମଧ୍ୟରେ ଶିକ୍ଷା ବିସ୍ତାର । ମାତ୍ର ଅଳ୍ପ କେତେ ବର୍ଷ ପୂର୍ବରୁ ତାଙ୍କର ଆଶ୍ରମରେ ବହୁ କର୍ମୀ ଥିଲେ । ଭାରତରେ ଗାନ୍ଧିଯୁଗ ପ୍ରବର୍ତ୍ତିତ ହୋଇ ଆସୁଛି ବୋଲି ବହୁ ଯୁବକ ବିଳାସମୟ ଜୀବନ ତ୍ୟାଗ କରି କର୍ମମୟ ଜୀବନ ଯାପନ ପାଇଁ ବ୍ରତୀ ହୋଇଥିଲେ । କ୍ରମେ ଯେତେବେଳେ ଗାନ୍ଧି ଯୁଗ ଅତୀତ ଇତିହାସର ଏକ ପୃଷ୍ଠା ହେବାକୁ ବସିଲା, ସେତେବେଳେ କର୍ମମୟ ଜନସେବା ପ୍ରତି ଆଗ୍ରହ କମି ଆସିଲା । ଆଜି ଅତି ଅଳ୍ପସଂଖ୍ୟକ କର୍ମୀ ଦାସଗୁପ୍ତଙ୍କ ଆଶ୍ରମରେ ଅଛନ୍ତି । ସକାଳ ପ୍ରାୟ ୯ଟା ବେଳେ ସେ ଆଶ୍ରମର ବାହାର ଘରେ ବସି ଅଫିସ୍ କାମ କରୁଛନ୍ତି । ଏହି ସମୟରେ ଶରତ ଓ ବାଳକୃଷ୍ଣ ଯାଇ ଖବର ଦେଲେ ସାକ୍ଷାତ୍ କରିବାକୁ । ସଙ୍ଗେ ସଙ୍ଗେ ଅନୁମତି ମିଳିଗଲା । ଏମାନଙ୍କର ଟେରିକଟ୍ ପେଣ୍ଟ ସାର୍ଟ, ଆଧୁନିକ ବେଶଭୂଷା ଆଡ଼େ ଚାହିଁ ଦେଇ ଦାସଗୁପ୍ତ ବଙ୍ଗଳାରେ କହିଲେ—"ଚେଙ୍କାମାଡି ବସିପାରିବ ତ ?" ସେ ନିଜେ ଚେୟାର୍ ଟେବୁଲ୍ ବ୍ୟବହାର କରନ୍ତି ନାହିଁ, ତଳେ ସତରଞ୍ଚି ଉପରେ ଛୋଟ ଗଦିଟିଏ ଓ

ତକିଆଟିଏ ଏବଂ ଆଗରେ ଡ୍ରୟାର ଥିବା ଡ଼େସ୍କ । ଏଇଥିରେ ସେ ତାଙ୍କ ଅଫିସ୍ କାମ ଚଳାନ୍ତି । ଶରତ ବାଳକୃଷ୍ଣ ପ୍ରଶ୍ନର ଉତ୍ତର ନ ଦେଇ ନମ୍ର ଭାବରେ ବସିପଡ଼ିଲେ । ପ୍ରଶ୍ନଟି ଭିତରେ ସମାଲୋଚନାର ଯେ ବ୍ୟଞ୍ଜନାଥିଲା ତାହା ସେମାନେ ବୁଝିପାରିଲେ । ବାଳକୃଷ୍ଣ ମୁଣ୍ଡ ଆଉଁସି ଆଉଁସି କହିଲେ "ଏକ ସମୟରେ ଆମେ କେବଳ ହାତକଟା ସୂତାରେ ହାତବୁଣା ଲୁଗା ବ୍ୟବହାର କରିବୁ ବୋଲି ବ୍ରତ ନେଇଥିଲୁ । ସେ ବ୍ରତ ପାଳନ କଲୁ ପ୍ରାୟ ପଚିଶବର୍ଷ କିନ୍ତୁ ସେ ବ୍ରତ ତ ଅତୀତ ଯୁଗକୁ ଗଲିଗଲା । ଅରଟଚଲା ବନ୍ଦ ହେଲା ଖଦଡ଼ ନାମରେ ମିଲ୍ ସୂତାରେ ବୁଣାଲୁଗା ବିକ୍ରୀ ହେଲା । ଆଉ ସେ ପ୍ରବଞ୍ଚନାରେ ପରୋକ୍ଷ ସହାୟକ ହେବା ଠିକ ନୁହେଁ ଭାବିଲୁ । ଆସି ପହଞ୍ଚିଲୁ ଏହି ପୋଷାକରେ । ପୋଷାକ ସିନା ବଦଳାଇ ପାରିଲୁ, କିନ୍ତୁ ମନ ବଦଳାଇ ପାରିଲୁ ନାହିଁ । ସେଥିପାଇଁ ଆସିଛୁ ଆପଣଙ୍କଠାକୁ ।" କଅଣ ସେମାନଙ୍କ ମନର ଅବସ୍ଥା ଜାଣିବା ପାଇଁ ଦାସଗୁପ୍ତ ଗୁଡ଼େଇ ତୁଡ଼େଇ ବହୁ ପ୍ରଶ୍ନକଲେ । ଏମାନେ ମଧ୍ୟ ପରସ୍ପରକୁ ସାହାଯ୍ୟ କରି ପାରୁପର୍ଯ୍ୟନ୍ତ ଉତ୍ତର ଦେଲେ । ସବୁ ଶୁଣିସାରି ଗମ୍ଭୀର ହୋଇଯାଇ ଦାସଗୁପ୍ତ କହିଲେ "ତୁମେ ଯେ ବାରମ୍ବାର ବ୍ରତ ଶବ୍ଦ ବ୍ୟବହାର କରୁଛ, ତାର ଗୁରୁତ୍ୱ ତୁମେ ଉପଲବ୍ଧି କରୁନାହିଁ । ବ୍ରତର ଅର୍ଥ ହେଲା ଜୀବନଯାକ ପଛକେ ସିଦ୍ଧାନ୍ତରୁ କେବେ ବିଚଳିତ ନ ହେବା । ତୁମେ ତ ବ୍ରତ ନେଇଥିଲ । ବିଚଳିତ କାହିଁକି ହେଉଛ ?" ଶରତ କ'ଣ କହିବେ ବୋଲି ଉଦ୍ୟତ ହେଉଥିଲେ । ଦାସଗୁପ୍ତ ହାତଠାରି ବନ୍ଦକରାଇ କହିଲେ, "ମୋର ସବୁକଥା ଶୁଣିସାର, ତା'ପରେ କହିବ । ତୁମେ ଯାହାକୁ ବ୍ରତ ବୋଲି କହୁଛ, ସେ ବାସ୍ତବିକ ଥିଲା ସେ ସମୟର ଫେସନ୍‌କୁ ସ୍ୱୀକାର ଓ ଗ୍ରହଣ । ସେ ଫେସନ୍ ଯେତେବେଳେ ବଦଳିଗଲା, ନୂଆ ଫେସନ୍ ପ୍ରଚଳିତ ହେଲା, ସେଥିରେ ତୁମେ ଖାପ୍ ଖାଇ ପାରୁନାହଁ । ପୋଷାକ ବଦଳେଇବା ସହଜ କିନ୍ତୁ ମନ ବଦଳେଇବା ସେତେ ସହଜ ନୁହେଁ, ବିଶେଷତଃ ସେହି ମାନଙ୍କ ପକ୍ଷରେ ଯେଉଁମାନେ ନୂଆ ଫେସନ୍ ସହିତ ଖାପ୍ ଖାଇ ପାରୁନାହାନ୍ତି । ଆମେ ଚାହିଁଥିଲେ ସ୍ୱାଧୀନତା ଓ ଗଣତନ୍ତ୍ର । ଗାନ୍ଧିଜୀ ସ୍ପଷ୍ଟ ଭାବରେ ଗଣତନ୍ତ୍ର ବା ପଞ୍ଚ ପରମେଶ୍ୱରଙ୍କ ମତାନୁସାରେ ଶାସନ ଉପରେ ଜୋର ଦେଇଥିଲେ । ଏ ପରିକି ସେ ଏହାମଧ୍ୟ ବାରମ୍ବାର କହିଥିଲେ, ଲୋକେ ଯଦି ଭୁଲ୍‌କରନ୍ତି,

ତାଙ୍କୁ ମଧ୍ୟ ମାନିବାକୁ ହେବ । ଭୁଲ୍ କରିବାର ଅଧିକାର ମଧ୍ୟ ଗଣତାନ୍ତ୍ରିକ ସ୍ୱାଧୀନତାରେ ନିହିତ । ସ୍ୱାଧୀନତା ପରେ ଦେଶ ଯେପରି ପରିଚ୍ଳିତ ହେଉଛି ସେଥିରେ ତୁମ ମନ ମାନୁ ନାହିଁ କିନ୍ତୁ ଅଧିକାଂଶଙ୍କ ମନ ମାନୁଛି ।" ବାଧାଦେଇ ବାଳକୃଷ୍ଣ କିଛି କହିବା ପାଇଁ ଚାହାଁଉଥିଲେ । ତାଙ୍କୁ ବନ୍ଦ କରାଇ ଦାସଗୁପ୍ତ କହିଲେ, "ଶୁଣ ଆଗେ ସବୁ କଥା । ତୁମେ କହିବ ଅଧିକାଂଶ ଭୟ ବା ଲୋଭର ଶୀକାର ହୋଇଯାଉଛନ୍ତି, ଏହା ଯଦି ପ୍ରକୃତରେ ତୁମେ ଭାବୁଥାଅ ଏବଂ ତୁମର ଗଣତାନ୍ତ୍ରିକ ସ୍ୱାଧୀନତାରେ ବିଶ୍ୱାସ ଥାଏ ତେବେ ତୁମର କାମ ହେବା ଉଚିତ୍ ଲୋକମାନଙ୍କ ମନରୁ ଭୟ ଦୂର କରିବା । ଲୋଭରେ ନପଡ଼ି ଦେଶାତ୍ମବୋଧରେ ସେମାନଙ୍କୁ ଜାଗ୍ରତ କରାଇବା, ଏହିକାମ କରିବା ପାଇଁ ଧୈର୍ଯ୍ୟ ଆବଶ୍ୟକ ଏବଂ ବ୍ରତ ଆବଶ୍ୟକ । ମୁଁ ଜାଣିପାରୁଛି ମୋରି ପରି ସେ ଯୁଗର କର୍ମୀମାନେ ଜାଣୁଛନ୍ତି ଦେଶ ଚାଲିଛି ଏକ ଅମାର୍ଗରେ କିନ୍ତୁ ଅଧିକାଂଶ ଲୋକ ମନେ କରୁଛନ୍ତି ଦେଶ ଠିକ୍ ଚାଲିଛି ପ୍ରଗତି ମାର୍ଗରେ । ଏଣୁ ଯେଉଁମାନେ ରାଷ୍ଟ୍ର ପରିଚାଳନା କରୁଛନ୍ତି, ସେମାନଙ୍କ ପ୍ରତି ବିରକ୍ତ ନ ହୋଇ ଯେଉଁମାନେ ସେମାନଙ୍କୁ ସେ ସ୍ଥାନକୁ ପଠାଇଛନ୍ତି, ସେମାନଙ୍କ ମତ ପରିବର୍ତ୍ତନ ପାଇଁ ଉଦ୍ୟମ କରିବା ଆବଶ୍ୟକ । ହୋଇପାରେ ଏଥିରେ ବର୍ଷ ବର୍ଷ ବହୁ ବର୍ଷ ବିତିଯିବ । ଏହା ମଧ୍ୟ ହୋଇପାରେ ଲୋକେ ମତ ପରିବର୍ତ୍ତନ କଲେ ନାହିଁ, ଦିନେ କରିବେ, ଅଭିଜ୍ଞତାରୁ ଜାଣିବେ, ଏ ବିଶ୍ୱାସ ପୋଷଣ କରି ଦୃଢ଼ ଭାବରେ ଚାଲିବାକୁ ହେବ । ବ୍ରତୀ ଯେ ସେ କେବେ ବ୍ୟର୍ଥତା ଅନୁଭବ କରେ ନାହିଁ । କାହାରି ଜୀବନ କେବେ ବ୍ୟର୍ଥ ହୁଏ ନାହିଁ । ସମସ୍ତେ ନିଜ ନିଜ ମାର୍ଗରେ ସାର୍ଥକତା ଅର୍ଜ୍ଜନ କରିବାରେ ଲାଗିଛନ୍ତି । ଅସ୍ଥିର ଅଧୀର ହୋଇ ବଳପ୍ରୟୋଗରେ ସ୍ଥିତିକୁ ବଦଳାଇବା ପାଇଁ ମଧ୍ୟ ଆବଶ୍ୟକ ଅଧ୍ୟବସାୟ ଓ ସଂଗଠନ । ସେଥିପାଇଁ ମଧ୍ୟ ବହୁ ବର୍ଷ ଆବଶ୍ୟକ । ଆଜିକାଲି ଯେଉଁ ଯୁବକମାନେ ଅଧୀର ହୋଇ ଏଠି ସେଠି କାଁ ଭାଁ ହତ୍ୟା, ଲୁଟ୍‌ତରାଜ ଇତ୍ୟାଦି କାର୍ଯ୍ୟକ୍ରମ ଚଳାଇଛନ୍ତି ତା' ନୀତି ଦୃଷ୍ଟିରୁ ଗର୍ହିତ ଏବଂ କାର୍ଯ୍ୟକାରିତା ଦୃଷ୍ଟିରୁ ମଧ୍ୟ ସଂପୂର୍ଣ୍ଣ ନିରର୍ଥକ । ତୁମେ କହିବ ଛାତ୍ର ଯୁବ ଆନ୍ଦୋଳନ ।' ତା'ର ଅର୍ଥ କିଛିନାହିଁ । ମୁଷ୍ଟିମେୟ ଛାତ୍ର ବା ଯୁବକ ସେମାନଙ୍କ ମଧ୍ୟରୁ ଅନେକ ହୁଏତ ଦୁଶ୍ଚରିତ୍ର ଓ ଅଧ୍ୟୟନରେ ଅପାରଗ ।

ସେହିମାନେ ବିଶାଳ ଛାତ୍ର ଓ ଯୁବ ସମାଜର ପ୍ରତିନିଧି ବୋଲାଇ ଚାଲିଛନ୍ତି । କାରଣ ଶତକଡ଼ା ପ୍ରାୟ ନବେ ଛାତ୍ର ଓ ଯୁବକ ନିଷ୍କ୍ରିୟ ଓ ନୀରବ ଶ୍ରୋତା ବା ଦ୍ରଷ୍ଟା । ଅଧିକାଂଶ ନିଜ ନିଜ ଜୀବନ ଓ ପରିବାରର ଚିନ୍ତାରେ ମଗ୍ନ । ଏମାନଙ୍କ ମନରେ ଦେଶାତ୍ମବୋଧ ଜାଗ୍ରତ କରିବା ପାଇଁ ଯେଉଁ ଧୈର୍ଯ୍ୟ, ଯେଉଁ ଚିନ୍ତା, ଯେଉଁ ନିଷ୍ଠା ଓ ଯେଉଁ ଚରିତ୍ର ଆବଶ୍ୟକ, ତା' ତ ଆଖିରେ ଦେଖିବାକୁ ମିଳୁ ନାହିଁ । ଏଣୁ ଖାଲି ବିପ୍ଳବ ବିପ୍ଳବ କହି ମନକୁ ସେହି ଶବ୍ଦରେ ଅସ୍ଥିର କରିବା ଉଚିତ ନୁହେଁ । ଚାଲିଛି ଏକ ବ୍ୟବସ୍ଥା, ଏହାର ପରିବର୍ତ୍ତନ କରିବେ ଲୋକେ । ସେହି ଲୋକଙ୍କ ଭିତରେ ବୁଡ଼ି ରହି ସେମାନଙ୍କ ମତ ଗଠନ କରିବା ଆବଶ୍ୟକ । ମୋର ତ ବିଶ୍ୱାସ, ଆଜି ନ ହେଉ କାଲି ବି ହେଉ, ଗାନ୍ଧି-ଦର୍ଶନ ପଥକୁ ଏ ଦେଶ ବାଧ୍ୟ ହୋଇ ଆସିବ ଘଟଣା ଚକ୍ରରେ । ମୋର ନବେ ବର୍ଷ, ମୁଁ ଥିବି ନାହିଁ ବା ମୋର ପୁଅ ନାତି ହୁଏତ ନ ଥିବେ କିନ୍ତୁ ପୁଣି ଗାନ୍ଧି ଯୁଗ ଆସିବ ହିଁ ଆସିବ ଏହା ମୋର ବିଶ୍ୱାସ । ସେହି ବିଶ୍ୱାସ ନେଇ ମୁଁ ଚାଲିଛି ଯଥାଶକ୍ତି କାର୍ଯ୍ୟ କରି । ବହୁ କର୍ମୀ ଥିଲେ, ବର୍ତ୍ତମାନ ଅଛନ୍ତି ଅଳ୍ପ । ହୁଏତ ଶେଷରେ କେହି ନଥାଇ ପାରନ୍ତି । ତଥାପି ମୋ ବିଶ୍ୱାସରୁ ମୁଁ କେବେ ହଟିବି ନାହିଁ ।" ଏହି ଦୀର୍ଘ କଥନ ପରେ ଦାସଗୁପ୍ତ କ୍ଳାନ୍ତ ହୋଇଗଲେ । କପାଳରେ ଝାଳ ଦେଖା ଦେଲା । ପାଖରେ ଥିବା ପାଣି ଗ୍ଲାସରୁ ପାଣି ଟିକିଏ ପିଇଲେ । ଏହାପରେ କଅଣ କହିବେ ଶରତ ଓ ବାଳକୃଷ୍ଣ ଉଭୟ କିଛି ଭାବି ପାରିଲେ ନାହିଁ । ଯେଉଁ କେତୋଟି କଥା ତାଙ୍କ ମନରେ ଘୂରୁଥିଲା ସେଯାକୁ ସେମାନେ ଉତ୍ଥାପନ କଲେ । ଶରତ ପଚାରିଲେ "ଆଧ୍ୟାତ୍ମବାଦ ସମ୍ବନ୍ଧରେ ଆପଣଙ୍କ ମତ କଅଣ ? ରାଜନୀତିରେ ବ୍ୟର୍ଥ ହୋଇ ଅନେକ ତ ଯୋଗାଶ୍ରମର ଆଶ୍ରୟ ନେଉଛନ୍ତି ।" ଦାସଗୁପ୍ତ ହସିଲେ ଏବଂ କହିଲେ, "ମୁଁ ତ ଆଧ୍ୟାତ୍ମ ସାଧନ କରୁଛି, ମୁଁ ପରଲୋକରେ କଅଣ ହେବ ନ ହେବ ତାହା ମନକୁ କେବେ ନେଉନାହିଁ । ମୁଁ ଲାଗିଛି କାମରେ, ଏହି ତ ଯୋଗ, ଏହି ତ ଆଧ୍ୟାତ୍ମିକ ସାଧନ ।" ଆଉ କଅଣ ଶରତ କହିବାକୁ ଯାଉଥିଲେ, ହାତ ଟିପି ଦେଇ ତାକୁ ମନା କରି ବାଳକୃଷ୍ଣ ପଚାରିଲେ—"ତାହେଲେ ଆପଣ ଭାବୁଛନ୍ତି ବର୍ତ୍ତମାନ ସ୍ଥିତିର ପରିବର୍ତ୍ତନ ସହଜସାଧ୍ୟ ନୁହେଁ । ଅଳ୍ପ କେତେ ବର୍ଷରେ ମଧ୍ୟ ହେବାର ସମ୍ଭାବନା ନାହିଁ । ଆମ ବୟସର ଲୋକେ

ଏ ଅବସ୍ଥାରେ କଅଣ କରିବେ ? ଆମ୍ଭେମାନେ ବର୍ତ୍ତମାନ ଅପରାହ୍ଣରେ କିଛି ଯଦି ନ କରୁଁ, ଭବିଷ୍ୟତ ବଂଶଧର ତ ଆମକୁ କ୍ଷମା ଦେବେ ନାହିଁ।" ଦାସଗୁପ୍ତ ହସିଲେ, "ତୁମେ ତ ଅପରାହ୍ଣରେ, ମୁଁ ତ ସନ୍ଧ୍ୟାରେ । ନିଜ ମନକୁ ପରିଷ୍କାର ରଖି କାମରେ ଲାଗିପଡ଼ିଲେ ଦିନେ ନା ଦିନେ ଅବସ୍ଥାର ପରିବର୍ତ୍ତନ ହେବ ଏବଂ ଭବିଷ୍ୟତ ବଂଶଧର ଏହା ଘଟିବାର କାରଣ ଅନୁସନ୍ଧାନ କରିବେ, ଜାଣିବେ ଯେଉଁମାନେ ସେ ଦିଗରେ କି କାମ କରୁଥିଲେ ।"

ମନ ମାନୁ ନ ଥାଏ, କହିବା ପାଇଁ ମଧ୍ୟ କିଛି ନ ଥାଏ । ଦାସଗୁପ୍ତଙ୍କଠାରୁ ତାଙ୍କର ଆଶ୍ରମର କାର୍ଯ୍ୟ ସମ୍ବନ୍ଧରେ କିଛି ଶୁଣିଲେ । ନମସ୍କାର କରି ବିଦା ହୋଇ ଆସିଲେ ।

—୧୧—

କଲିକତାର ଆଉ କେତେ ଜାଗାକୁ ଗଲେ, ଛାତ୍ର କଂଗ୍ରେସ, ଛାତ୍ର ଇଉନିୟନ୍, ବଡ଼ ବଜାର ଶ୍ରମିକ ସଂଘ, ଡକ୍ ଲେବର୍ ୟୁନିୟନ୍ ଅଫିସ ଇତ୍ୟାଦି କେତୋଟି ସ୍ଥାନକୁ ଯାଇ ଅନେକଙ୍କ ସାଙ୍ଗରେ କଥାଭାଷା ହେଲେ। କେଉଁଠି ହେଲେ ଦେଶର ସମସ୍ୟା ଆଲୋଚିତ ହେବାର ସେମାନେ ଶୁଣିଲେ ନାହିଁ । କଥାବାର୍ତ୍ତାରେ ଦେଶର ସମସ୍ୟା ଅବାନ୍ତର ବୋଲି ଅନେକଙ୍କଠାରୁ ଶୁଣିଲେ । ଛାତ୍ରମାନେ ଅଧ୍ୟାପକମାନଙ୍କୁ ଦବେଇ ପରୀକ୍ଷାରେ ପାସ୍ କରିବା ପାଇଁ ବ୍ୟଗ୍ର । ତେଣୁ ପାସ୍ କରିବା ପାଇଁ ସମ୍ଭାବନା ନ ଥିବା ଛାତ୍ରମାନେ ହିଁ ଛାତ୍ରନେତା । ଶ୍ରମଜୀବୀମାନେ ତାଙ୍କର ଦିପଇସା ମଜୁରୀ ବଢ଼ିଲେ ବା ବେଶୀ କିଛି ସୁବିଧା ବଢ଼ିଲେ ସେମାନେ ସନ୍ତୁଷ୍ଟ । ମନେହେଲା ଯେପରି ଚୀନ୍ ବା ରୁଷିଆ କେହି ଭାରତ ଅଧିକାର କରି ଶ୍ରମଜୀବିମାନଙ୍କୁ ବେଶୀ ମଜୁରି ବା ସୁବିଧା କରାଇ ଦେଲେ ସେମାନଙ୍କ କିଛି ଆପତ୍ତି ହେବନାହିଁ, ବରଂ ସେମାନେ କୃତଜ୍ଞ ହେବେ । ଏକ ଦିଗରେ ପ୍ରଭୁତ ଅର୍ଥର ଅଧିକାରୀ ସୁଖ ସ୍ୱାଛନ୍ଦ୍ୟରେ ଏପରି ଜୀବନ ନିର୍ବାହ କରୁଛନ୍ତି ଯେ ଦେଶ କଥା ବା ଜନତା ସମସ୍ୟା ଆଉ ଭାବିବାର ଆବଶ୍ୟକତା ସେମାନଙ୍କ ପକ୍ଷରେ ନାହିଁ । ଅନ୍ୟ ଦିଗରେ ଏମାନଙ୍କ ଧନ ଆହରଣର

ମାଧ୍ୟମ ଶ୍ରମଜୀବିମାନେ ଆଦୃତ ଧନରୁ କିଛି ଅଂଶ ପାଇବା ପାଇଁ ସଦା ସର୍ବଦା ଚେଷ୍ଟିତ । ଜନସାଧାରଣଙ୍କ ସମସ୍ୟା ଜାଣିବା ବା ବୁଝିବା ପାଇଁ ସେମାନଙ୍କର ସମୟ ଓ ଇଛା ନାହିଁ । ମଝିରେ ଯେ ଚିପି ହୋଇ ରହି ଯାଇଛନ୍ତି । ତଥାକଥିତ ମଧ୍ୟବିତ୍ତ ଶ୍ରେଣୀ ଏମାନଙ୍କ ଦୁରବସ୍ଥା ଦେଖି ବାଞ୍ଛକୃଷ୍ଣ ଦୁଃଖରେ ଥରେ କହିପକାଇଲେ—' ଏହା ତୁଳନାରେ ଓଡ଼ିଶା ତ ବରଂ ଭଲ । ଏତେ ଦୁଃଖରେ ଯଦି ବଙ୍ଗାଳି ଯୁବକଙ୍କ ରକ୍ତ ଗରମ ହେଉନାହିଁ ତେବେ ଓଡ଼ିଶାର ନିଷ୍ପନ୍ଦ ଜୀବନ ପାଇଁ ଆମେ କାହିଁକି ଏତେ ବ୍ୟସ୍ତ ହେଉଛୁ ।" ଶରତ ଏଥିରେ ଏକମତ । ଦୁହେଁଯାକ ବିସ୍ମିତ । କଅଣ ହୋଇଛି ବଙ୍ଗୀୟ ଜୀବନରେ ଏ ପ୍ରକାର ଅବସାଦର କାରଣ । ଅତ୍ୟାବଶ୍ୟକୀୟ ଜିନିଷପତ୍ରର ଦର ବଢ଼ିଛି—ସ୍ୱଳ୍ପ ବେତନଭୋଗୀ ବା ସ୍ୱଳ୍ପ ଉପାର୍ଜ୍ଜନ କରୁଥିବା ପରିବାରମାନେ ଅଧେ ଦିନ ଉପାସରେ ରହୁଛନ୍ତି । ଦିନେ ଦିନେ ପାଉଁରୁଟି ଖଣ୍ଡେ ଖଣ୍ଡେ ପିଲମାନଙ୍କୁ ଧରାଇ ଦେଇ ଭାଗ୍ୟକୁ ଆଦରି ରହିଯାଉଛନ୍ତି । ସବୁଠାରୁ ଦେଶୀ ଆଶ୍ଚର୍ଯ୍ୟର ବିଷୟ ହେଲା ଯେତେବେଳେ ଶରତ ଓ ବାଞ୍ଛକୃଷ୍ଣ ଜାଣିଲେ ବହୁ ନିମ୍ନ ମଧ୍ୟବିତ୍ତ ପରିବାରର ପରିଣତ ବୟସ୍କା କନ୍ୟାମାନଙ୍କୁ ନିଜର ଶରୀର ବିନିମୟରେ ନିଜର ଉଦର ପୋଷଣ ଓ ପରିବାରଙ୍କୁ କିଛି ସାହାଯ୍ୟ କରିବା ପାଇଁ ସେମାନଙ୍କ ପିତାମାତାମାନେ ପଠାଇ ଦେଉଛନ୍ତି । ଅସାମାଜିକ କାର୍ଯ୍ୟ ନିରୋଧ ପାଇଁ ପୋଲିସ୍‌ର ଯେଉଁ ଚିନ୍ତାଶୂନ୍ୟ ଅଭିଯାନ ଚାଲିଛି, ସେଥିରେ ବହୁସଂଖ୍ୟକ ଝିଅ ଗିରଫ୍ ହେଉଛନ୍ତି । କଚେରୀରେ ସେମାନଙ୍କ ଭିତରୁ କେତେଜଣ ସ୍ପଷ୍ଟ କହିଛନ୍ତି ଜୀବିକା ପାଇଁ ସେମାନେ ବେଶ୍ୟାବୃତ୍ତି ଅବଲମ୍ବନ କରିଛନ୍ତି । ବିଚାରପତି ସହାନୁଭୂତି ପ୍ରକାଶ କରି ଲଘୁ ଦଣ୍ଡର ଆଦେଶ ଦେଇ ସମାଜପତିମାନଙ୍କ ଦୃଷ୍ଟି ଏ ସାମାଜିକ ଦୁର୍ଦ୍ଦଶା ପ୍ରତି ଆକର୍ଷଣ କରିଛନ୍ତି । ଖବରକାଗଜରେ ରାୟ ପ୍ରକାଶିତ ହେଉଛି । ସମସ୍ତେ ପଢୁଛନ୍ତି—କିନ୍ତୁ କାହାରି ହୃଦୟକୁ ଏ କରୁଣ ସ୍ଥିତି ସ୍ପର୍ଶ କରିପାରୁ ନାହିଁ । ସମ୍ବାଦପତ୍ରରେ ବାହାରିଛି—ଗୋଟିଏ କେସ୍‌ରେ ତିନିଜଣ ଝିଅଙ୍କୁ ପୋଲିସ୍ ଥାନାରେ ପ୍ରାୟ ସାତଦିନ ଅଟକାଇ ରଖି ତା'ପରେ ବିଚାର ପାଇଁ ଚାଲାଣ କଲେ । ମାଜିଷ୍ଟ୍ରେଟ୍ ବିରକ୍ତ ହୋଇ ରାୟରେ ଲେଖିଛନ୍ତି, ଅସାମାଜିକ କାର୍ଯ୍ୟରୁ ନିବର୍ତ୍ତେଇବା ଲାଗି ଯେଉଁ ପୋଲିସ୍ ଅଫିସର ଓ କନେଷ୍ଟବଲମାନେ ଏ କନ୍ୟାମାନଙ୍କୁ

ଥାନାରେ ରଖିଲେ—ସେମାନେ ତ କେବେ ବ୍ରହ୍ମଚାରୀ ହୋଇ ନ ଥିବେ । ସେମାନଙ୍କର ତ କାମ ପିପାସା ତୃପ୍ତ କରିବାରେ ଏ ଝିଅମାନଙ୍କୁ ବ୍ୟବହାର କରିଥିବେ ଏହା ସହଜରେ ଅନୁମାନ କରାଯାଇପାରେ । ମାଜିଷ୍ଟ୍ରେଟ୍ ପୋଲିସ୍‌ର ତୀବ୍ର ନିନ୍ଦା କଲେ । ଏପରି ଅନେକ କେସ୍‌ରେ ମାଜିଷ୍ଟ୍ରେଟ୍ ଏପରିକି ହାଇକୋର୍ଟ ମଧ୍ୟ ପୋଲିସ୍‌କୁ ତୀବ୍ର ସମାଲୋଚନା କରୁଛନ୍ତି । କିନ୍ତୁ ସେ ସବୁ ସମ୍ବାଦପତ୍ରରେ ପଢ଼ିବାକୁ ଉପନ୍ୟାସ ପରି ଲାଗୁଛି । ପଢ଼ା ସରିଲେ ସେ ସମ୍ବାଦପତ୍ରକୁ ଟେବୁଲ୍ ଉପରକୁ ଫୋପାଡ଼ି ଦିଆହେଉଛି । ସମ୍ବାଦକୁ ଫୋପାଡ଼ି ଦିଆହେଉଛି ମନରୁ କାଢ଼ି । ଏକଦା ବିପ୍ଳବର ଦିଗ୍‌ଦର୍ଶକ ଭାବେ ବଙ୍ଗ ଯେଉଁ ଗୌରବ ଓ ଗର୍ବ ଅନୁଭବ କରୁଥିଲା; ଯେଉଁ ବଙ୍ଗଦେଶ ଶିକ୍ଷା ବିସ୍ତାରରେ ଅଗ୍ରଣୀ, ସେଠି ଏ ପ୍ରକାର ନୈତିକ ଅଧୋଗତି ଘଟିଛି ବୋଲି ଶରତ ଓ ବାଳକୃଷ୍ଣଙ୍କର ଧାରଣା ନ ଥିଲା । ପଶ୍ଚିମବଙ୍ଗ ତୁଳନାରେ ଯେ ଓଡ଼ିଶା ବହୁଗୁଣ ଉଚ୍ଚ ନୈତିକ ସ୍ତରରେ ଅଛି, ଏହା ସେମାନେ ଅନୁଭବ କଲେ । ଏ ଅନୁଭବ ସଙ୍ଗେ ସଙ୍ଗେ ସେମାନଙ୍କ ନିଜ ମନ ମଧ୍ୟ ଅବସନ୍ନ ହୋଇଯାଉଥାଏ ।

•

ସେଉଦିନ ହୋଟେଲରେ ନିଜ ରୁମ୍‌ରେ ବସି ସକାଳବେଳା ପଶ୍ଚିମବଙ୍ଗର ସ୍ଥିତି ବିଷୟ ଆଲୋଚନା କରୁଥାନ୍ତି । ଏ ସମୟରେ ଶଶୀବାବୁ 'ନମସ୍କାର', 'ନମସ୍କାର' କହି ଘର ଭିତରକୁ ପଶି ଆସିଲେ । ଚୌକୀରେ ବସିପଡ଼ି କହିଲେ—"ଆମ ଫାର୍ମର ଜଣେ କର୍ମଚାରୀ ଏଠି ସ୍ଥାୟୀ ଭାବରେ ରହନ୍ତି—ସେ ବେମାର । ତାକୁ ଦେଖିବା ପାଇଁ ମୁଁ ପ୍ରତିଦିନ ଆସୁଛି । ସେଇ ଯାହା ପ୍ରଥମ ଦିନ ଦେଖା ହୋଇଥିଲା । ଆଉ ଏ କେତେ ଦିନ ହେଲା ଆପଣମାନଙ୍କୁ ଦେଖୁନାହିଁ । ଯେତେବେଳେ ଆସେ ରୁମ୍ ବନ୍ଦ । ମୋତେ କାହିଁକି କାର୍ କଥା କେବେ ତ କହିଲେ ନାହିଁ । ବୋଧହୁଏ ମୋତେ ବିଶ୍ୱାସ କଲେ ନାହିଁ ।" କହିଦେଇ ହସିଲେ । ପାଖରେ ବସିଥିଲେ ବାଳକୃଷ୍ଣ । ତାଙ୍କ ପିଠିରେ ଚାପୁଡ଼ାଏ ମାରିଲେ । ବାଳକୃଷ୍ଣ ହସି ହସି କହିଲେ, ନାଁ, ଆମେ ଆପଣଙ୍କୁ କଷ୍ଟ ଦେବାକୁ ଅସୁବିଧାରେ ପକାଇବାକୁ ଚାହିଁଲୁ ନାହିଁ । ଚାଲିଗଲୁ ଯୋଧପୁର ଦାସଗୁପ୍ତଙ୍କଠାକୁ ।"

ଶଶୀବାବୁ—"ଆଚ୍ଛା, କଅଣ କହିଲେ ସେ ?"

ବାଳକୃଷ୍ଣ—"ସେ ତ ଆମକୁ ଯାହା କହିଲେ ସେଥିରେ ମୋର ମନେ ହେଲା ସେ ଏ ଜୀବନରେ ପରିସ୍ଥିତିର ପରିବର୍ତ୍ତନ କଳ୍ପନା କରିପାରୁ ନାହାନ୍ତି । ପରିବର୍ତ୍ତନ ପାଇଁ ଯୁଗ ଯୁଗ ଅପେକ୍ଷା କରିବାକୁ ହେବ । ଇତିମଧ୍ୟରେ ବଂଗୀୟ ବିପ୍ଳବୀମାନେ ଯେପରି ଯୋଗ ସାଧନାରେ ନିମଗ୍ନ ନ ହେବେ ସେହି ପରାମର୍ଶ ଦାସଗୁପ୍ତ ଦେଲେ । ଧୀରସ୍ଥିର ଭାବରେ ଚରଖା, ଅସ୍ପୃଶ୍ୟତା ନିବାରଣ ଆଦି କାର୍ଯ୍ୟ କରିବାକୁ ହେବ ।" ଏହି କଥାକୁ ବାଳକୃଷ୍ଣ ଯେପରି ସ୍ୱର ଓ ମୁଖଭଙ୍ଗୀରେ କହିଲେ—ସେଥିରେ ଯେ ଶ୍ଳେଷ ଥିଲା, ତା' ବୁଝିବାକୁ ଶଶୀବାବୁଙ୍କର ବାକି ରହିଲା ନାହିଁ । ସେ ହସିଲେ, ପଚାରିଲେ ଆଉ କେଉଁଠିକି ସେମାନେ ଯାଇଥିଲେ । ଶରତ ବ୍ୟଗ୍ର ହୋଇ ପଚାରିଲେ ସେ ସନ୍ନ୍ୟାସୀଙ୍କ କଥା । କାଳିଘାଟ ପାଖରେ ସେ ରହନ୍ତି, ବହୁତ ଭିଡ଼ । ସନ୍ନ୍ୟାସୀଙ୍କୁ ଲୋକେ ମନେ କରୁଛନ୍ତି ସ୍ୱଭାଷ ବୋଷ । ହୁଏତ ସେ ହୋଇଥିବେ । ଏ କଥା ଶୁଣି ଶଶୀବାବୁ ହସି ହସି ଗଡ଼ିଗଲେ । ଚୌକୀ ଉପରୁ ଖସିଟି ପଡ଼ିଥାନ୍ତେ । ଶରତ ଓ ବାଳକୃଷ୍ଣ ନିଜକୁ ନିର୍ବୋଧ ବୋଲି ମନେ କରି ଲଜ୍ଜିତ ଅନୁଭବ କଲେ । ଶଶୀବାବୁ କହିବାରେ ଲାଗିଲେ, "କଲିକତାରେ ଯେ କୌଣସି ଗଳି ଭିତରକୁ ଯାଅ, ଜଣେ ବା କେତେଜଣ ସନ୍ନ୍ୟାସୀ ବେଶରେ ଦେଖିବ । ଗମ୍ଭୀର ହୋଇ ବସି କେହି ଯୋଗ ଶିକ୍ଷା ଦେଉଛନ୍ତି । କେହି କେହି ନାମକୀର୍ତ୍ତନ କରୁଛନ୍ତି । କେହି ରାଜନୀତି ଚର୍ଚ୍ଚା ମଧ୍ୟ କରୁଛନ୍ତି । ରାଜନୀତି ଚର୍ଚ୍ଚା କରୁଥିବା ସନ୍ନ୍ୟାସୀମାନଙ୍କ ପାଖକୁ ଛାତ୍ରମାନେ ବେଶୀ ଯାଉଥାନ୍ତି ଏବଂ ସେହିମାନେ କାହାକୁ କାହାକୁ ସ୍ୱଭାଷ ବୋଷ ବୋଲି ମନେ କରନ୍ତି । ଏ ସବୁ ବାଜେ କଥା । ଜୀବିକାର୍ଜ୍ଜନର ଏକ କୌଶଳ । ଅକର୍ମା ଅନ୍ଧବିଶ୍ୱାସୀଙ୍କ ସଂଖ୍ୟା ଯେତେ ବେଶୀ ହେଉଛି ତଦନୁସାରେ ତଥାକଥିତ ସନ୍ନ୍ୟାସୀଙ୍କ ସଂଖ୍ୟା ବଢ଼ି ବଢ଼ି ଚାଲିଛି । କଲିକତାରେ ବର୍ତ୍ତମାନ ଯେଉଁ ପରିସ୍ଥିତି ସେଥିରେ ସେପରି ସନ୍ନ୍ୟାସୀଙ୍କ କଥାରେ ଅନ୍ତତଃ କ୍ଷଣିକ ଆନନ୍ଦ ଉପଭୋଗ କରିବା ପାଇଁ ବହୁ ଯୁବକ ଛାତ୍ର ସେମାନଙ୍କଠାରେ ଜୁଟନ୍ତି । ଆପଣମାନେ ସେଠିକି ଗଲେ କିପରି ?"

ସଫେଇ ଦେଲେ ବାଳକୃଷ୍ଣ–'ନାଁ, ଆମେ ସେଠିକି ଜାଣିଶୁଣି ଯାଇ ନ ଥିଲୁ ଯେ, ସେଠାକୁ ଏକ ଶ୍ରମିକ ସଙ୍ଘକୁ ଯିବାର ଦେଖିଲୁ । ବଡ଼ ଭିଡ଼ । ଭିତରକୁ ଯାଇ ଦେଖିଲୁ ଏକ ସନ୍ନ୍ୟାସୀ ବସିଛନ୍ତି । ଦୂରକୁ ସୁଭାଷ ବୋଷଙ୍କ ଚେହେରା ପରି ଦେଖାଯାଉଛି । ଗଲୁ କୌତୂହଳବଶତଃ– ଦେଖାକରି ଚାଲି ଆସିଲୁ । ସେ କିଛି ନୁହେଁ । ଛାଡ଼ନ୍ତୁ ସେ କଥା । ଇତିମଧ୍ୟରେ ଆମେ ଛାତ୍ର ମହଲ, ଶ୍ରମିକ ମହଲ ଭିତରେ ପଶିଲୁ । କେଉଁଠି ତ ଆମେ ଦେଶର ସମସ୍ୟା ସମ୍ବନ୍ଧରେ ଆଲୋଚନା ଶୁଣିବାକୁ ପାଇଲୁ ନାହିଁ । ସବୁ ଶ୍ରେଣୀ ତ ନିଜ ନିଜ ସ୍ୱାର୍ଥ ନେଇ ଏତେ ବ୍ୟସ୍ତ, ମନେ ହେଉ ଯେପରି ଦେଶ ପରାଧୀନ ହୋଇଯାଉପଛକେ ମାନ ସମ୍ମାନ ଚଲିକୁ ପଡ଼ିଯାଉ ପଛକେ ନିଜ ସ୍ୱାର୍ଥସିଦ୍ଧି ହେଲେ ତ ହେଲା । ଏହିପରି ମନୋବୃତ୍ତି । ବରଂ ତ ଆମ ଓଡ଼ିଶା ଏହାଠାରୁ ଭଲ । ଆମେ ଆସିଥିଲୁ କଲିକତାରୁ କିଛି ପ୍ରେରଣା ନେଇ ଯିବୁ ବୋଲି–କିନ୍ତୁ......ଶଶୀବାବୁ ଗମ୍ଭୀର ହୋଇ କିଛିକ୍ଷଣ ନୀରବ ରହି ଧୀରେ ଧୀରେ କହିଲେ–"ଦେଖନ୍ତୁ, କଲିକତା ବା ବଙ୍ଗ ଏକ ସମୟରେ ସମଗ୍ର ଦେଶକୁ ପ୍ରେରଣା ଯୋଗାଇ ଥିଲା। ତା'ର ଇତି ହୋଇଗଲା କମ୍ୟୁନିଷ୍ଟମାନଙ୍କ ଉଦ୍‌ଭବ ପରେ । ପ୍ରଥମେ କମ୍ୟୁନିଷ୍ଟମାନେ ଜାଲରେ ପକାଇଲେ ପୂର୍ବତନ ବିପ୍ଳବୀମାନଙ୍କୁ । ମାର୍କସ୍‌ଙ୍କ ନାମରେ ଚାଲିଲା ହିଂସାକାଣ୍ଡ । ତା'ପରେ ରୁଷିଆର ନିର୍ଦ୍ଦେଶରେ ଏମାନେ ପାର୍ଲାମେଣ୍ଟାରି ପଲିଟିକ୍‌ସରେ ପଶିଲେ । କ୍ରମେ ଏମାନେ ପୋଷା ମାନିଗଲେ । ଏମାନଙ୍କ ଭିତରୁ ବାହାରିଲେ ବାମପନ୍ଥୀ କମ୍ୟୁନିଷ୍ଟ ଦଳ । ଏମାନେ ମାର୍କସ୍‌ଙ୍କ ନାମରେ ସେହି ପୂର୍ବର ହିଂସାତ୍ମକ ଆନ୍ଦୋଳନ ଚଳାଇଲେ । ପୁଣି ଏମାନେ ଯେତେବେଳେ ପାର୍ଲାମେଣ୍ଟାରି ପଲିଟିକ୍‌ସରେ ପଶି କ୍ଷମତା ଆସ୍ୱାଦନ କଲେ, ଏମାନଙ୍କ ଭିତରୁ ଦଳେ ବାହାରିଲେ ନିଜକୁ ନକ୍‌ସଲାଇଟ୍ ବୋଲି କହି । ଏମାନଙ୍କ ହିଂସାକାଣ୍ଡ ଏପରି ପ୍ରବଳ ହେଲା କଲିକତାରେ କେହି ନିରାପଦରେ ପାଦରେ, ମଟରରେ ବା ଟ୍ରାମ ବା ବସ୍‌ରେ ଯାତାୟତ କରିପାରିଲେ ନାହିଁ । ରାଜନୈତିକ ନେତା, ଭାଇସ୍ ଚାନ୍‌ସେଲର୍, ପ୍ରଫେସର୍, ପୋଲିସ୍ ଅଫିସର୍ ଏମାନଙ୍କ ଶିକାର ହେଲେ । ପୁଣି ଏମାନେ ସୁଦୂର ଆଦିବାସୀ ଅଞ୍ଚଳରେ ନିରୀହ ଆଦିବାସୀମାନଙ୍କୁ ଭୁଲାଇ ହତ୍ୟାର କାର୍ଯ୍ୟକ୍ରମ ଚଳାଇ ଶାସନ ପରିବର୍ତ୍ତନର ପରିକଳ୍ପନା

କଲେ । ଏମାନେ ଚୀନ୍‌ରେ ମାଓ-ସେ-ତୁଙ୍ଗଙ୍କ କାର୍ଯ୍ୟପନ୍ଥା ଅନୁସରଣ କରୁଛନ୍ତି ବୋଲି କହିଲେ । କିନ୍ତୁ ଚୀନ୍‌ର ତତ୍କାଳୀନ ପରିସ୍ଥିତିଠାରୁ ଭାରତର ପରିସ୍ଥିତି ଯେ ସମ୍ପୂର୍ଣ୍ଣ ଭିନ୍ନ ଏହି ସାମାନ୍ୟ କଥା ସେମାନଙ୍କ ମସ୍ତିଷ୍କରେ ପ୍ରବେଶ କଲା ନାହିଁ । ଏମାନଙ୍କ ହିଂସା ତୁଳନାରେ ଶାସନର ହିଂସା ସହସ୍ର ଗୁଣେ ଅଧିକ । ଏମାନଙ୍କୁ ନିର୍ମୂଳ କରିବା ପାଇଁ କଲିକତାରେ ଶାସନ ପକ୍ଷରୁ ଯେଉଁ ନିର୍ମମ ହତ୍ୟାକାଣ୍ଡ ଚାଲିଲା, ତାହା ଶୁଣିଲେ ଲୋମ ଟାଙ୍କୁରି ଉଠିବ । ରାସ୍ତା ଟୋକାମାନଙ୍କୁ ଧାଡ଼ି କରି ଛିଡ଼ା କରାଇ ଗୁଳି କରି ମାରି ଦିଆହେଲା । ଜେଲ୍ ଭିତରେ ମଧ୍ୟ ବହୁ ଲୋକଙ୍କୁ ଗୁଳି କରି ମାରି ଦିଆ ହେଲା । ଏହାର ପରିଣତି ହେଲା କଲିକତାର ପଶ୍ଚିମବଙ୍ଗର ବିପ୍ଳବର ସ୍ୱପ୍ନ ଦେଖୁଥିବା ଗୋଟିଏ ପୁରୁଷ ନଷ୍ଟ ହୋଇଗଲା । ରହିଗଲେ ଉପରେ ଗୁଡ଼ିଏ ବୟସ୍କ ଲୋକ । ଯେଉଁମାନେ କାଳକ୍ରମେ ଚାଲିଗଲେ; ଆଉ ରହିଗଲେ 'ଧାମାଧରା' ଅନେକ ଯେଉଁମାନଙ୍କ ଆଦର୍ଶ ହେଲା ସମ୍ଭୋଗ, ଦେଶର ଅବସ୍ଥା ଯାହାହେଉ ପଛକେ । ହିଂସାତ୍ମକ ଆନ୍ଦୋଳନର ଏହି ହୋଇଛି ପରିଣତି । କଲିକତା ମ୍ରିୟମାଣ, କଲିକତା ନିର୍ଜୀବ । ଆସନ୍ତା କୋଡ଼ିଏ ପଚିଶ ବର୍ଷ ଭିତରେ କଲିକତା କୌଣସି ଆଦର୍ଶ ପ୍ରେରଣା ପାଇବ ନାହିଁ କି ଦେଇ ପାରିବ ନାହିଁ । ପୁଣି ଏକ ନୂଆ ପୁରୁଷ ଉଠି ଆସିଲେ ଯାହା ହେବ ।" ଏହା କହୁ କହୁ ଶଶୀବାବୁ ଏତେ ବିମର୍ଷ ଭାବ ପ୍ରକାଶ କରୁଥାନ୍ତି ଯେ ତାଙ୍କ ଆଖି ଛଳ ଛଳ ହୋଇ ଆସୁଥାଏ । କଲିକତାର ଅବସ୍ଥା ଶୁଣି ଶରତ ଓ ବାଳକୃଷ୍ଣଙ୍କ ଆଖି ଓ ଚେହେରା ମନର ଭାବକୁ ଲୁଚାଇ ରଖି ପାରିଲା ନାହିଁ । କିଛିକ୍ଷଣ ନୀରବ ରହି ପୁନର୍ବାର ଶଶୀବାବୁ କହିଲେ—

"ମୋର ଜୀବନ କଥା ଭାବିଲେ ମୁଁ ମଧ୍ୟ ମନ ଭିତରେ ଘୋର ଅଶାନ୍ତି ଅନୁଭବ କରେ । ତେଣୁ ସେ ଚିନ୍ତା ନ କରିବାକୁ ମୁଁ ଅନ୍ୟ କାମରେ ସବୁବେଳେ ଲାଗିଥାଏ । ସମୟ ଆସେ ଯେତେବେଳେ କୁଆଡୁ କିଛି କରି ହୁଏ ନାହିଁ । ମନକୁ ସଂଯତ କରି କୌଣସି ପ୍ରକାରେ କାଳ କଟାଇବାକୁ ହୁଏ । ମୋଠାରୁ ଆପଣମାନେ ତ ବେଶୀ ବୟସ । ଆଉ ଏ ସମୟରେ ମନକୁ ଅସ୍ଥିର କରି କିଛି ଲାଭ ନାହିଁ । ମାନସିକ ଶାନ୍ତି ପାଇଁ କୌଣସି ନା କୌଣସି କାର୍ଯ୍ୟରେ ଲାଗି ଯାଆନ୍ତୁ । ଯଦି ଚାହାନ୍ତି ଏଇ କଲିକତାରେ ମୁଁ କୌଣସି ଫାର୍ମରେ କିଛି କାମର ବ୍ୟବସ୍ଥା କରିଦେଇ ପାରିବି ।" ଏକଥା

ଛାତିରେ ପଥର ବାଜିଲା ପରି ବାଳକୃଷ୍ଣଙ୍କ ମନେ ହେଲା । ସେ ମୁହଁ ଛାଟିଦେଇ କିଛି କହିପାରିଲେ ନାହିଁ । ଶରତଙ୍କ ମନର ବିକାର ବାହାରକୁ ଜଣା ପଡ଼ିଲା ନାହିଁ ।

କଥା ବଦଳାଇ ଦେଇ ଶଶୀବାବୁ ଅନ୍ୟ ସବୁ କଥାପ୍ରସଙ୍ଗ ଆରମ୍ଭ କଲେ । ଓଡିଶାନ୍ଦରେ ତାଙ୍କର ଛାତ୍ର ଜୀବନର ବନ୍ଧୁମାନଙ୍କ କଥା, ପୁରୀ କୋଣାର୍କ ଇତ୍ୟାଦି ବହୁ ପ୍ରସଙ୍ଗ ସେ ଉତ୍‌ଥାପନ କଲେ । ଏଥିରେ ଶରତହିଁ ଏକା ଯୋଗ ଦେଇଥାଆନ୍ତି । ବାଳକୃଷ୍ଣ କେବଳ ଶୁଣୁଥାନ୍ତି । ମଝିରେ ମଝିରେ ଗୋଟିଏ ବା ଦିଓଟି ଶବ୍ଦ ଉଚ୍ଚାରଣ କରୁଥାଆନ୍ତି । ତାଙ୍କ ମନ ଭିତରେ ଯେ ଏକ ପ୍ରବଳ ଝଡ଼ ବହୁଛି ଏହା ସ୍ପଷ୍ଟ ଜଣାପଡୁଥାଏ । କିଛିକ୍ଷଣ-ପରେ ବରଦ ଦିଆଯାଇଥିବା ଚା' ଆସିଗଲା । ଚା' ପିଇସାରି ହସି ଉଠିଲେ ଶଶୀବାବୁ—"ଯାଉଛି ମୋ କାମକୁ, ଆଉ କେତେ ଦିନ ରହିବେ ଏଠି ?" ହଠାତ୍ ବାଳକୃଷ୍ଣ ଉତ୍ତର ଦେଲେ, "ଆଉ ଏଠି ରହି ଲାଭ କ'ଣ ? ଆମେ ଆଜି ଚାଲିଯିବୁ ।" ଶଶୀବାବୁ ଆଉ କିଛିଦିନ ରହିଯିବାପାଇଁ ଅନୁରୋଧ କଲେ । ତାଙ୍କ ଫାର୍ମକୁ ଥରେ ବୁଲିଯିବା ପାଇଁ କହିଲେ । "ନାଁ। ଆଉ ଏଠି ଭଲ ଲାଗୁନି" ବୋଲି କହି ଶଶୀବାବୁଙ୍କୁ ବିଦାୟ ଦେଲେ ।

—୧୨—

ଶଶୀବାବୁ ଯେପରି ଭାବରେ ଉଡ଼େଇ ଦେଲା ପରି ସବୁ କଥା କହିଲେ ସେଥିରେ ତାଙ୍କର ସବୁକଥା ଯେ ମାନିନେବାକୁ ହେବ ଏପରି ବାଳକୃଷ୍ଣ ମନେ କଲେ ନାହିଁ । ବିଶେଷତଃ କାଳିଘାଟର ସନ୍ନ୍ୟାସୀ ସମ୍ବନ୍ଧରେ ସେ ଯାହା କହିଲେ, ସେଥିରେ ଶରତର ମନ ଆଦୌ ମାନିଲା ନାହିଁ । ସେ ସୁଭାଷ ବୋଷ୍ ପଛେ ନ ହୁଅନ୍ତୁ, ସେ ଯେ ଜଣେ ଯଥାର୍ଥ ସନ୍ନ୍ୟାସୀ ଏଥିରେ ସନ୍ଦେହ ନାହିଁ । ସୁଭାଷ ବୋଷ୍ ଜୀବିତ ଅଛନ୍ତି ବୋଲି ଯେଉଁମାନେ ବିଶ୍ୱାସ କରନ୍ତି ଓ ତଦନୁସାରେ ପ୍ରଚାର ଚଳାଇଛନ୍ତି, ସେହିମାନେ ହୁଏତ ତାଙ୍କୁ 'ସୁଭାଷ ବୋଷ୍ ବୋଲି ଆଖ୍ୟା ଦେଉଥିବେ । କିନ୍ତୁ ସନ୍ନ୍ୟାସୀଙ୍କ ଚେହେରା ଓ କଥାରେ ଆନ୍ତରିକତା ପରିସ୍ଫୁଟ ହେଉଥିଲା । ଜଗଦୀଶ୍ ଅଛନ୍ତି ବୋଲି ତ ସେ କହିଛନ୍ତି । ବରଂ ସେଠିକି ଗଲେ ସତ୍ୟାସତ୍ୟ ସବୁ ଜଣା

ପଡ଼ିଯିବ । ଏଇଥିରେ ସନ୍ୟାସୀଙ୍କ ଆଲୋଚନା ଶେଷ ହେଲା । ସଙ୍ଗେ ସଙ୍ଗେ ଶଶୀବାବୁଙ୍କ କଥା ସବୁ ମଧ୍ୟ ମନରୁ ଗୁଲିଗଲା । କିନ୍ତୁ କଲିକତାରେ ସକ୍ରିୟ ରାଜନୈତିକ ଜୀବନ ଯେ ମ୍ରିୟମାଣ ଏଥିରେ ସନ୍ଦେହ ରହିଲା ନାହିଁ । କଲିକତାରୁ ବା ବଙ୍ଗପ୍ରଦେଶରୁ ପ୍ରେରଣା ମିଳିବାର ଆଶା ଉଭେଇ ଗଲା । ଓଡ଼ିଶାକୁ ଫେରି ସେଇଠି ପରିସ୍ଥିତିକୁ ବିଗ୍ୱର କରି ଗଭୀର ଚିନ୍ତା କରି ଯା' କିଛି କରିବାକୁ ହେବ ଏହି ହେଲା ସିଦ୍ଧାନ୍ତ । କଲିକତାରେ ରହଣି ଶେଷ କରି ଓଡ଼ିଶା ଫେରିଲେ ବନ୍ଧୁଦ୍ୱୟ । ଅସ୍ଥିର ମନ, କାହିଁକି ଯେ ଅସ୍ଥିର ତା' ମଧ୍ୟ ଭାବି ନିର୍ଣ୍ଣୟ କରିବା ପାଇଁ ସ୍ଥିରତା ନାହିଁ । ଅସ୍ଥିରତାର କାରଣ ଜାଣିପାରିଲେ ସ୍ଥିରତା ଆସିପାରନ୍ତା । ତା' ହେଉନାହିଁ । କଟକରେ ନ ରହି ସେମାନେ ଯାଇ ରହିଲେ ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରିଠି, ଯେଉଁଠି ଯୁବ ପର୍ଯ୍ୟଟକମାନଙ୍କ ପାଇଁ ଆବାସ ରହିଛି, ସେଇଠି । ଏକ ଦିଗରେ ଘନ ଅରଣ୍ୟ, ସମ୍ମୁଖରେ ଖାରବେଳଙ୍କ ସମୟର ଜୈନ ଗୁମ୍ଫାମାନ—ସେ ଅତୀତ ଇତିହାସ ପାଖକୁ ମାଡ଼ିଗ୍ୱଲିଛି ନବ ଯୌବନରେ ଉନ୍ମତ୍ତ ଭୁବନେଶ୍ୱର ରାଜଧାନୀ । ଅଳ୍ପ କେତୋଟି ଦୋକାନ ଅଛି । କ୍ରମେ ସ୍ଥାନଟି ସହରରେ ପରିଣତ ହେବାକୁ ଯାଉଛି । କିନ୍ତୁ ସ୍ୱଶ୍ୟାମଳ ବନରାଜିକୁ ଗ୍ୱହିଁଦେଲେ ଏବଂ ଗୁମ୍ଫାମାନଙ୍କ କଥା ମନକୁ ନେଲେ ଅନ୍ତତଃ ଅଳ୍ପ ସମୟ ପାଇଁ ମନ ଗ୍ୱଲିଯାଏ ଅନ୍ତର ମଧ୍ୟକୁ ଜୀବନର ରହସ୍ୟ ଭେଦ କରିବା ପାଇଁ । ଏହି ପରିବେଶରେ ଶରତ ଓ ବାଳକୃଷ୍ଣ ଯାଇ ରହିଲେ । ବିଭିନ୍ନ ପ୍ରଦେଶରୁ ଆସିଥିବା କେତେ ଜଣ ଯୁବ ପର୍ଯ୍ୟଟକ ମଧ୍ୟ ସେଠାରେ ଥାଆନ୍ତି । ସେମାନଙ୍କ ଜୀବନର ଢ଼ଙ୍ଗ ଦେଖି, ଏ ପ୍ରୌଢ଼ ବନ୍ଧୁଦ୍ୱୟ ଭାବୁଥାନ୍ତି ଦେଶ ଯାଉଛି କୁଆଡ଼େ ? ଶରୀରର କୌଣସି ଅଙ୍ଗରେ କିଛିହେଲେ ସଂଯମ ନାହିଁ । ସାଧାରଣ ପାନୀୟ ହିସାବରେ ଉତ୍କୃଷ୍ଟ ମଦ୍ୟର ବ୍ୟବହାର । ଯୁବ ସଂଗଠନରେ ଯୋଗ ଦେଉଥିବା ଯୁବତୀମାନଙ୍କ ସହିତ ନିଃସଂକୋଚରେ ଶରୀର ମିଳନ । ଖାଦ୍ୟ ବିଷୟରେ ତ ସ୍ୱାସ୍ଥ୍ୟ ପ୍ରତି ଚରମ ନିର୍ଦ୍ଦୟତା । ଯେପରି ଜିହ୍ୱାର ତୃପ୍ତି ପାଇଁ ଶରୀର ସୃଷ୍ଟି ହୋଇଛି !! ଏ ପ୍ରକାର ଅସଂଯତ ଯୁବକମାନଙ୍କ ମେଳରେ ଶରତ, ବାଳକୃଷ୍ଣ କେବେ ପୂର୍ବେ ରହି ନ ଥିଲେ । ଶୁଣିଥିଲେ ଆଧୁନିକ ଯୁବଜୀବନର ବିଶୃଙ୍ଖଳ ବିବରଣୀ । କିନ୍ତୁ ସେ ବିଶୃଙ୍ଖଳାର ନଗ୍ନ ରୂପ ଦେଖି ଏମାନେ ତ ନିଜକୁ ନିଜେ ବିଶ୍ୱାସ କରିପାରୁ ନ ଥାନ୍ତି । ଦେଶର ପରିସ୍ଥିତିର ପରିବର୍ତ୍ତନ ତ

ଏହି ଯୁବକମାନଙ୍କ ମାଧ୍ୟମରେ ସାଧିତ ହେବ !!! ଏମାନଙ୍କର ତ ଏ ଅବସ୍ଥା—ଏମାନେ ତ ଖୁହୁଁଥିବେ ପରିବର୍ତ୍ତନର ଗତି ହେଉ ଏହିମାନଙ୍କ ସ୍ୱେଚ୍ଛାଚାରର ଦିଗକୁ । ସମାଜରେ ସ୍ୱେଚ୍ଛାଚାର, ଶାସନରେ ସ୍ୱେଚ୍ଛାଚାର ବିଚାରଧାରରେ ସ୍ୱେଚ୍ଛାଚାର ଏହି ତ ହେଉଛି ପରିବର୍ତ୍ତନ ପାଇଁ ଉଦ୍ୟମ କରିବାର କାରଣ । କିନ୍ତୁ ପରିବର୍ତ୍ତନ କରିବେ ଯେଉଁମାନେ ସେମାନେ ତ ସ୍ୱେଚ୍ଛାଚାର ବ୍ରତୀ । 'କାହାପାଇଁ ପରିବର୍ତ୍ତନ କିଏ ସାଧନ କରିବ ?' ଏ ପ୍ରଶ୍ନ ଶରତଙ୍କ ମନକୁ ଗଭୀର ଭାବେ ଆଲୋଡ଼ିତ କଲା । ସେ ବାଳକୃଷ୍ଣଙ୍କ ସହିତ ଆଲୋଚନା କଲେ । ବାଳକୃଷ୍ଣ ମଧ୍ୟ ଅବସ୍ଥାର ଗୁରୁତ୍ୱ ଉପଲବ୍ଧ କରୁଥାନ୍ତି । ଦୁହେଁ ସ୍ଥିର କଲେ ଯୁବକମାନଙ୍କ ସହିତ ଥରେ କଥାବାର୍ତ୍ତା କରି ସେମାନଙ୍କ ମନର ଗତି ଜାଣିବେ ।

ସନ୍ଧ୍ୟାବେଳ—ଡାକବଙ୍ଗଳା ସାମନା ଖୋଲା ପଡ଼ିଆରେ ଆଠ ଦଶଟି ଚୌକି ପଡ଼ିଛି । ମଝିରେ ତିନି ଚାରଟି ଟିପୟ ଅଛି । ଟିପୟ ଉପରେ ବୋତଲ ଓ ଗ୍ଲାସ ଅଛି । ଚାଲିଛି ସିନେମା ସଙ୍ଗୀତ । ଯୁବକ ଯୁବତୀ ସମସ୍ତେ ସେ ସଙ୍ଗୀତର ତାନରେ ତନ୍ମୟ ଓ ମଝିରେ ମଝିରେ ତାନ୍ ଅନୁସାରେ ମୁଦ୍ରା ମଧ୍ୟ ପ୍ରଦର୍ଶିତ ହେଉଥାଏ । ଏ ଗୋଷ୍ଠୀ ମଧ୍ୟରେ ଅଛନ୍ତି ବଙ୍ଗ, ବିହାର, ଆସାମ ଓ ଓଡ଼ିଶାର ଯୁବକ ଯୁବତୀବୃନ୍ଦ । ଆସିଛନ୍ତି ଭୁବନେଶ୍ୱର, ପୁରୀ, କୋଣାର୍କ ପରିଦର୍ଶନ କରିବେ । କିଛିକାଳ ସହାବସ୍ଥାନ ଫଳରେ ପରସ୍ପର ମୈତ୍ରୀ ସ୍ଥାପନ ଦ୍ୱାରା ପ୍ରାଦେଶିକ ଭାବବୈଷମ୍ୟ ଦୂରୀଭୂତ ହେବ, ଜାତୀୟ ସଂହତି ସାଧିତ ହେବ—ଉଦ୍ଦେଶ୍ୟ ମହତ୍ ଏଥିରେ ସନ୍ଦେହ ନାହିଁ । ହୁଏତ ଏମାନେ ଯୌବନର ପ୍ରଥମ ପାଦରେ ଏପରି ବିଶୃଙ୍ଖଳ, କ୍ରମେ ତା' ଦୂର ହୋଇଯିବ—ଏଥିପାଇଁ ଆବଶ୍ୟକ ସତ୍ ପରାମର୍ଶ—ଏହା ହିଁ ମନେକରି ବାଳକୃଷ୍ଣ ଆଗେଇ ଗଲେ ସେ ଯୁବଗୋଷ୍ଠୀ ମଧ୍ୟକୁ । ଶରତ ମଧ୍ୟ ସାଙ୍ଗରେ ଗଲେ । କେହି ଏମାନଙ୍କୁ ବସିବା ପାଇଁ ତ କହିଲେ ନାହିଁ—ବରଂ ଜଣେ ଦୁଇଜଣ ଉତ୍ତ୍ୟକ୍ତ ହୋଇ କହିଲେ—"ଏଠି ଆପଣମାନଙ୍କ କାମ କଅଣ ? ଆମେ ଟିକିଏ ମୁକ୍ତ ଭାବରେ ବସିଛୁ । ଅନାହୂତ ହୋଇ ଏଠି କ ହିଁକି ଆସି ଛିଡ଼ା ହେଲେ—ଯାଆନ୍ତୁ ଆପଣମାନେ ନିଜ କାମରେ । ଭାବିଲେ ନାମ କହିଦେଲେ ହୁଏତ ଏମାନେ ଟିକିଏ ସମ୍ମାନ ଦେଖାଇବେ ।

କାରଣ ଶରତ ଯେତେ ନୁହଁନ୍ତି, ବାଳକୃଷ୍ଣ ଓଡ଼ିଶାରେ ସୁପରିଚିତ । ଶରତ ଅଳ୍ପ ହସି କହିଲେ, "ଏ ବାଳକୃଷ୍ଣ ବାବୁ ଆସିଛନ୍ତି, କଥାବାର୍ତ୍ତା ହେବା ପାଇଁ ।" ଯୁବକମାନଙ୍କ ଭିତରୁ ଜଣେ କହିଲେ, "କିଏ ବାଳକୃଷ୍ଣ ବାବୁ ଆମେ ଜାଣୁ ନାହିଁ । ଆମେ ଏଠି ଟିକେ ଚିତ୍ତ ବିନୋଦନ କରୁଛୁ । ଏଇଠି ଆସି ଦେଖା କରିବା କ'ଣ ଠିକ ?" କିନ୍ତୁ ଓଡ଼ିଶାର ଯୁବକ ଜଣକ ତାଙ୍କୁ ଟିପି ଦେଇ ଚୁପ୍ ଚୁପ୍ କହିଲେ, "ସେ ଜଣେ ସ୍ୱାଧୀନତା ସଂଗ୍ରାମୀ–ମାନ୍ୟଗଣ୍ୟ ବ୍ୟକ୍ତି ।" ଏ କଥା ଶୁଣି ଅନ୍ୟ ଜଣକ ଉତ୍‌କ୍ଷିପ୍ତ ହୋଇ କହିଲେ, "ସ୍ୱାଧୀନତା ସଂଗ୍ରାମ ତ ସରିଲଣି କେଉଁ କାଳରୁ–ସେହି ସଂଗ୍ରାମ ନାଁକୁ ବିକି ଆଉ କେତେ କାଳ ଏ ବୃଦ୍ଧମାନେ ଚଳିବେ ? ସେ ମୁଦ୍ରା ଅଚଳ ହୋଇଗଲଣି । ଯାଆନ୍ତୁ ଆପଣମାନେ, ପରେ ଆସିବେ ।" ଆଉ ଜଣେ ଯୁବତୀ ହସି ହସି କହିଲେ–"ବିନୋବାଜୀ ପରା କହିଛନ୍ତି ପଞ୍ଚଷଠୀ ବର୍ଷ ପରେ ସମସ୍ତେ ହରିନାମ ପ୍ରଚାର କରିବା ଉଚିତ୍–ଆଉ ସେମାନଙ୍କ ପକ୍ଷରେ ରାଜନୀତି କରିବା ଉଚିତ ନୁହେଁ ।" ଏହି ଖିଅଟି ପାଇ ବାଳକୃଷ୍ଣ ଛିଡ଼ା ଛିଡ଼ା କଥା ଆରମ୍ଭ କରିଦେଲେ, "ଆପଣମାନେ ବିନୋବାଜୀଙ୍କୁ ମାନି ଚଳନ୍ତି ?" ହଠାତ୍ ଉତ୍ତରରେ ଜଣେ କହିଦେଲେ "ସେ ତ ଏକ ପାଗଳ–ତାଙ୍କୁ କଲିକତାରେ ସରକାରୀ ସାଧୁ ବୋଲି ଆମ୍ଭେମାନେ କହୁଁ ।" ଏ କଥାରେ ବଡ଼ ହସ ହେଲା । ଏହି ହସରେ କିନ୍ତୁ ଯୁବକମାନଙ୍କ ଭିତରୁ କେତେକଙ୍କ ଆଗନ୍ତୁକମାନଙ୍କ ସହିତ କଥା ହେବା ପାଇଁ ଇଚ୍ଛା ଜାଗ୍ରତ ହେଲା । ଏ ବି ଏକ ଚିତ୍ତବିନୋଦନ କାର୍ଯ୍ୟ ବୋଲି ବୋଧହୁଏ ସେମାନେ ମନେ କଲେ । "ଆଚ୍ଛା ହେଉ, ଆପଣ ବସନ୍ତୁ" କହି ପାଖରେ ଖାଲି ପଡ଼ିଥିବା ଗୋଟିଏ ଚେୟାରକୁ ଟିକିଏ ଜଣେ ଘୁଞ୍ଚେଇ ଦେଲେ । ଆଉ ଜଣଙ୍କ ବସିବା ପାଇଁ ଚେୟାର ନାହିଁ–ସେଥିପାଇଁ କେହି ଉଦ୍‌ବେଗ ପ୍ରକାଶ କଲେ ନାହିଁ । ଚେୟାରରେ ବାଳକୃଷ୍ଣ ବସିପଡ଼ିଲେ । ନିଜର ଚିନ୍ତାକୁ ନ କହି ସେମାନଙ୍କ ମନ ମାନିଲା ଭଳି କଥା ଆରମ୍ଭ କଲେ, "ବିନୋବାଜୀଙ୍କୁ ସରକାରୀ ସାଧୁ ବୋଲି କାହିଁକି କଲିକତାରେ ଲୋକେ କହୁଛନ୍ତି ?"

"ସେ ସବୁବେଳେ ସରକାରଙ୍କୁ ସୁହାଇବା ଭଳି ନୀତି ବୟାନ୍ କରୁଛନ୍ତି । କିଏ ଶୁଣୁଛି ତାଙ୍କର ନୀତିବାକ୍ୟ ! ସେ ମଧ୍ୟ ଅନ୍ୟମାନଙ୍କ

ଶୁଣିବା ପାଇଁ କିଛି କହନ୍ତି ତାହିଁ । ଦିଲ୍ଲୀ ଆଡ଼କୁ ଅନାଇ ସୁଦୂର ପୁନାର ଆଶ୍ରମରୁ ତାଙ୍କର ନୀତିବାକ୍ୟ ଶୁଣାନ୍ତି ।" ହସି ହସି ଗଡ଼ିଯାଉଥାନ୍ତି । ବାଳକୃଷ୍ଣ ମଧ୍ୟ ସେଇ ହସରେ ଯୋଗଦେଇ କହିଲେ, "ମୁଁ ମଧ୍ୟ ସେୟା ଭାବେ, କିନ୍ତୁ ସରକାରଙ୍କୁ ସୁହାଇବା ଭଳି କଥା କହିବାକୁ ଆପଣମାନେ କାହିଁକି ନାପସନ୍ଦ କରୁଛନ୍ତି ? ସରକାର ତ ଲୋକଙ୍କ ପ୍ରତିନିଧି । ତାଙ୍କୁ ତ ସାହାଯ୍ୟ କରିବା ସମସ୍ତଙ୍କ କର୍ତ୍ତବ୍ୟ । ଯୁବକମାନଙ୍କୁ ଉତ୍ସାହ ଦେବା ପାଇଁ ସରକାର ତ ସବୁ କରୁଛନ୍ତି । ଏହି ଯୁବ ହଷ୍ଟେଲ୍, ଏ ପରିକଳ୍ପନା କଅଣ ପୂର୍ବେ ଥିଲା ? ବର୍ତ୍ତମାନ ପ୍ରତ୍ୟେକ ଅନୁଷ୍ଠାନରେ ଯୁବକମାନଙ୍କ ସ୍ଥାନକୁ ସରକାରୀ ସ୍ତରରେ ସ୍ୱୀକାର କରଯାଉଛି—ଆଉ କଅଣ ?" ଏ କଥା ପରେ ଅଳ୍ପ ଟିକିଏ ଗାମ୍ଭୀର୍ଯ୍ୟ ପ୍ରକାଶ ପାଇଲା । କଲିକତାର ଯୁବକ ଜଣକ ହାତରେ ଧରିଥିବା ଗ୍ଲାସକୁ ଟିପୟ ଉପରେ ରଖିଦେଇ ଉତ୍ତେଜିତ ସ୍ୱରରେ କହିଲେ, " ଆଜି ଯେ କେତେ ଯୁବକ ବେକାର ହୋଇ ବୁଲୁଛନ୍ତି ତା' ଆପଣ ଜାଣନ୍ତି ! ସେମାନଙ୍କ ଉଚ୍ଚ ଶିକ୍ଷାର କିଛି ମୂଲ୍ୟ ନାହିଁ । ମଜୁରି ଖଟିବାକୁ ମଧ୍ୟ ସେମାନଙ୍କ ପାଇଁ କାମ ନାହିଁ । ବାଳିକାମାନେ ବେଶ୍ୟା ବୃତ୍ତିକୁ ଆଶ୍ରୟ କରୁଛନ୍ତି, କେବଳ ଜୀବିକା ପାଇଁ । ଏହି ତ ଯୁବକମାନଙ୍କ ପ୍ରତି ନେତୃତ୍ୱର ଅନୁଗ୍ରହ । ଅବଶ୍ୟ ଆମ୍ଭେମାନେ ଦେଶର ଭବିଷ୍ୟତ । ଆମେ ହିଁ ହେଉଛୁ ଦେଶର ସର୍ବଶ୍ରେଷ୍ଠ ସମ୍ପଦ । ଏ ଉଦ୍‌ବୋଧନ ସମ୍ବାଦ ପତ୍ରରେ ରେଡ଼ିଓରେ ଆମେ ଶୁଣୁ—ତା'ପରେ ଆମର ଏହି ପ୍ରକାର ବିନୋଦନ କାର୍ଯ୍ୟକ୍ରମରେ ଅନ୍ତର୍ଗତ ମନସ୍ତାପକୁ ଭୁଲାଇ ରଖିଥାଉଁ । ଏ ଅବଶ୍ୟ ଆମ ପ୍ରତି ଅନୁଗ୍ରହ । ଆମ ପାଇଁ ହୋଷ୍ଟେଲ୍ ଏବଂ ହୋଟେଲ-ମାନଙ୍କରେ ଚିତ୍ତବିନୋଦନ ପାଇଁ ଅପର୍ଯ୍ୟାପ୍ତ ପାନ ଭୋଜନର ବ୍ୟବସ୍ଥା......"

ବାଧା ଦେଇ ବାଳକୃଷ୍ଣ ହସି ପଚାରିଲେ "କିନ୍ତୁ ଅର୍ଥର ବ୍ୟବସ୍ଥା ?"—

"ସେ ବ୍ୟବସ୍ଥା କରିବା ଆବଶ୍ୟକ ନୁହେଁ ବୋଲି ମନେ କରହୁଏ । କାରଣ ଆମକୁ ସବୁ କ୍ଷେତ୍ରରେ ଯେଉଁ ଉଚ୍ଚ ସ୍ଥାନ ଦିଆ ହୋଇଛି, ସେଥିରେ ଆମେ ଆମର ଅର୍ଥର ବ୍ୟବସ୍ଥା କରିନେଉଁ । ଶିଳ୍ପ ବାଣିଜ୍ୟ, ସରକାରୀ ଯେତେ କାମ ଏପରିକି ରେଳ ଷ୍ଟେସନରେ ବର୍ଥ ରିଜର୍ଭେସନ୍ । ଏ ସବୁଥିରେ ଯୁବକମାନଙ୍କ କଥା ଅନୁସାରେ କାର୍ଯ୍ୟ ହୁଏ—ତେଣୁ ଯେଉଁମାନଙ୍କୁ ଆମେ ସାହାଯ୍ୟ କରୁ, ସେମାନେ ଖୁସିରେ ସମୟେ ସମୟେ ଭୟରେ ମଧ୍ୟ

ଆମକୁ ଅର୍ଥ ଦାନ କରନ୍ତି । ଆପଣଙ୍କ ପରି ବୟସ୍କ ଲୋକେ କହିବେ ଏ ଗ୍ରନ୍ଦା ଅଗ୍ରହ । ଆମେ ଯାକୁ ଗ୍ରନ୍ଦା ବୋଲି କହୁନାହୁଁ । କାରଣ ଏହା ଅନୁଗ୍ରହ କରି ଆମକୁ ଦାନ ନୁହେଁ । ଏ ଆମର ଲେଭି ଯେଉଁମାନେ କିଛି ହେଲେ ଅର୍ଥ ଉପାର୍ଜନ କରୁଛନ୍ତି ସେମାନଙ୍କ ଉପରେ । ବୁଝିଲେ ବାଳକୃଷ୍ଣ ବାବୁ ।" ସମସ୍ତେ ହସିଲେ । ବାଳକୃଷ୍ଣ ଗମ୍ଭୀର ହୋଇ କ୍ଷୀଣ ସ୍ୱରରେ କହିଲେ, "ଏ ବ୍ୟବସ୍ଥାକୁ କ'ଣ ଆପଣମାନେ ପସନ୍ଦ କରୁଛନ୍ତି ? ଆପଣମାନେ ସିନା ଲେଭି ଆଦାୟ କରିପାରୁଛନ୍ତି, ବିଶାଳ ମୂକ ଅଜ୍ଞ ଜନତା କ'ଣ ତା' କରିପାରିବେ ।?" "ଛାଡ଼ନ୍ତୁ ସେ କଥା–ମୂର୍ଖ ଜନତା ଯାଆନ୍ତୁ ଜହନ୍ନମକୁ–"ସ୍ୱସ୍ତ ଅପନି ବାସ୍ତ"–ଆମେ କ'ଣ ଦେଶର ନା ଜନତାର ଠିକା ନେଇଛୁ ? ଆଚ୍ଛା ଯାଆନ୍ତୁ, କୌଣସି ଗଭୀର ରାଜନୈତିକ ଅର୍ଥନୈତିକ ବା ଆଉ ଗୋଟାଏ କଅଣ ତା ସାଙ୍ଗକୁ କୁହାଯାଉଛି, ହଁ ସାମାଜିକ, ଆଲୋଚନା କରିବାକୁ ପ୍ରସ୍ତୁତ ନୋହୁଁ । ଏ ସବୁ ଆଲୋଚନାରେ ମସ୍ତିଷ୍କ ଭାରାକ୍ରାନ୍ତ କରିବା ଆବଶ୍ୟକ ବୋଲି ଆମେ ମନେ କରୁନାହୁଁ । ଆଚ୍ଛା, ବେଶ୍ ଯାଆନ୍ତୁ । ଆଉ ଆପଣମାନେ କେବେ ଯୁବକଙ୍କ ମେଳକୁ ଆସିବେ ନାହିଁ କି ଦେଶର କୌଣସି ସମସ୍ୟା ଆଲୋଚନା କରିବେ ନାହିଁ ।" ଜଣେ ବାହାରିପଡ଼ି କହିଲେ, "ଆପଣମାନଙ୍କୁ ଏ ଯୁବ ହଷ୍ଟେଲରେ ରହିବା ପାଇଁ କିପରି ଅନୁମତି ମିଳିଲା ?" ଇତସ୍ତତଃ ହୋଇଯାଇ ବାଳକୃଷ୍ଣ କହିଲେ, "ଆମେ ଇଚ୍ଛା କରି ଏଠି ରହିଲୁ ଯୁବ ମନ ଅଧ୍ୟୟନ କରିବା ପାଇଁ । କାରଣ ସେମାନେ ତ ଭବିଷ୍ୟତ ।" ବଙ୍ଗାଳି ଯୁବକ ଜଣକ ହସି ଉଠି କହିଲେ, "ଏହି ଆରମ୍ଭ ହୋଇଗଲା ଉଦ୍‌ବୋଧନ । ଯା'ନ୍ତୁ ଆପଣମାନେ ଏଠୁ । ଏ ହଷ୍ଟେଲ୍‌ରୁ ବିଦାୟ ନେଲେ ଆମ୍ଭେମାନେ ଉପକୃତ ହେବୁ ।" ଏହା କହିଦେଇ ସେମାନେ ନିଜ ନିଜ ଭିତରେ ଖୁସି ଗପ ଆରମ୍ଭ କରିଦେଲେ । ମ୍ରିୟମାଣ ହୋଇ ବାଳକୃଷ୍ଣ ଉଠି ଆସିଲେ । ସ୍ତବ୍ଧ ନୀରବ ଶତେ ମଧ୍ୟ ଚାଲିଆସିଲେ । କେବଳ ସେ ମେଳରୁ ନୁହେଁ । ଯୁବ ହଷ୍ଟେଲ୍‌ରୁ ମଧ୍ୟ ଲୁଗାପଟା ନେଇ ବାହାରି ଆସିଲେ । ଏ କେତେ ଦିନର ଅଭିଜ୍ଞତା କେଉଁଠି ନିରୋଳାରେ ବସି ଆଲୋଚନା କରାଯିବ । ଭାବି ଭାବି ପୁରୀର ସେ ଧର୍ମଶାଳା ହିଁ ପ୍ରକୃଷ୍ଟ ସ୍ଥାନ ବୋଲି ସେଠାକୁ ଚାଲିଲେ ।

ଗୁଡ଼ିର ଡୋର ଛିଡ଼ିଗଲେ, ଗୁଡ଼ି ଯେପରି ହାଉଆରେ ଏଣେତେଣେ ଉଡ଼ି ଉଡ଼ି କେଉଁଠି ଗଛରେ ଲଗିଯାଏ, ସେହିପରି ଏ ଦୁଇ ପ୍ରୌଢ଼ଙ୍କ ମନର ଅବସ୍ଥା । ପୁରୀ ଆସିଲେ ରହିଲେ ସେହି ଗୋଯେଙ୍କା ଧର୍ମଶାଳାରେ । କିନ୍ତୁ ଏଥର ପୂର୍ବପରି ଉତ୍ସାହ ନାହିଁ । କଲିକତାର ଅନୁଭୂତି, ବିଶେଷତଃ ଭୁବନେଶ୍ୱର ୟୁଥ୍ ହଷ୍ଟେଲ୍‌ର ଅନୁଭୂତି ସେମାନଙ୍କ ମନରେ ଜାଗ୍ରତ ହୋଇଥିବା ସମସ୍ତ ଉତ୍ସାହ ଶେଷରେ ଏକ ବିରାଟ ପ୍ରଶ୍ନବାଚକ ଚିହ୍ନ ହୋଇଯାଇଛି । ସେ ସମୟରେ ଯେ କେବଳ ଏହି ଦୁଇଜଣଙ୍କ ମନର ଅବସ୍ଥା ଏହିପରି ତାହା ନୁହେଁ, ସେ ସମୟରେ ଅଧିକାଂଶ ପ୍ରୌଢ଼ ଓ ବୃଦ୍ଧ ତଥାକଥିତ ସ୍ୱାଧୀନତା ସଂଗ୍ରାମୀଙ୍କ ସେହିପରି ଅବସ୍ଥା ମନରେ ଉପୁଜିଥିଲା । କେତେକ ନିଜକୁ ସମ୍ଭାଳି ନେଇ ଫେରି ଯାଇ ଘର ସଂସାରରେ ଯୋଗ ଦେଲେ । କେତେକ ବର୍ଷା ଯୁଆଡ଼େ ଛତା ସିଆଡ଼େ ଧରି ନିଜର ଅତୀତ ସବୁ ଭୁଲିଗଲେ ଓ ବର୍ତ୍ତମାନକୁ ଦ୍ୱିତୀୟ ପତ୍ନୀର ଆଦରରେ କୋଳ କରି ନେଲେ । ଅନ୍ୟ କେତେକ ସଂସାର ବୈରାଗୀ ହୋଇ ଆଧ୍ୟାତ୍ମିକ ମାର୍ଗ ଧରିଲେ । ଆଉ ଅଳ୍ପ କେତେକ ଏଆଡ଼େ ସେଆଡ଼େ କୁଆଡ଼େ ନ ହୋଇ ସ୍ୱପ୍ନ ଦେଖିବାରେ ଲଗିଲେ ଅତୀତକୁ ଫେରାଇ ଆଣି ବର୍ତ୍ତମାନରେ ପରିଣତ କରିବା ଲାଗି । ଶରତ ଓ ବାଳକୃଷ୍ଣ ଏହି ଅତି ସଂଖ୍ୟା ଲଘିଷ୍ଠ ଶ୍ରେଣୀଭୁକ୍ତ ବୋଲି ସେମାନେ ଏବେ ସୁଦ୍ଧା ଜାଣିପାରୁ ନାହାନ୍ତି । ଧର୍ମଶାଳାର ଦୋତାଲା କୋଠରୀଟାରେ ସନ୍ଧ୍ୟାବେଳେ ବସିଥାନ୍ତି । ସନ୍ଧ୍ୟା ଆରତୀର ଘଣ୍ଟା ସ୍ୱରିଆଡ଼େ ବାଜୁଛି । ବିଜୁଳୀ ଆଲୁଅ ମଧ୍ୟ ଘର ରାସ୍ତା ସବୁଠି ଅନ୍ଧକାର ସହିତ ସଂଗ୍ରାମ ଆରମ୍ଭ କରି ଦେଲଣି । ଶରତ ଚିନ୍ତାକୁଳ ସ୍ୱରରେ କହିଲେ, "ବାଳକୃଷ୍ଣ, ତୁମେ ରାଜନୀତିରେ ମାତିଛ । କିନ୍ତୁ ତୁମର ରାଜନୀତିରେ ଦର୍ଶନର ମଧ୍ୟ ସ୍ଥାନ ରହିବା ଉଚିତ୍ । ରାଜନୈତିକ ନେତାମାନଙ୍କ ଦାର୍ଶନିକ ମନୋଭାବ ନ ରହିଲେ ସେମାନେ ସତ୍ୟାସତ୍ୟ ନିର୍ଣ୍ଣୟ କରିବାରେ ସମର୍ଥ ହେବେ ନାହିଁ ।" ବାଳକୃଷ୍ଣ ମଧ୍ୟ ଗଭୀର ଚିନ୍ତାରେ ନିମଗ୍ନ ଥିଲେ । ସେ ଏ କଥା ଶୁଣି ବିରକ୍ତ ହୋଇ କହିଲେ–"କେଉଁଠି ମୋର ଦର୍ଶନର ଅଭାବ ତୁ ଦେଖିଲୁ ? ମୁଁ ସ୍ପଷ୍ଟ ଆଖିରେ ଦେଖୁଛି ଆମର ସମସ୍ତ ତ୍ୟାଗ

ବ୍ୟର୍ଥ । ସେହି ବ୍ୟର୍ଥତା ବିରୁଦ୍ଧରେ ଅଭିଯାନର ଚିନ୍ତା ମୁଁ କରୁଛି । ଏଥିରେ ଦର୍ଶନର ଅଭାବ ରହିଲା କେଉଁଠି ?" ଶରତ ଗମ୍ଭୀର ଭାବରେ କହିଲେ, "କେବଳ ନିଜର ଅନୁଭୂତି ଅର୍ଜନ ପାଇଁ ମୁଁ ତୋ ସାଙ୍ଗରେ କଲିକତା ଗଲି । ସେ ୟୁଥ୍ ହୋଷ୍ଟେଲ୍‌ରେ ରହିଲି । ମୋର ଯାହା ଅନୁଭୂତି, ସେଥିରେ ମୁଁ ସ୍ପଷ୍ଟ ଜାଣିପାରୁଛି । ଅତୀତର ତ୍ୟାଗ ବ୍ୟର୍ଥ ହୋଇଛି ବୋଲି ଲୋକେ ଅନୁଭବ କରୁନାହାନ୍ତି । ବରଂ ଲୋକେ ଭାବୁଛନ୍ତି, ଯାହା କିଛି ହୋଇଛି, ତାର ଆନ୍ତିମ ପରିଣତି ହେଉଛି, ପୂର୍ଣ୍ଣ ସାର୍ଥକତା ।" କିଛି ସମୟ ରହିଯାଇ ପୁଣି ସେ କହିଲେ, "ଆମେ ତ୍ୟାଗ କରିଥିଲେ ଦେଶର ସ୍ୱାଧୀନତା ପାଇଁ । ଦେଶର ଲୋକଙ୍କ ଅଭିଳାଷ ପୂରଣ ପାଇଁ । ଆମେ ତ ନିଜର ଅଭିଳାଷ ପୂରଣ ପାଇଁ ଆନ୍ଦୋଳନରେ ମାତି ନ ଥିଲେ । ଆମେ ମାତିଥିଲେ ସମୂହଙ୍କ ପାଇଁ । ସମୂହ ଯେତେବେଳେ ସାର୍ଥକତା ଅନୁଭବ କରୁଛନ୍ତି ଆମେ କାହିଁକି ବ୍ୟର୍ଥତା ଅନୁଭବ କରିବୁ ? ଏ ତ ଯୁକ୍ତିସଙ୍ଗତ ହେଉନାହିଁ । ବାଳକୃଷ୍ଣ ଜୋର୍ ଦେଇ କହିଲେ, "ଲୋକେ ଯାହାକୁ ସାର୍ଥକତା ବୋଲି ଅନୁଭବ କରୁଛନ୍ତି, ତାହା ଯେ ଚରମ ବ୍ୟର୍ଥତା ଏ କଥା ସେମାନେ ଆଜି ବୁଝିନାହାନ୍ତି, ପରେ ବୁଝିବେ । ୟୁଥ୍ ହଷ୍ଟେଲ୍‌ରେ ଯେଉଁ ଯୁବକ ଯୁବତୀମାନେ ପଞ୍ଚମ-କାରରେ ସାର୍ଥକତା ଅନୁଭବ କରୁଛନ୍ତି, ସେମାନେ ଆଉ ଅଳ୍ପ କେତେଟା ବର୍ଷରେ ଏପରି ମନସ୍ତାପ ଭୋଗିବେ, ତାହା କଳ୍ପନା କରିହେବ ନାହିଁ । ଏ ଅବସ୍ଥାକୁ ପରିବର୍ତ୍ତନ କରିବା ପାଇଁ କ'ଣ ଉଦ୍ୟମ କରିବା କର୍ତ୍ତବ୍ୟ ନୁହେଁ ?" ଏଥିରେ ଲଜିକ୍‌ରେ କେଉଁଠି ଭୁଲ ରହିଲା ?" ଶରତ ଦୃଢ଼ ସ୍ୱରରେ କହିଲେ, "ଗାନ୍ଧିଜୀଙ୍କ ଉଦ୍ଦେଶ୍ୟ ଯାହା ଥାଉ, ଆମେ ଯେଉଁମାନେ ଆନ୍ଦୋଳନରେ ମାତିଥିଲେ, ଆମର କେବେହେଲେ ଲକ୍ଷ୍ୟ ନ ଥିଲା, ଲୋକ ଚରିତ୍ର ବଦଳାଇ ସେମାନଙ୍କ ଜୀବନକୁ ଭୌତିକ ସୁଖର ଊର୍ଦ୍ଧ୍ୱରେ ଉଠାଇ ଆତ୍ମିକ ସୁଖର ଅନୁସନ୍ଧାନରେ ଲଗାଇବା ପାଇଁ, ଭୌତିକ ସୁଖ ହିଁ ଆମର ଲକ୍ଷ୍ୟ ଥିଲା । ବିଦେଶୀ ଶାସନରେ ଏ ସୁଖରୁ ଦେଶ ବଞ୍ଚିତ । ତେଣୁ ଏହାକୁ ହଟାଇ ଦେବାକୁ ହେବ । ଏହା ହିଁ ଥିଲା ଆମର ଦେଶ ପ୍ରେମର ମୌଳିକ ପରିକଳ୍ପନା, ମୋର ମନେହୁଏ ତା' ପୂର୍ଣ୍ଣ ହୋଇଛି । ଆମର ଉଚିତ ହେଉଛି ଆମେ ମଇଦାନରୁ ହଟିଯାଇ ଛାଡିଦେବା ସମୂହ ଜନତାକୁ, ଖେଳି କୁଦି ଯାହା ସୁଖ ଲଗୁଛି, ତା' ସେମାନେ ସ୍ୱଚ୍ଛନ୍ଦରେ ଭୋଗ କରନ୍ତୁ ।

ନିଜ ନିଜ ଅନୁଭୂତିରୁ ସେମାନେ ଯେପରି ମନେ କରିବେ, ସେହିପରି ଅବସ୍ଥା ସୃଷ୍ଟି କରିବେ । ଆମ ଉପନ୍ୟାସର ଉପସଂହାର ହୋଇଯାଇଛି ବୋଲି ଆମେ ମନେ କରିବା । ଠିକ୍ ସମୟରେ ଗଳ୍ପ ବା ଉପନ୍ୟାସକୁ ଶେଷ ନ କଲେ ପାଠକଙ୍କ ପକ୍ଷରେ ଅଯଥା ଦୀର୍ଘୀକରଣ ବିରକ୍ତିଜନକ ହୋଇଥାଏ । ଦୀର୍ଘ ଉପନ୍ୟାସ ବୋଧହୁଏ ଆଧୁନିକ ଯୁଗରେ ଆଦୃତ ହୁଏ ନାହିଁ ।" କଥାକୁ ବାଳକୃଷ୍ଣ ଭାବିଲେ, ଗୁଁ ଗୁଁ ହୋଇ କହିଲେ, "ତେବେ ତୋ ମତରେ ଆମେ କଅଣ କରିବା ଉଚିତ ?" ଶରତ ବର୍ତ୍ତମାନ କାଠଗଡ଼ା ଭିତରେ । ସେ ମଧ୍ୟ ଭାବିପାରୁ ନାହାନ୍ତି କଅଣ କରିବାକୁ ହେବ । ତାଙ୍କ ମନରେ ଉଙ୍କି ମାରି ଆସୁଛି, ଅଯଥା ବନ୍ୟହଂସରେ ଅନୁଧାବନ ନ କରି, ଯେଉଁଠୁ ସେ ଆସିଥିଲେ ସେଇଠିକି ଫେରିଯିବା ପାଇଁ । ଅର୍ଥାତ୍ ଘର ସଂସାରରେ ଯାଇ ବହୁ ପ୍ରୌଢ଼ ବୃଦ୍ଧ ଲୋକଙ୍କ ପରି ଜୀବନ ଅତିବାହିତ କରିବା ପାଇଁ । କିନ୍ତୁ ସେ ଏହା କହିପାରୁ ନାହାନ୍ତି କାଳେ ବାଳକୃଷ୍ଣ ଭାବିବେ, ଅନ୍ୟ ସଙ୍ଗୀମାନେ କହିବେ ଶରତ ଦବିଗଲଣି । ଘରକୁ ପଳାଇଲଣି । ସେ ଅବସ୍ଥାର ବିଶ୍ଳେଷଣ କଲେ–

"ବର୍ତ୍ତମାନ ପରିସ୍ଥିତି କେଉଁ ଦୃଷ୍ଟିରୁ ବ୍ୟର୍ଥତା ସୂଚକ ହୋଇଛି ବିଶ୍ଳେଷଣ କଲେ ଜଣାଯିବ, ଆମେ ମନେ କରୁଥିଲେ ଗାନ୍ଧିଜୀଙ୍କ ପରିକଳ୍ପିତ, ଶାନ୍ତ, ସଂଯତ, ସମୃଦ୍ଧ ସମାଜ ଗଠିତ ହେବ ସ୍ୱାଧୀନତା ପରେ । କିନ୍ତୁ ମନେ ରଖିବାକୁ ହେବ, ଭାରତର ସ୍ୱାଧୀନତା ସଙ୍ଗେ ସଙ୍ଗେ ଆଉ ଏକ ବିଶ୍ୱବ୍ୟାପି ବିପ୍ଳବ ସୃଷ୍ଟି ହୋଇଛି ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ । ସେ ହେଉଛି ବିଜ୍ଞାନର ଅଭୂତପୂର୍ବ ବିକାଶ । ସମଗ୍ର ପ୍ରକୃତିକୁ ସେ ହାତରେ ନଗ୍ନାଇବାକୁ ବସିଛି । ଏ ବିକାଶ ଆଣିଦେଇଛି ଭୌତିକ ସୁଖଭୋଗ ପାଇଁ ଅନାୟାସ ବା ଅଳ୍ପାୟାସ ଲବ୍ଧ ସୁଯୋଗ ସମଗ୍ର ମାନବ ସମାଜକୁ । ପୃଥିବୀ ତ ଏକ ଅତି କ୍ଷୁଦ୍ର ଗ୍ରହ ହୋଇଥିଲା ସୌର ଜଗତରେ । ପୂର୍ବେ ଋଷିମୁନିମାନେ ସାଧ୍ୟସାଧନା କରି ମନୋମାର୍ଗରେ ଯତ୍ର ତତ୍ର ଯେପରି ନିମିଷକେ ବିଚରଣ କରୁଥିଲେ ବୋଲି ବର୍ଣ୍ଣିତ ଅଛି, ଆଜି ବିଜ୍ଞାନ ସାହାଯ୍ୟରେ ଯେ କୌଣସି ଲୋକ ସେହିପରି ଅକ୍ଳେଶରେ ଜୀବନର ଶାରୀରିକ ସମସ୍ତ ସୁଖ ଉପଭୋଗ କରିବାକୁ ସମର୍ଥ । ବିଜ୍ଞାନ ପ୍ରଦତ୍ତ ଏ ସୁଯୋଗକୁ ଗାନ୍ଧିଯୁଗରେ କଳ୍ପନା କରଯାଇ ନ ଥିଲା । ହୁଏତ ଗାନ୍ଧିଜୀ ବଞ୍ଚିଥିଲେ ଶରୀର ସୁଖ

ସାଧନା ପାଇଁ ଦ୍ରୁତଗାମୀ ଦେଶବାସୀଙ୍କୁ ଆଗରେ ଛିଡ଼ା ହୋଇ ବାହୁ ପ୍ରସାରଣ କରି "ରହିଯାଅ, ରହିଯାଅ" ବୋଲି ଚିତ୍କାରି ପକାଉଥାନ୍ତେ । ଦେଶବାସୀ ତାଙ୍କ ମନା ମାନୁଥାନ୍ତେ କି ତାଙ୍କ ପ୍ରସାରିତ ବାହୁକୁ ଠେଲି ପେଲି ଦେଇ ଚାଲି ଯାଉଥାନ୍ତେ, ତାହା କହିହେବ ନାହିଁ । କିନ୍ତୁ ବିଜ୍ଞାନ ପ୍ରଦତ୍ତ ଭୌତିକ ସୁଖ ଯେ ମନୁଷ୍ୟର ପରମ୍ପରାଗତ ଦୃଷ୍ଟିକୋଣକୁ ସମ୍ପୂର୍ଣ୍ଣ ବଦଳାଇ ଦେଇଛି ଏଥିରେ ସନ୍ଦେହ ନାହିଁ । ଏହା ସହିତ ସ୍ୱାଧୀନତାର କୌଣସି ସମ୍ପର୍କ ନାହିଁ । କାକ ତାଳୀୟ ନ୍ୟାୟରେ ସ୍ୱାଧୀନତା ଓ ବିଜ୍ଞାନର ବିକାଶ ଏକ ସଙ୍ଗରେ ଭାରତରେ ଉପସ୍ଥିତ । ଏଣୁ ସେ ଆନ୍ଦୋଳନ-ଯୁଗର ନିକିତିରେ ବର୍ତ୍ତମାନର ଜୀବନକୁ ତଉଲିବା ଭ୍ରମାତ୍ମକ । ଆସିଥିଲା ସେ ଯୁଗ, ତାର କାମ ଶେଷ କରି ସେ ବିଦାୟ ନେଇଛି । ପୁଣି ଆସିଛି ନୂତନ ଯୁଗ । ଏ ତା'ର କାମ କରିବାରେ ଲାଗିଛି । ଆମେ ଅପରାହ୍ନରେ ପହଞ୍ଚିଥିବା ଲୋକଙ୍କ ପକ୍ଷରେ ନୂତନ ଯୁଗ ସହିତ ଖାପ ଖାଇବା କଠିନ ହେଉଛି । ତେଣୁ ଅପସରି ଯାଇ ନୂତନ ଯୁଗକୁ ପୂର୍ବାହ୍ନ, ମଧ୍ୟାହ୍ନରେ ଥିବା ଲୋକଙ୍କ ହାତରେ ଛାଡ଼ିଦେବା ବୁଦ୍ଧିମାନର କାର୍ଯ୍ୟ ।" ଶରତ କହିଯାଉଥାନ୍ତି ଏପରି ସ୍ୱଚ୍ଛନ୍ଦ ଗତିରେ ମନେ ହେବ ଯେପରି ସେ ତାଙ୍କ କଥାର ସ୍ରୋତ ଅନ୍ତରର ଏକ ପ୍ରେରଣା ଉତ୍ସରୁ ପ୍ରସାରିତ । ବାଳକୃଷ୍ଣ ଅଳ୍ପ କଥା କୁହନ୍ତି । ବେଶୀ ତର୍କ ଯୁକ୍ତିରେ ଯୋଗ ଦେବା ତାଙ୍କର ଅଭ୍ୟାସ ନୁହେଁ । କିନ୍ତୁ ଏଥର ସେ ଶରତଙ୍କ ଦୀର୍ଘ ଭାଷଣ ମନ ଦେଇ ଶୁଣିଲେ । ଶୁଣୁଥାନ୍ତି, ଚାହୁଁଥାନ୍ତି, ପୁଣି ମୁହଁ ତଳକୁ କରି ହାତ ଆଙ୍ଗୁଳିକୁ ଏପାଖ ସେପାଖ କରୁଥାନ୍ତି । ସେ ମଧ୍ୟ ଗତ କେତେ ଦିନର ଅନୁଭୂତିରୁ କିଛି ଶିଖିଲେ କି ? ଧୀର ଗମ୍ଭୀର ସ୍ୱରରେ କହିଲେ, "ଯା କହୁଛୁ, ତୋର ବିଶ୍ଳେଷଣରେ କିଛି ତ୍ରୁଟି ନାହିଁ । କିନ୍ତୁ ଆମେ କ'ଣ ବିପଥଗାମୀ ଦେଶବାସୀଙ୍କୁ ହାତ ଦେଖାଇ ଅଟକାଇ ପାରିବା ନାହିଁ ?" "ଆଚ୍ଛା କଲିକତାର ସେ ସନ୍ନ୍ୟାସୀ କହୁଥିଲେ ପରା ଜଗଦୀଶ୍ ଏଠି କେଉଁଠି ଅଛି ।" "ହଁ ହଁ ସେ କଥା ତ ମୋର ମନେ ନ ଥିଲା । ଶଶୀବାବୁ କଲିକତା ସନ୍ନ୍ୟାସୀମାନଙ୍କର ଯେଉଁ ବିବରଣ ଦେଲେ, ସେଥିରେ ମୁଁ ଆଉ ସେ ସନ୍ନ୍ୟାସୀଙ୍କ କଥାକୁ ଗୁରୁତ୍ୱ ନେଲିନାହିଁ ।" କହି ଶରତ ଉଠିଗଲେ କୋଠରୀ ଭିତରକୁ । ନିଜର ଡାଏରୀଟି ଆଣି ସେ ଦେଖିଲେ, ସନ୍ନ୍ୟାସୀ କହିଛନ୍ତି 'ଶେଷାଶ୍ରୟ' ବୋଲି ଏକ ମଠରେ ସେ ଅଛି । ସତ କି ମିଛ କିଏ କିଏ ଜାଣେ ବୋଲି ଆସି ବଳକୃଷ୍ଣଙ୍କୁ କହିଲେ । ବୁଝାଯାଉ ସେ ମଠ କେଉଁଠି । ସେ ସନ୍ନ୍ୟାସୀ ଭଣ୍ଡ ବୋଲି ମୋର ମନେ ହେଲାନାହିଁ ।

ବଡ଼ଦାଣ୍ଡ ଉପରେ ସଦର ପୋଲିସ୍ ଷ୍ଟେସନ୍ । ଗୋଏଙ୍କା ଧର୍ମଶାଳାକୁ ନିକଟ । ଧର୍ମଶାଳାରେ ଯେ ଗୁମାସ୍ତା ଜଣକ ଥିଲେ ତାଙ୍କୁ ପଚାରିବାରୁ ସେ 'ଶେଷାଶ୍ରୟ' କେଉଁଠି କହି ପାରିଲେ ନାହିଁ । ଏଥିରୁ ଅନୁମାନ କରାହେଲା, ସେ ମଠଟି ସେପରି ଜଣାଶୁଣା ନୁହେଁ । ପୋଲିସ୍ ଷ୍ଟେସନ୍‌ରେ ପଚାରିଦେଲେ ସେଇଠି ସେ ମଠ ଠିକଣା ମିଳିବ, ଏହା ଭାବି ଶରତ ଓ ବାଳକୃଷ୍ଣ ଯାଇ ପହଞ୍ଚିଲେ ଥାନାରେ । ସେତେବେଳକୁ ଦିନ ପ୍ରାୟ ୯ଟା ହେବ । ଏ ସମୟରେ ସାଧାରଣତଃ ଥାନାକୁ ସବ୍-ଇନ୍‌ସ-ପେକ୍‌ଟର ବା ଇନ୍‌ସପେକ୍‌ଟର କେହି ଆସି ନ ଥାନ୍ତି । ସମ୍ପୂର୍ଣ୍ଣ ଥାନାଟି ଥାଏ ଜଣେ ଜଗୁଆଳି କନଷ୍ଟେବଲ ଜିମା । କିନ୍ତୁ ସେଦିନ ଥାନା ଭିତରେ ସବ୍‌ଇନ୍‌ସପେକ୍‌ଟର ଇନ୍‌ସପେକ୍‌ଟର ଓ ଜଣେ ସି. ଆଇ. ଡି. ଅଫିସର୍ ମଧ୍ୟ ଅଛନ୍ତି । ନିଜ ଭିତରେ କ'ଣ ଆଲୋଚନା ଚାଲିଛି । ବାରନ୍ଦାରେ କିଛି ସମୟ ଅପେକ୍ଷା କରି ବାଳକୃଷ୍ଣ ଭିତରକୁ ପଶିଯାଇ ଇଂରେଜୀରେ କହିଲେ, "କ୍ଷମା କରନ୍ତୁ, କହିପାରିବେ କି ଏଠି 'ଶେଷାଶ୍ରୟ' ନାମରେ ମଠଟି କେଉଁଠି ? ଇନ୍‌ସପେକ୍‌ଟର ବାଳକୃଷ୍ଣଙ୍କ ଆଡ଼କୁ ଚଉଟି କରି ଚାହିଁଲେ । ଚୌକିରେ ବସିବା ପାଇଁ କହିଲେ । ଇଂରେଜୀରେ ପଚାରି ଥିବାରୁ ବୋଧହୁଏ ତାଙ୍କ ପ୍ରତି ଏ ସୌଜନ୍ୟ, ଅନ୍ୟଥା ଚୌକିରେ ବସିବା ପାଇଁ କାହାକୁ କହିବାର ଅଭ୍ୟାସ ପୋଲିସ୍‌ଙ୍କର ନାହିଁ । ଏହା ହିଁ ହେଲା ବାଳକୃଷ୍ଣଙ୍କ ଧାରଣା । ଏ ବସିଛନ୍ତି; ଇନ୍‌ସପେକ୍‌ଟର, ସବ୍‌ଇନ୍‌ସପେକ୍‌ଟର ଓ ସି. ଆଇ. ଡ଼ି. ଅଫିସର ଜଣକ ସେଠୁ ଉଠି ଅନ୍ୟ ଏକ କୋଠରୀକୁ ଚାଲିଗଲେ । ଦଶ ମିନିଟ୍, ପନ୍ଦର ମିନିଟ୍, ଅଧଘଣ୍ଟାଏ ଗଲା । ଅଧୀର ହୋଇ ଶରତ ମଧ୍ୟ ଥାନା ଭିତରକୁ ଯାଇ ଖାଲି ପଡ଼ିଥିବା ଚୌକିରେ ବସିଲେ । କୁଆଡ଼େ ଗଲେ ଏମାନେ ? ଜଗୁଆଳି କନେଷ୍ଟବଳଠାରୁ ଶୁଣିଲେ ସେମାନେ ପାଖ ଘରେ ବସି କଅଣ କାଗଜପତ୍ର ଦେଖୁଛନ୍ତି । ସେହି କନେଷ୍ଟବଳଙ୍କୁ ପଚାରିଦେଲେ 'ଶେଷାଶ୍ରୟ' କଥା । ସେ ସ୍ୱର୍ଗଦ୍ୱାର ପାଖେ ଠିକଣାଟି ବତାଇ ଦେଲା । ସଙ୍ଗେ ସଙ୍ଗେ ମଧ୍ୟ କହିଲା ସେଠି ଜଣେ ସାଧୁ ରହୁଥିଲେ, ତାଙ୍କୁ ଧରିଆଣି ଏଠି ହାଜର କରିବା ସମୟରେ ସେ ମରିଗଲେ ।

କନେଷ୍ଟବଳଟି ଠିକ୍ ସନ୍ଧାନ ଦେଇଛି ଏଥିରେ ଆଉ ସନ୍ଦେହ ରହିଲା ନାହିଁ । ଥାନାରେ ଏମାନଙ୍କ କାମ ଶେଷ ହେଲା । ଅଫିସର୍‌ମାନଙ୍କ ଆସିବାକୁ ଅପେକ୍ଷା ନ କରି ଏମାନେ ଉଠି ଚାଲି ଆସିଲେ । ସିଧା ସ୍ୱର୍ଗଦ୍ୱାର ଆଡ଼କୁ ଚାଲିଲେ । କିଛି ସମୟ ପରେ ଅଫିସର୍‌ମାନେ ଆସି କନେଷ୍ଟବଳକୁ ପଚାରିଲେ, "ବାବୁ ଗଲେ କୁଆଡ଼େ ?" "ମୋତେ ତ 'ଶେଷାଶ୍ରୟ' ମଠ କଥା ପଚାରିଲେ, ତା ପରେ ତ ଉଠି ଚାଲିଗଲେ ସେମାନେ ।" ଏତିକି ଶୁଣି ଇନ୍‌ସପେକ୍‌ଟରଙ୍କ ମୁହଁରୁ ଭକ୍ ଭକ୍ ଇଂରେଜୀ କଥା ବାହାରିଲା, ତାକୁ ଲେଖି, ତାର ଓଡ଼ିଆ ଅନୁବାଦ ଦେଲେ ଅଯଥା କାଗଜ ନଷ୍ଟ ଓ ପାଠକଙ୍କ ଧୈର୍ଯ୍ୟଚ୍ୟୁତି ହେବ । ତେଣୁ ସଂକ୍ଷେପରେ ଯେଉଁ କଥାବାର୍ତ୍ତା ହେଲା, ତାହାହିଁ ଏଠାରେ ଦିଆଯାଉଛି । ପ୍ରଥମେ କନେଷ୍ଟବଳ ଉପରେ ବହେ ଶୋଧା ହେଲା, ସେ କାହିଁକି ସେ ମଠ ଠିକଣା କହିଦେଲା । ତା'ପରେ କନେଷ୍ଟବଳ ଯେଉଁ 'ବାବୁମାନେ' କହିଛି, ତାକୁ ପଚରାଗଲା ଆଉ କିଏ ଆସିଥିଲେ, ଜଣେ ବାବୁ ଭିତରକୁ ଗଲେ, ଆଉ ଜଣେ ବାହାରେ ଛିଡ଼ା ହୋଇଥିଲେ, ପରେ ଭିତରକୁ ଗଲେ । ଏତିକି ଶୁଣି ସି. ଆଇ. ଡ଼ି. ଅଫିସର୍ ଟେବୁଲ୍ ବାଡ଼େଇ କହିଲେ, "ତା'ହେଲେ ଆମର ଅନୁମାନ ଠିକ୍ । କଲିକତାରୁ ଯେଉଁ ଖବର ଆସିଛି ଓଡ଼ିଶାର ଦୁଇଜଣ ସେ ସନ୍ନ୍ୟାସୀଙ୍କୁ ଦେଖା କରିଥିଲେ, ସେ ହେଉଛନ୍ତି, ଏ ଦୁଇଜଣ । ଏମାନଙ୍କ ନାମ କ'ଣ, କେଉଁଠି ଅଛନ୍ତି କିଛି ପଚାରି ବୁଝିହେଲା ନାହିଁ । ଏ ମୂର୍ଖ କନେଷ୍ଟବଳଟା ତାଙ୍କୁ ବିଦା କରିଦେଲା । ଏତିକି ପରେ ପୁଣି ଇନ୍‌ସପେକ୍‌ଟର, ସବ୍‌ଇନ୍‌ସପେକ୍‌ଟର ଉଭୟଙ୍କ ଶୋଧା ଚାଲିଲା ବିଚରା କନେଷ୍ଟବଳ ଉପରେ । ସେ ଭୟଭୀତ ହୋଇ ଯେତେବେଳେ ଥରିବାକୁ ଲାଗିଲା, ସେତେବେଳେ ବାବୁମାନେ ସନ୍ତୁଷ୍ଟ ହେଲେ ଯେ ତାଙ୍କର କ୍ଷମତା କାର୍ଯ୍ୟକାରୀ ହୋଇଛି । ତା'ପରେ ଆସି ବସିଲେ । ସବ୍‌ଇନ୍‌ସପେକ୍‌ଟରଙ୍କୁ ଇନ୍‌ସପେକ୍‌ଟର ବୁଝାଇ କହିଲେ, ଏତେବେଳେ ପର୍ଯ୍ୟନ୍ତ ସବ୍‌ଇନ୍‌ସପେକ୍‌ଟର ସମୁଦାୟ କଥାଟି ବୁଝି ନ ଥିଲେ । ସେ ଶୋଇଥିଲେ । ତାଙ୍କୁ ଇନ୍‌ସପେକ୍‌ଟର ଏକ କନେଷ୍ଟବଳ ପଠାଇ ଡକାଇବାରୁ ସେ ଆସିଲେ । ଇନ୍‌ସପେକ୍‌ଟରଙ୍କୁ ମଧ୍ୟ କଟକରୁ ସି. ଆଇ. ଡ଼ି. ଅଫିସର୍ ନିଦରୁ ଉଠାଇ ଆଣିଛନ୍ତି । ଏ ଅବସ୍ଥାରେ ସବ୍-ଇନ୍‌ସପେକ୍‌ଟର ଯେ କଥା କଅଣ ଜାଣନ୍ତି ନାହିଁ ଏଥିରେ ବିସ୍ମିତ ହେବାର

କିଛିନାହିଁ । କିନ୍ତୁ ଇନ୍‌ସପେକ୍‌ଟର ତ ସବ୍‌ଇନ୍‌ସପେକ୍‌ଟଙ୍କ ଦ୍ୱାରା କାମ କରାଉବେ । ତେଣୁ ତାଙ୍କୁ ସମସ୍ତ କଥାତକ କହିବାକୁ ହେଲା—"କଲିକତା ସି. ଆଇ. ଡ଼ି. ଖବର ଦେଇଛନ୍ତି. ଓଡ଼ିଶାର ଦୁଇଜଣ ଶିକ୍ଷିତ ଭଦ୍ରଲୋକ, ବୟସ ଷାଠିଏ ପାଖାପାଖି ହେବ, ପୂର୍ବେ ଆନ୍ଦୋଳନ କରି ବହୁଥର ଜେଲ୍ ଯାଇଛନ୍ତି । ସେମାନେ କଲିକତାରେ ଆସି ବିଭିନ୍ନ ମହଲରେ ବିପ୍ଳବର ସମ୍ଭାବନା ବିଷୟ ଆଲୋଚନା କରୁଛନ୍ତି । ସେମାନେ କଲିକତାରେ ଜଣେ ସନ୍ନ୍ୟାସୀ ପାଖକୁ ଯାଇଥିଲେ । ସେଠି ମଧ୍ୟ ସେମାନେ ବିପ୍ଳବର ଆଲୋଚନା କରିଥିଲେ । ସେହି ସନ୍ନ୍ୟାସୀ ଏମ୍ମାନଙ୍କୁ ପୁରୀର ଶେଷାଶ୍ରୟର ସମସ୍ତ ସମ୍ବାଦ ଦେଇଛନ୍ତି । ସେ ମଠର ସ୍ୱାମୀ ଏଠାରେ ମରିଗଲା ପରେ ସେ ମଠ ତ ଖାଲି ପଡ଼ିଥିଲା, ସେଠି ପୁଣି ଜଣେ କିଏ ଆସି ରହିଲାଣି ବୋଲି ସେ କଲିକତା ସନ୍ନ୍ୟାସୀ କହିଲା ।" ସବ୍‌ଇନ୍‌ସପେକ୍‌ଟର ବାଧା ଦେଇ କହିଲେ, "ମୋ ଜାଣିବାରେ ସେଠି ତ ସେପରି କେହି ନାହାନ୍ତି ।" ସି. ଆଇ. ଡ଼ି. ଅଫିସର୍ ବିରକ୍ତ ହୋଇ କହିଲେ, "ଆପଣ କିଛି ଖବର ରଖନ୍ତି ନାହିଁ । କଲିକତାର ସେ ସନ୍ନ୍ୟାସୀଙ୍କ ପାଖେ ଧୁରନ୍ଧର ସି. ଆଇ. ଡ଼ି. ଅଫିସର୍‌ମାନେ ଅଛନ୍ତି, ଟିକିନିଖି ଖବର ସେଠା ସି. ଆଇ. ଡ଼ି. ପାଆନ୍ତି ଏବଂ ଯେଉଁ ପ୍ରଦେଶର ଖବର ତାକୁ ସେ ପ୍ରଦେଶ ସି. ଆଇ. ଡ଼ି.ଙ୍କଠାକୁ ପଠାଇ ଦିଅନ୍ତି । ନିଶ୍ଚୟ ସେଠି ଜଣେ କିଏ ଆସି ରହି ପୁଣି କୌଣସି ଆନ୍ଦୋଳନର ସୂତ୍ରପାତ କରିବାକୁ ଲାଗିଲେଣି ।" ସବ୍‌ଇନ୍‌ସପେକ୍‌ଟର ଜଣେ ପୁରୁଣା ଲୋକ, ଅବସର ନେବାକୁ ଆଉ ମାତ୍ର କେତେଦିନ ଅଛି । ତାଙ୍କୁ ଏପରି ଅଜ୍ଞ ବୋଲି ମନେ କରିବାରେ ସେ କଥାଟାକୁ ମନକୁ ନେଲେ । ଗମ୍ଭୀର ଭାବରେ କହିଲେ, "ମୁଁ ଏଠି ଏତେ ବର୍ଷ ରହିଲିଣି, ସେ ଶେଷାଶ୍ରୟରେ କୌଣସି ଆନ୍ଦୋଳନମୂଳକ କାର୍ଯ୍ୟ ବା ଆଲୋଚନା କେବେ ହେଉ ନ ଥିଲା । ରାଜନୈତିକ ବାଦ ବିବାଦରେ ସେ ମଠ ଜଡ଼ିତ ହୋଇଗଲା, ସି. ଆଇ. ଡ଼ି. ମଧ୍ୟ ସେହି ବିବାଦରେ ଜଡ଼ିତ ହୋଇଗଲେ ।" ଏଥିରେ ସି. ଆଇ. ଡ଼ି. ଅଫିସର ବିରକ୍ତ ହୋଇ କଅଣ କହି ଆସୁଥିଲେ, ଇନ୍‌ସ-ପେକଟର ବାଧା ଦେଇ କହିଲେ, "ଛାଡ଼ନ୍ତୁ ସେ ପୁରୁଣା କଥା—ବର୍ତ୍ତମାନ ଏ ଶେଷାଶ୍ରୟ ଉପରେ ନଜର ରଖିବାକୁ ହେବ ।" ସି. ଆଇ. ଡ଼ି. ଅଫିସର ବିରକ୍ତ ସ୍ୱରରେ କହିଲେ, "ଏ ସବ୍‌ଇନ୍‌ସପେକ୍‌ଟରଙ୍କ ଦ୍ୱାରା ସେ କାମ

ହୋଇପାରିବ ନାହିଁ । ମୁଁ ଜଣେ କ୍ରାଇମ୍ ବ୍ରାଞ୍ଚର ଅଫିସର୍ ପଠାଇବି ।" ଏହି ସିଦ୍ଧାନ୍ତରେ ପହଞ୍ଚି ଉଠିଲା ପରେ ପୁଣି ଗାଳି ବୃଷ୍ଟି ହେଲା ସେ କନେଷ୍ଟବଳ ଉପରେ । ସବୁକଥା ଏଇଠି ଜଣାପଡ଼ି ଯାଇଥାନ୍ତା । ଚକିପାଣି କହୁଣିରୁ ବୋହିଗଲା । ଏ ମୂର୍ଖକୁ ନେଇ କାମ କରିବା କଠିନ । କହିଦେଇ ଇନ୍ସପେକ୍ଟର ତାଙ୍କ ବସାକୁ ଗଲେ । ସି. ଆଇ. ଡ଼ି. ଅଫିସର ଏକ ଟ୍ୟାକ୍ସିରେ କଟକରୁ ଆସିଥିଲେ, ସେ ଫେରିଲେ । ସବ୍‌ଇନ୍‌ସପେକ୍ଟର ଭରସା ଦେଇ କନେଷ୍ଟବଳକୁ କହିଲେ, "କିଛି ଡୋର ହବନାହିଁ । ରହ, ଦମ୍ଭ ଧର ।"

—୧୫—

ଶରତ ଓ ବାଳକୃଷ୍ଣ ଶେଷାଶ୍ରୟରେ ପହଞ୍ଚିବାବେଳକୁ ଜଗଦୀଶ୍ ଗୁରୁ ନିର୍ଦ୍ଦେଶିତ ଆହ୍ନିକ ସାରି କାନ୍ଥ ଆଲମାରିରେ ଥିବା ସ୍ୱାମିଜୀଙ୍କ କାଗଜପତ୍ର ସବୁ ଯତ୍ନ ସହକାରେ ଦେଖୁଥିଲେ । ଦ୍ୱାର ପାଖକୁ ଆସି 'ଜଗଦୀଶ୍' ବୋଲି ପାଟି କରିଦେବାରୁ ଜଗଦୀଶ୍ ମୁହଁ ଟେକି ଅନାଇଦେଲେ ଏପରି ବିସ୍ମୟାଭିଭୂତ ହୋଇପଡ଼ିଲେ ଯେ କିଛି ହଠାତ୍ କହିପାରିଲେ ନାହିଁ । କିଛିକ୍ଷଣ ପରେ "କିହୋ ତମେ ସବୁ କୁଆଡ଼େ ?" କହି ଛିଡ଼ା ହୋଇ ପାଖରେ ପଡ଼ିଥିବା ଖଣ୍ଡେ ପଟ ଉପରେ ବସିବା ପାଇଁ କହିଲେ । ବିଚ୍ଛେଦ ଘଟିଥିଲା ମାତ୍ର ଅଳ୍ପଦିନ ପୂର୍ବରୁ । କିନ୍ତୁ ଇତିମଧ୍ୟରେ ଏକ ଦିଗରେ ଗଭୀର ଅଭିଜ୍ଞତା ଯେପରି ଶରତ ଓ ବାଳକୃଷ୍ଣଙ୍କର ହୋଇଛି, ଅନ୍ୟ ଦିଗରେ ଜଗଦୀଶ୍‌ଙ୍କର ମଧ୍ୟ ସେହିପରି ହୋଇଛି । ଏ ଦୁଇ ପ୍ରକାର ଅଭିଜ୍ଞତା ମଧ୍ୟରେ ବ୍ୟବଧାନ ଏତେ ବେଶୀ ଯେ ବନ୍ଧୁମାନଙ୍କର ଏ ଦିନର ମିଳନ ମନେ ହେଉଥିଲା ଯେପରି ବହୁକାଳର ବିଚ୍ଛେଦ ପରେ ଏହା ଘଟିଛି । କିଏ କାହାକୁ କଅଣ କହିବେ, କିଛି ଜାଣିପାରୁ ନାହାନ୍ତି । ବାଳକୃଷ୍ଣ କଥା ଆରମ୍ଭ କଲେ, "କଅଣ ହେଲା, କେତେଦୂର ଗଲା ତୋର ଯୋଗ ସାଧନା ।" ଜଗଦୀଶ୍ ହସିଦେଇ କହିଲେ, "ଯୋଗ କଅଣ ବଜାର ସଉଦା ହୋଇଛି କି, ଯିବ ହାତ ପତେଇ ପଇସା ପକେଇ ନେଇଆସିବ । ଛାଡ଼ ମୋ କଥା, ତୁମେ ସବୁ କୁଆଡ଼େ ଗଲ, ପୁଣି ଏଠିକି କିପରି ଆସିଲ ? ମୋର ଖବର କେଉଁଠୁ ପାଇଲ ? କ'ଣ ସବୁ କହ—ମୁଁ ତ ଘୁରିଆସୁ ଆଖି ବନ୍ଦ

କଟାଇଦେଇ ଏହି ଅନନ୍ତସାଗର ଆଡ଼କୁ ଅନାଇ ବସିଛି । ବାହାରର କୌଣସି ଖବର ମୋତେ ଜଣାନାହିଁ ।” ବାଳକୃଷ୍ଣ କ’ଣ ଅନ୍ୟ କଥା କହିବାକୁ ଯାଉଥିଲେ, କିନ୍ତୁ ଶରତ କହିପକାଇଲେ ସେମାନଙ୍କ କଲିକତା ଯିବାକଥା । ସେଠାରେ ସନ୍ନ୍ୟାସୀଙ୍କ ସହିତ ଦେଖା ଓ ତାଙ୍କଠାରୁ ଶେଷାଶ୍ରୟର ଖବର ପାଇବା କଥା । ଜଗଦୀଶ୍ ବିସ୍ମିତ ହୋଇ ସ୍ୱାମିଜୀଙ୍କ ପୁରୁଣା ଡାଏରୀରୁ ପୃଷ୍ଠାଏ କାଢ଼ି ପଢ଼ି ଶୁଣାଇଦେଲେ । ସେଥିରେ ସ୍ୱାମିଜୀ ଲେଖିଛନ୍ତି, ସେ ସନ୍ନ୍ୟାସୀ ଏକ ସମୟରେ ବମ୍ ମୋକଦ୍ଦମାରେ ଜେଲ ଯାଇଥିଲେ । ତା’ ପରେ ହୃଷିକେଶ ଯାଇ ଯୋଗାଭ୍ୟାସ ଶିକ୍ଷା କଲେ । ମାତ୍ର କିଛିଦିନ ପରେ କଲିକତା ଆସି ଗୁରୁଗିରି ଆରମ୍ଭ କରିଦେଲେ । କେତେକଙ୍କୁ ଦୀକ୍ଷା ମଧ୍ୟ ଦେଲେ । ତା’ପରେ ସେ ତ ଏକ ସି. ଆଇ. ଡ଼ି.ର ଏଜେଣ୍ଟ ହୋଇ ଯାଇଛନ୍ତି । ଯୁବକମାନଙ୍କୁ କୌଣସି ପ୍ରକାର ଆନ୍ଦୋଳନ ବିଶେଷତଃ ଉଗ୍ର ପନ୍ଥାରୁ ନିବର୍ତ୍ତାଇବା ହେଉଛି ତାଙ୍କର କାମ । ସେ ତାଙ୍କର ସନ୍ନ୍ୟାସକୁ ନଦୀର ଗତି ପରିବର୍ତ୍ତନ ପାଇଁ ଯେପରି ବନ୍ଧ ପକାଇ ଦିଆଯାଏ, ସେହିପରି ବ୍ୟବହାର କରୁଛନ୍ତି ଯୁବ ଅସନ୍ତୋଷର ଗତି ପରିବର୍ତ୍ତନ ପାଇଁ । ତାଙ୍କର ମଧ୍ୟ କିଛି ସାଧନା ଅଛି । ତାଙ୍କ ସହିତ ସ୍ୱାମିଜୀଙ୍କ ଚିଠିପତ୍ର ଅନେକ ବର୍ଷ ଚାଲିଥିଲା । ତା’ପରେ ସ୍ୱାମିଜୀ ତାଙ୍କ ସହିତ ଆଉ ଯୋଗାଯୋଗ ରଖିଲେ ନାହିଁ । ବାଳକୃଷ୍ଣ ବିସ୍ମିତ ହୋଇ ପଚାରିଲେ, “ତା’ହେଲେ ସେ ଏଠାରେ ତୁଳସୀ ଆସି ରହିବା ଖବର ପୁଣି ତୁ ଆସିଅଛୁ ବୋଲି କିପରି ଜାଣିଲେ ?” ଜଗଦୀଶ୍ କହିଲେ, “ଏ ଶେଷାଶ୍ରୟ ଜାଗାଟି କଲିକତାର ଜଣେ ଭଦ୍ରଲୋକଙ୍କ ନାମରେ ପଟ୍ଟା ନିଆ ହୋଇଥିଲା । ସେ ଭଦ୍ରଲୋକ ସ୍ୱାମିଜୀଙ୍କୁ ବହୁ ପ୍ରକାରେ ସାହାଯ୍ୟ କରୁଥିଲେ । ମଝିରେ ମଝିରେ ସେ ମଧ୍ୟ ପୁରୀ ଆସୁଥିଲେ । ସ୍ୱାମିଜୀଙ୍କ ସହିତ ଦେଖା କରୁଥିଲେ । ତେଣୁ ସେ ତୁଳସୀ ଖବର ଜାଣିଥିବେ । ଏ ଭିତରେ ବୋଧହୁଏ ସେ ପୁରୀ ଆସି ମୋ ଖବର ବୁଝିଥିବେ । ତାଙ୍କରିଠାରୁ ସନ୍ନ୍ୟାସୀ ଏଠା ଖବର ପାଇଥିବେ । ସେ ଭଦ୍ରଲୋକ ସେ ସନ୍ନ୍ୟାସୀଙ୍କର ମଧ୍ୟ ପୃଷ୍ଠପୋଷକ । ଯୋଗମାର୍ଗରେ ଯେଉଁମାନେ ଯିବାକୁ ବସନ୍ତି, ସେମାନଙ୍କୁ ସାହାଯ୍ୟ କରିବା ଏକ ଧର୍ମ ବୋଲି ସେ ମହାଶୟ ମନେ କରନ୍ତି । ତେଣୁ ସନ୍ନ୍ୟାସୀଙ୍କ ଏଠା ଖବର ଜାଣିବା କିଛି ବିଚିତ୍ର ନୁହେଁ । ଅଚ୍ଛା, କ’ଣ ସେ ପରାମର୍ଶ ଦେଲେ ?”

ବାଳକୃଷ୍ଣ ପରିହାସ କରି କହିଲେ,"କିଛି କରିବାର ନାହିଁ, ଯାଉ ଜଗଦୀଶଙ୍କ ଚେଲା ହୋଇଯାଅ ।" କିଛି ନ କହି ଜଗଦୀଶ ଚୁପ୍ ହୋଇଯାଇ ସ୍ୱାମିଜୀଙ୍କ କାଗଜପତ୍ର ସବୁ ସଜାଡ଼ିବାରେ ଲାଗିଲେ । କି ବିଷୟ ଆଲୋଚିତ ହେବ କେହି କିଛି ଜାଣିପାରୁ ନ ଥାନ୍ତି । କିଛିକ୍ଷଣ ନୀରବତା ପରେ ଜଗଦୀଶ ସ୍ମିତହାସ୍ୟରେ ପଚାରିଲେ—"ଜୁଆଡ଼େ ଆସିଲ, କିଛି ତ କହିଲ ନାହିଁ ।" ବାଳକୃଷ୍ଣ ହସି ହସି କହିଲେ, "ଆମେ ବୁଲୁଛୁ ଘୂରିଆଡ଼େ, ତୋ କଥା ଶୁଣୁଥିଲୁ, ଆସିଲୁ ଦେଖିବାକୁ କିପରି ଅଛୁ ସଙ୍ଗୁଲିବା ପାଇଁ ।" ଶରତ କିନ୍ତୁ ଗମ୍ଭୀର ଭାବରେ କହିଲେ—"ଆମେ ମଝି ସମୁଦ୍ରରେ ଦିଗବିଦିଗ ଶୂନ୍ୟ ହୋଇ ବାହିଚାଲିଛୁ, କେଉଁ କୂଳରେ ଲାଗିବୁ କିଛି ସ୍ଥିର କରିପାରୁନାହୁଁ ।" ଜଗଦୀଶ୍—"ଅସ୍ଥିରତାକୁ ପ୍ରଶ୍ରୟ ଦେଲେ ସେ ତ ବଢ଼ି ବଢ଼ି ଚାଲିବ । କିଛି ଗୋଟେ ସ୍ଥିର କରିନିଅ, ଦୁହେଁ ଜଣ ଗୋଟିଏ କୂଳରେ ଲାଗିବ ବୋଲି ସ୍ଥିର କରିଛ ?"

ଶରତ—"ତା ବି ମଧ୍ୟ ଠିକ୍ ନାହିଁ ।"

ବାଳକୃଷ୍ଣ—"କିନ୍ତୁ ଏଟା ନିଶ୍ଚିତ ତୋ କୂଳରେ ଆସି ଲାଗିବୁ ନାହିଁ । ଜଗଦୀଶ ହସିଲେ—"ଏ କୂଳରେ ବଡ଼ ଜାହାଜ ଲାଗିପାରେ ନାହିଁ, ଛୋଟ ଛୋଟ ଡୁଲି ଡଙ୍ଗା ଆସି ଏଠି ଲାଗେ । ବଡ଼ ବଡ଼ ଜାହାଜ ତୁମେ ସବୁ ବଡ଼ ବଡ଼ ବନ୍ଦରରେ ଲାଗିବାର କଥା ।"

ଶରତ—"ଆଚ୍ଛା, ତୋର ପରାମର୍ଶ କଅଣ ? ଆମେ ଆସିଥିଲୁ ପୂର୍ବ ପରି ଆମ ଭିତରେ ଆଲୋଚନା କରିବା ପାଇଁ ।"

ଜଗଦୀଶ—"ଆଉ କଅଣ ଆଲୋଚନା ହେବା ପାଇଁ ବାକୀ ଅଛି । ଏଣିକି ମନ ସ୍ଥିର କରିବାର କଥା ।"

ତା'ପରେ ନାନା ପ୍ରକାର ବିକ୍ଷିପ୍ତ ଆଲୋଚନା ଚାଲିଲା । କିଛିକ୍ଷଣ ପରେ ଜଗଦୀଶ ବାହାରିଲେ ଯୋଗଦାଶ୍ରମକୁ ଯିବା ପାଇଁ । ସେଠାରେ ପୂର୍ବାହ୍ନ ଭୋଜନ ସମୟ ହୋଇଗଲାଣି । ସେଇଠି ସେ ଦୁଇଓଳି ଭୋଜନ କରିବା ପାଇଁ ଯାନ୍ତି । ଶରତ ଓ ବାଳକୃଷ୍ଣ ଉଠି ବାହାରିବାକୁ ବସିଲେଣି, ଏହି ସମୟରେ ସଦର ଥାନା ପୋଲିସ୍ ସବ୍‌ଇନ୍‌ସପେକ୍ଟର ଓ ଜଣେ କନେଷ୍ଟବଳ ସାଇକଲ୍‌ରେ ଚଢ଼ି ଆସି ଉପସ୍ଥିତ ହେଲେ । ଏମାନଙ୍କୁ ଦେଖି ତିନିକୁ ତିନିହେଁ ଟିକିଏ ଅପ୍ରତିଭ ହେଲେ । ଅପେକ୍ଷା ନ କରି ସବ୍‌ଇନ୍‌ସପେକ୍ଟର

ପକେଟ୍‌ରୁ ଗୋଟେ ନୋଟ୍ ଖାତା କାଢି ଲେଖିବାରେ ଲଗିଲେ—ପଗ୍ଉରିଲେ, "ଏଠି ଜଗଦୀଶ୍ କିଏ ?" ଜଗଦୀଶ୍‌ଙ୍କୁ ଚିହ୍ନି ନୋଟ୍ କଲେ, ପରେ ଅନ୍ୟ ଦୁଇଜଣଙ୍କ ନାମ ପଗ୍ଉରିଲେ—ଶରତ ସିଧା ତାଙ୍କ ନାମ କହିଦେଲେ କିନ୍ତୁ ବାଳକୃଷ୍ଣ ସବ୍‌ଇନ୍‌ସପେକଟରଙ୍କୁ ଥଟ୍ଟା କରିବାରେ ଲଗିଲେ, "ନାଁଟା ଜାଣିବା ପାଇଁ ଏତେ ବାଟ ଖରରେ ଦୌଡ଼ି ଆସିଛନ୍ତି—କ'ଣ ଆମ ହାତରେ ଛୁରୀ ଅଛି ନାଁ ବମ୍ ଅଛି । ଗୁଳୁ ଖଣ୍ଡିଏ ବି ନାହିଁ ।" ସବ୍-ଇନ୍‌ସପେକ୍‌ଟର ବ୍ୟସ୍ତ ହୋଇ କହିଲେ, "ବାବୁ, ନାଁଟା କହିଦିଅ, ମୁଁ ଯାଏ । ଆପଣମାନେ ଥାନାକୁ ଗଲେ, ସେଠୁ ଗ୍ଉଲି ଆସିଲେ । ମୋ ଗ୍ଉକିରୀ ଯାଏ କି ନ ଯାଏ । ମୁଁ କାହିଁକି ଆପଣଙ୍କ ନାମ ଜାଣିଲି ନାହିଁ ।" ବାଳକୃଷ୍ଣ ହସି ହସି ନାଁ କହିଦେଲେ । ସବ୍‌ଇନ୍‌ସପେକ୍‌ଟର ଦୀର୍ଘ ନିଶ୍ୱାସ ପକାଇ ନୋଟ୍ ବହି ପକେଟ୍‌ରେ ରଖି ଶେଷାଶ୍ରୟ ଗ୍ଉରିପାଖଯାକ ବୁଲି ଦେଖିଲେ । ଆଉ କେହି ସେଠି ରହନ୍ତିନାହିଁ ବୁଝି ସେ ଗ୍ଉଲିଗଲେ । କଲିକତାର ସି. ଆଇ. ଡ଼ି.ଙ୍କ ସହ ସନ୍ନ୍ୟାସୀଙ୍କ ସମ୍ପର୍କ ଏବଂ ଶେଷାଶ୍ରୟରେ ଆସି ସମସ୍ତଙ୍କ ନାମଧାମ ନୋଟ୍ କରିବାର ରହସ୍ୟ ତିନିହିଁଙ୍କ ମନରେ ଯେ ଅନ୍ତ ବହୁତ ଉଦ୍‌ବେଗ ଜାତ କଲ ଏଥିରେ ସନ୍ଦେହ ନାହିଁ । ଜଗଦୀଶ୍ କ୍ଷୀଣ ସ୍ୱରରେ କହିଲେ—"ପଡ଼ିଲ ଏ ଆଶ୍ରମ ଏଥର ପୋଲିସ୍‌ଙ୍କ ନଜରରେ । ସ୍ୱାମିଜୀ ଥିଲବେଳେ ବି ଏଠିକି ସି. ଆଇ. ଡ଼ି. ଯିବା ଆସିବା କରୁଥିଲେ । ସ୍ୱାମିଜୀଙ୍କ ନାମ ଶୁଣି ବାଳକୃଷ୍ଣ କୁତୁହଳୀ ହୋଇ ପଗ୍ଉରିଦେଲେ, "ଆଚ୍ଛା, ସେ ସ୍ୱାମିଜୀଙ୍କ ବୃତ୍ତାନ୍ତ କ'ଣ ? ତାଙ୍କର ନାମ ତ ଥିଲ ସଦାନନ୍ଦ ବିଶ୍ୱାସ । ଏଠି ଆସି ସ୍ୱାମିଜୀ ହେଲେ କିପରି ?" ଜଗଦୀଶ୍ ସଂକ୍ଷେପରେ ସ୍ୱାମିଜୀଙ୍କ ସମସ୍ତ ବୃତ୍ତାନ୍ତ କହିଲେ । ପରିହାସରେ ଉଡ଼ାଇ ଦେଇ ବାଳକୃଷ୍ଣ କହିଲେ, "ଏ ତ ଓଡ଼ିଶା ରାଜ୍ୟ, ଯେ କେହି ବାହାରୁ ଆସି ପୁରୀରେ ଜାଗା ଖଣ୍ଡେ ନେଇ ଦାଢ଼ି ବଢ଼ାଇ ବସିଲେ ତ ସ୍ୱାମିଜୀ ହୋଇଗଲେ—ରହ ତୁ ତୋ ସ୍ୱାମିଜୀଙ୍କୁ ନେଇ, ଆମେ ଯାଉଛୁ—ବୁଲି ବୁଲି କେଉଁଠି କିଛି ନ ମିଳିଲେ ତୋରିଠି ଆସି ପହଞ୍ଚିବୁ । ତୁ ସେତେବେଳେ ଏକ ସ୍ୱାମିଜୀ ବନିଯାଇଥିବୁ, ତୋରି ଆମେ ସବୁ ଚେଲ ହେବୁ ।" ଜଗଦୀଶ୍ ମଧ୍ୟ ପରିହାସରେ କହିଲେ, "ସେହି ସ୍ୱାମିଜୀମାନଙ୍କ ପାଖକୁ ତ ତୁମ ରାଜନୈତିକ ନେତାମାନେ ଦୌଡ଼ନ୍ତି । ଏଠିକି ଯେପରି ତୁମ ମନ୍ତ୍ରୀ ହରିଚରଣ

ଦୌଡୁଥିଲେ ।" "ସେ ବି ଏଠିକି ଆସୁଥିଲା କି ? ସେଇଥିପାଇଁ ତ ସେ ମନ୍ତ୍ରୀ ପଦରୁ ଗଲା । ଆଚ୍ଛା ହେଉ ତୁ ରହ, ଆମ ଲାଗି ବି ଈଶ୍ୱରଙ୍କୁ ତୁ ଜଣାଣ କର । କହିଦେଇ ବାଳକୃଷ୍ଣ ବିଦା ହେଲେ । ଶରତ ମଧ୍ୟ ତାଙ୍କ ସଙ୍ଗରେ ଗଲେ । ତାଙ୍କର ଆଉ କିଛି ସମୟ ଜଗଦୀଶ୍ ସହିତ ନିଭୃତ କଥାବାର୍ତ୍ତା ହେବାର ଇଚ୍ଛା ଥିଲା ପରି ମନେ ହେଲା, କାରଣ ସେ ଟିକିଏ ପଛକୁ ରହିଯାଇ ଜଗଦୀଶଙ୍କୁ ପଚାରିଲେ, "ସୁବିଧା ହେଲେ ମୁଁ ପୁଣି ଆସିବି ।"

—୧୬—

ଶେଷାଶ୍ରୟରେ ଯେତିକି ସମୟ ରହିଲେ, ଜଗଦୀଶଙ୍କ ସହିତ ଯେତିକି କଥାବାର୍ତ୍ତା ହେଲା ସେଥିରେ ବାଳକୃଷ୍ଣ ଯେତେ ପରିହାସ କରିଥାନ୍ତୁ ପଛକେ, ଶରତଙ୍କ ମନରେ ଅଲକ୍ଷିତ ଭାବରେ ନୂଆ କରି ସବୁ ଭାବିବାକୁ ଆଗ୍ରହ ଜାତ ହେଲା । ସେ ବାଟରେ ଯାଉଁ ଯାଉଁ ବାଳକୃଷ୍ଣଙ୍କୁ କହିଲେ, ବୁଝିଲୁ, ତୋର ତ ଏକ କ୍ଷେପନି ହୋଇ ମୁଁ ଗଲିଛି । ଆଉ ଇତସ୍ତତଃ ବୁଲିବାକୁ ମନ ହେଉନାହିଁ ।" ବାଳକୃଷ୍ଣ ଗମ୍ଭୀର ଭାବରେ କହିଲେ, "ଚାଲ, ଆଜି ଗୋଟିଏ ଭାବିଚିନ୍ତି, କିଛି ସ୍ଥିର ସିଦ୍ଧାନ୍ତ କରିବା ।"

ଧର୍ମଶାଳାରେ ଖିଆପିଆ ସାରି ଦୁହେଁଯାକ ବସିଲେ, ତର୍କଯୁକ୍ତି ଆଲୋଚନା କରିବା ପାଇଁ ଆଉ ବିଷୟବସ୍ତୁ କିଛି ନାହିଁ । ସବୁ ବାରମ୍ବାର ଘଣ୍ଟା ଚକଟା ହୋଇଯାଇଛି । ଖାଲି ମନ ସ୍ଥିର କରି ସିଦ୍ଧାନ୍ତ କରିବା କଥା । ବାଳକୃଷ୍ଣ ସ୍ପଷ୍ଟ କହିଲେ ସେ ରାଜନୀତି ଛାଡ଼ି ପାରିବେ ନାହିଁ । ଏ ଅବସ୍ଥା ବିଚାର କରି ସେ ଶାସକ ଦଳ ହେଉ ବା ଯେ କୌଣସି ଦଳ ହେଉ ସେଥିରେ ଯୋଗ ଦେଇ ନିଜର ବିଚାରକୁ ଅନ୍ୟମାନଙ୍କ ଦ୍ୱାରା ଗୃହୀତ କରାଇବାକୁ ଚେଷ୍ଟା କରିବେ । ଶରତ ମଧ୍ୟ ଅତି ସ୍ପଷ୍ଟ ଭାବରେ କହିଲେ ସେ ଆଗେ ନିଜ ଘରକୁ ଯିବେ । ଘର ସଂସାରର ପରିସ୍ଥିତି ଦେଖି ତାକୁହିଁ କେନ୍ଦ୍ର କରି ସେ ଯାହା କରିବେ । ତ୍ୟାଗୀ ସହୀଦ୍ ହେବାର୍ ଅଭିଳାଷ ତାଙ୍କର ଆଉ ନାହିଁ । ଏକ ପରିହାସୋକ୍ତି କରି କହିଲେ, ଜଣେ ବୈଷ୍ଣବ ହେବ ବୋଲି ଘରୁ ବାହାରିଲେ । ଗୁରୁ ଗୃହରେ ତାଙ୍କୁ ଯେଉଁ କାମ ଦିଆ ହେଲା ସେଥିରେ ସେ ବିରକ୍ତ ହୋଇ ଘରକୁ ଫେରି କହିଲେ—

"ଲିଲ୍ଲ ଗୋଟି ଗୋଟି
ଖଇ ଗୋଟି ଗୋଟି
ବାଛୁ ବାଛୁ ଗଡି ପାହିଲ୍ଲ,
ମାଆକୁ କହିବ
ବଳଦ ହଳଟି ବିକିବ ନାହିଁ
ମୋ ବୈଷ୍ଣବ ହେବା ନୋହିଲ୍ଲ ।"

ମୋ ପକ୍ଷରେ ସେହିପରି–

"ଜେଲ୍ ଖଟିଖଟି
ନୀତି ରଟି ରଟି
ଯୁବା-ଜୀବନତ ସଇଲ୍ଲ,
ଘରକୁ ଫେରିବି
ସଂସାର ବୁଝିବି
ନେତା ହେବା ମୋର ନୋହିଲ୍ଲ ।"

ବାଳକୃଷ୍ଣ କଥାଟି ଶୁଣି ହସିପକାଇଲେ । ମାତ୍ର ସେ ମୁହୂର୍ତ୍ତକ ପାଇଁ ରହିଲ । ଗମ୍ଭୀର ହୋଇଗଲେ, ଶରତ ମଧ୍ୟ ସେ ପରିହାସ ଉକ୍ତି କରିଥିଲେ ଗଭୀର ମନୋବେଦନାକୁ ଲୁଗ୍ୱଇବା ପାଇଁ, ତେଣୁ ସେ ମଧ୍ୟ ଗମ୍ଭୀର ହୋଇ ପୁଣି ଦୃଢ଼ଭବରେ କହିଲେ ସେ ସେହିଦିନ ସନ୍ଧ୍ୟାରେ ନିଜ ଗ୍ରାମକୁ ଫେରିବାର ସିଦ୍ଧାନ୍ତ ଜଣାଇ ଦେଲେ, ବାଳକୃଷ୍ଣଙ୍କୁ ସୁଗ୍ୱଇ ଦେଉଥିଲେ । ମନ ଯୁଆଡ଼କୁ ଗ୍ୱହିଁଲ, ତଦନୁସାରେ ଯୁକ୍ତି ମଧ୍ୟ ଗ୍ୱରିଆଡ଼ୁ ଆସି ମନକୁ ସାହାଯ୍ୟ କରିଥାଏ । ଶରତ ଗମ୍ଭୀର ହୋଇ କହିଲେ, "ତୁ ବୁଝିପାରୁନାହୁଁ, ତୋର ଘରର ଚିନ୍ତା ନାହିଁ, ଜଗଦୀଶ୍ୱର ମଧ୍ୟ କିଛି ଚିନ୍ତା ନାହିଁ, ସେ ବହୁକାଳରୁ ଘଟଣା ଚକ୍ରରେ ସନ୍ନ୍ୟାସୀ ହୋଇଯାଇଛି । ବର୍ତ୍ତମାନ ଯୋଗସାଧନା କରିବା ତା ପକ୍ଷରେ ସ୍ୱାଭବିକ । କିନ୍ତୁ ମୋର ତ ପରିବାର ପ୍ରତି କର୍ତ୍ତବ୍ୟ ଅଛି । ବାପାଙ୍କ ପେନ୍‌ସନ୍ ଉପରେ ଆଉ କେତେକାଳ ଚଳି ହେବ ? ପୁଅର ତ କିଛି କିନାରା କରିବାକୁ ହେବ ।" ବିରକ୍ତ ହୋଇଯାଇ ବାଳକୃଷ୍ଣ କହିଲେ, "ଏସବୁ ଅବସ୍ଥା କ'ଣ ନୂଆ ହୋଇ ସୃଷ୍ଟି ହେଲ ? ଏତ ମୂଳରୁ ଥିଲ । ବର୍ତ୍ତମାନ ମନ ଦବିଯିବାରୁ ଏସବୁ ପ୍ରତି

ଢୋର ଦୃଷ୍ଟି ଦିଆଯାଉଛି । ବୁଝିପାରୁନାହୁଁ ଆମପରି ପ୍ରବୀଣମାନଙ୍କ ମନ ଯଦି ଦବିଯାଏ ତେବେ ତରୁଣମାନଙ୍କୁ ଆଉ ତ ଉତ୍ସାହ ଦେବାପାଇଁ କିଛି ରହିବ ନାହିଁ ।" ଶରତ–"ବାଜେ କଥା କହନାହିଁ । କୌଣସି ତରୁଣ ଆମର ଏ ବ୍ୟର୍ଥ ଜୀବନ ପ୍ରତି ଦୃଷ୍ଟି ଦେଉନାହାନ୍ତି । ସେମାନେ ବିଶ୍ୱାସ କରୁଛନ୍ତି ଆମର ସମସ୍ତ ଉଦ୍ୟମ ବ୍ୟର୍ଥ ହୋଇଯାଇଛି । ସେମାନେ ସାର୍ଥକତାର ନୂତନ ପନ୍ଥା ଖୋଜିବୁଲୁଛନ୍ତି । ଆମର ବର୍ତ୍ତମାନ ଅବସର ନେବାର କଥା ।" ବାଳକୃଷ୍ଣ–"ଜୁଆର ଆସିଲାବେଳେ ଭରପୂର ପାଣି । ବଡ଼ ବଡ଼ ବୋଇତ ସବୁ ଅବାଧରେ ଭସିଯାଏ । କିନ୍ତୁ ଭଟ୍ଟା ପଡ଼ିଗଲେ– କାଦୁଅ ପଙ୍କ ପଥର ସବୁ ବାହାରିପଡ଼େ । ଛୁଲିଡ଼ଙ୍ଗାଟିଏ ମଧ୍ୟ ଯିବା କଷ୍ଟକର ହୁଏ । ସେଥିପାଇଁ କଅଣ ନାଉରୀ ଡ଼ଙ୍ଗା ଛାଡ଼ି ପଳାଏ । ଜୁଆର ଆସିଥିଲା । ଭଟ୍ଟା ପଡ଼ିଛି । ପୁଣି ଜୁଆର ଆସିବ ।

ଶରତ–"ଆମ ଜୀବନରେ ନୁହେଁ । ଜୁଆର ଆସିବ ତରୁଣଙ୍କ ଜୀବନରେ । ସେହିମାନଙ୍କ ହାତକୁ କାତ ଆହୁଲ ବଢ଼ାଇ ଦେଇ ଆମେ ଡଙ୍ଗାରୁ ବାହାରି କୂଳକୁ ଚାଲିଆସିବା ହେବ ବିଜ୍ଞତା । ଏହିପରି କେତେ କଣ ଯୁକ୍ତି ଚାଲେ । ତାର ଅନ୍ତ ନାହିଁ । ଶେଷରେ ତ ଯେ ଯାହା ବାଟରେ ଯିବାକୁ ସେମାନେ ବାଧ୍ୟ ହୋଇ ସିଦ୍ଧାନ୍ତ କଲେ । ଜଗଦୀଶ୍ ତ ଆଗରୁ ତା'ର ବାଟ ଧରିଛି । ଶରତ ବର୍ତ୍ତମାନ ତାଙ୍କ ବାଟ ଧରିଲେ ।

ବାକି ରହିଲେ ବାଳକୃଷ୍ଣ । ବାସ୍ତବିକ୍ ଘରେ ତାଙ୍କ ପାଇଁ କୌଣସି କାମ ନାହିଁ । ସେ ଘର ସଂସାର ସହିତ ଜଡ଼ିତ ହେଲେ ଯାନର ପଞ୍ଚମ ଚକ ପରି ଅସୁବିଧା ସିନା ହେବ, ତାଙ୍କ ଯୋଗେ କେହି କୌଣସି ପ୍ରକାରେ କିଛି ସାହାଯ୍ୟ ପାଇବେ ନାହିଁ । ଏହା ସେ ଚିନ୍ତା କରି ଜାଣି ପାରୁଛନ୍ତି । ସନ୍ନ୍ୟାସ ଜୀବନ ପ୍ରତି ତାଙ୍କର ଆଦୌ ସ୍ପୃହା ନାହିଁ । ଏଣୁ ରାଜନୀତି ମାର୍ଗ ହିଁ ଏକମାତ୍ର ମାର୍ଗ ଯେଉଁଥିରେ ସେ ଜୀବନ ଅତିବାହିତ କରିବାକୁ ବାଧ୍ୟ ବୋଲି ତାଙ୍କର ମନ କହୁଛି । ସେ ଯଥାସାଧ୍ୟ ମନ ଏବଂ ପରିସ୍ଥିତିକୁ ବିଶ୍ଳେଷଣ କଲେ । ଏପରିକି ସେ ବିଶ୍ଳେଷଣକୁ ଲେଖି ପକାଇଲେ ତାଙ୍କର ବନ୍ଧୁମାନଙ୍କୁ ବୁଝାଇବା ପାଇଁ ତାଙ୍କର କାର୍ଯ୍ୟକ୍ରମ ତାଙ୍କର ବିଶ୍ଳେଷଣ ଏହି–"ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ରରେ ରାଜନୀତି

କହିଲେ ବୁଝାଏ ନିର୍ବାଚନରେ ଅଂଶ ଗ୍ରହଣ ଓ ନିର୍ବାଚନ ମାଧ୍ୟମରେ ଶାସନ କ୍ଷମତାରେ ପ୍ରବେଶ । ପୁଣି ନିର୍ବାଚନ ରାଜନୀତି କହିଲେ ବୁଝାଏ ଦଳଗତ ରାଜନୀତି । ଗଣତନ୍ତ୍ରରେ ଏକାଧିକ ଦଳ ପରସ୍ପର ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବେ ଏବଂ ଯେଉଁ ଦଳ ଏକାକୀ ହେଉ ବା ଆଉ କାହାରି ସହିତ ମିଶି ହେଉ, ସଂଖ୍ୟା ଗରିଷ୍ଠ ହେବ, ସେହି ଶାସନଭାର ଗ୍ରହଣ କରିବ । ନିର୍ଦ୍ଦଳୀୟ ନିର୍ବାଚନର ସ୍ୱର ଯେଉଁମାନେ ଉଠାଇଛନ୍ତି, ସେମାନେ କୁହୁଡ଼ିରେ ପହଁରୁଛନ୍ତି । ସେ ସ୍ୱରର ଅର୍ଥ ହେଉଛି ନିର୍ଦ୍ଦଳୀୟ ଟିକଟ ଘେନି ନିର୍ବାଚନରେ ଅନ୍ୟ ଟିକଟଧାରୀମାନଙ୍କ ସହିତ ପ୍ରତିଦ୍ୱନ୍ଦିତା କରିବା । ଯେଉଁ ଦଳ ପ୍ରତି ଭୋଟଦାତାଙ୍କ ଅଧିକ ସମର୍ଥନ ଅଛି ସେହି ଦଳରେ ଯୋଗଦେବା ସ୍ୱାଭାବିକ । ମାତ୍ର ସେ ଦଳର ନୀତି ଏବଂ ଆଭିମୁଖ୍ୟ ସହିତ ନିଜର ନୀତି ଓ ଆଭିମୁଖ୍ୟ ଖାପ୍ ଖାଇବା ଆବଶ୍ୟକ ଯଦି ତା' ନ ହୋଇପାରେ ତେବେ ଅନ୍ୟ ଯେଉଁ ଦଳ ସହିତ ମନ ମିଳିବ, ସେଥିରେ ଯୋଗଦେବାକୁ ହେବ । ଶାସନରେ ଅଂଶ ଗ୍ରହଣ କହିଲେ ଯେ କେବଳ ମନ୍ତ୍ରୀପଦ ତା' ନୁହେଁ, ବ୍ୟବସ୍ଥା ସଭାର ଜଣେ ସାଧାରଣ ସଭ୍ୟ ହେଲେ ମଧ୍ୟ ଶାସନର ଦାୟିତ୍ୱରେ ଅଂଶ ଗ୍ରହଣ କରିହେବ । କାରଣ ଗଣତନ୍ତ୍ର ହେଲା ଏକ ବାଦୀପାଇ । ଶାସକ ଏବଂ ବିରୋଧୀ ଏହିପରି ଦୁଇଦଳ ଆବଶ୍ୟକ ଗଣତନ୍ତ୍ରର ସୁପରିଚାଳନା ପାଇଁ । କୌଣସି ଏକ ଦଳରେ ମିଶିବା ନିଶ୍ଚିତ ହେଲା ପରେ କେଉଁ ଦଳ ସହିତ ମନର ମେଳ ରହିବ, ତା ପରୀକ୍ଷା ଆବଶ୍ୟକ । ପରୀକ୍ଷା ପରେ ସ୍ପଷ୍ଟ ଜଣାଯାଉଛି ଯେଉଁ ଦଳ ଗାନ୍ଧିନୀତିକୁ ଆଦର୍ଶରଖି କାର୍ଯ୍ୟ କରୁଥିବ, ସେହି ଦଳରେ ହିଁ ଯୋଗଦେବା ବାଞ୍ଛନୀୟ । ଏହି କେତେଟା ବର୍ଷରେ ଗାନ୍ଧିଜୀ ଏପରି ଏକ ଯୁଗାତୀତ ପୁରୁଷ ହୋଇ ଊର୍ଦ୍ଧ୍ୱକୁ ଚାଲିଗଲେଣି ଯେ ତଳେ ସମସ୍ତଙ୍କ ଶିରରେ ତାଙ୍କର ଆଶୀର୍ବାଦ ବୃଷ୍ଟି ହେଉଛି—ଯେପରି ସମୁଦ୍ର ଜଳ ବାଷ୍ପ ହୋଇ ଉପରକୁ ଉଠିଯାଇ ମେଘ ହୋଇଗଲେ କେବଳ ଯେ ସମୁଦ୍ରରେ ବର୍ଷା ଢାଳେ ତା' ନୁହେଁ, ପର୍ବତ ଶିଖରରେ ମଧ୍ୟ ଜଳବର୍ଷଣ କରେ । ଏଣୁ ଗାନ୍ଧିଜୀଙ୍କ ନାମ ତ ସବୁଦଳ ନେଉଛନ୍ତି ନିର୍ବାଚନରେ ଜିତିବା ପାଇଁ । କିଏ ତାଙ୍କ ନୀତିକୁ ମାନୁଛି କି ନ ମାନୁଛି, ତା ନିର୍ଣ୍ଣୟ କରିବା ବର୍ତ୍ତମାନ ପରିସ୍ଥିତିରେ ଅସମ୍ଭବ । ଏଣୁ ନିର୍ବାଚନରେ ଯେତେ ଦଳ ଗାନ୍ଧିଜୀଙ୍କ ନାମ ବ୍ୟବହାର କରୁଛନ୍ତି,

ସେଥିମଧ୍ୟରୁ ଗୋଟିକରେ ଯୋଗଦେବାରେ ଆପତ୍ତି କିଛି ନାହିଁ, ପୁଣି ଯେଉଁ ଦଳରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପ୍ରତି ସମ୍ମାନ ନାହିଁ, ଯେଉଁ ଦଳରେ ପ୍ରବୀଣମାନଙ୍କ ପ୍ରତି ତୁଚ୍ଛତାଛଲ୍ୟର ଭାବ ସେ ଦଳ ଗାନ୍ଧିଜୀଙ୍କ ନାମ ବ୍ୟବହାର କରୁଥିଲେ ମଧ୍ୟ ସେଥିରେ ଯୋଗଦେବା ଠିକ୍ ହେବ ନାହିଁ ଜଣେ ପୂର୍ବତନ ସ୍ୱାଧୀନତା ସଂଗ୍ରାମୀ ବୋଲି ସମ୍ମାନ ଦେବେ ଯେଉଁ ଦଳର ଲୋକେ, ସେଥିରେ ଯୋଗଦେବାକୁ ହେବ । ଆଜିର ଶାସକଦଳ ନେତୃତ୍ୱକୁ ଆଖିବୁଜା ସମର୍ଥନକାରୀଙ୍କ ଦ୍ୱାରା ଗଠିତ । ସେ ବ୍ୟୂହ ଭିତରେ ପ୍ରବେଶ କରିପାରିଲେ ଭଲ । ଯଦି ତାହା ନ ହୋଇପାରେ, ତେବେ ସେହି ଦଳର ପରିଧି ମଧ୍ୟରେ ଯେଉଁ ଅସନ୍ତୁଷ୍ଟ ଗୋଷ୍ଠୀ ଅଛି ସେଥିରେ ପ୍ରବେଶ କରି ଅଙ୍ଗୁଳି ପ୍ରବେଶାତ୍ ବାହୁ ପ୍ରବେଶ ନୀତିରେ ଦିନେ ଶାସକ ଦଳଟିକୁ ମଧ୍ୟ କରାୟତ୍ତ କରାଯାଇପାରେ । ସବୁ ନିର୍ଭର କରିବ ପ୍ରତ୍ୟେକ ସ୍ଥିତିର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ।”

ଏହିପରି ଗଭୀର ଭାବରେ ସବୁଦିଗ ଭାବିଚିନ୍ତି ବାଳକୃଷ୍ଣ ଠିକ୍ କଲେ ହରିଚରଣଙ୍କ ସହିତ ଆଗେ ଦେଖା କରିବେ । ସେ ଜଣେ ପୂର୍ବତନ ସ୍ୱାଧୀନତା ସଂଗ୍ରାମୀ । ଶାସକ ଦଳଦ୍ୱାରା ବହିଷ୍କୃତ ହୋଇଥିଲେ ମଧ୍ୟ ସେ ଦଳର ପରିଧି ବାହାରକୁ ଚାଲିଯାଇ ନାହାନ୍ତି । ତାଙ୍କ ସହିତ ପୂର୍ବରୁ ପରିଚୟ ଅଛି । ଗତ କେତେ ବର୍ଷ ହେଲା ଦେଖାସାକ୍ଷାତ ନ ହୋଇଥିଲେ ମଧ୍ୟ ପୂର୍ବ ପରିଚୟକୁ ଦୋହରାଇ ଦେବା କଠିନ ହେବ । ସେ ମଧ୍ୟ ବର୍ତ୍ତମାନ ଅବସ୍ଥାରେ ଜଣେ ବିଶିଷ୍ଟ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀଙ୍କ ସହାୟତା ଆଦରରେ ଗ୍ରହଣ କରିବେ । ହରିଚରଣ ବାବୁଙ୍କୁ ଦେଖା କରିବାକୁ ହେବ ।

—୧୭—

ଦେଖା କରିବାପାଇଁ ସଂଯୋଗ ବଶତଃ ଏକ ଅବକାଶ ମଧ୍ୟ ଜୁଟିଗଲା । ହରିଚରଣ ମନ୍ତ୍ରୀପଦ ଏବଂ ଦଳରୁ ବହିଷ୍କୃତହୋଇ ବର୍ତ୍ତମାନ ସେ ଦଳର ସ୍ଥାନୀୟ ନେତୃତ୍ୱ ବିରୁଦ୍ଧରେ କେନ୍ଦ୍ରୀୟ ନେତୃତ୍ୱଠାରେ ଆପତ୍ତି ଅଭିଯୋଗକରି ସେ ଏକ "ପ୍ରଗତିଗୋଷ୍ଠୀ" ନାମରେ ଉପଦଳ ସଂଗଠନ

କରୁଛନ୍ତି । ଏହି ସଂକ୍ରାନ୍ତରେ ସେ ଏକ ଦୀର୍ଘ ବିବୃତି ସମ୍ବାଦପତ୍ରମାନଙ୍କରେ ପ୍ରକାଶ କରିଛନ୍ତି । ତା'ର ସାରମର୍ମ ହେଉଛି, "ବର୍ତ୍ତମାନ କ୍ଷମତାର ମୋହରେ ପୂଜ୍ୟ ବାପୁଜୀଙ୍କ ନୀତି ଯେପରି ପଦଦଳିତ ହେଉଛି, ତାହା ସହ୍ୟ କରିବା ଅସମ୍ଭବ । ଏ ଦୁର୍ନୀତୀ ବିରୁଦ୍ଧରେ ସଂଘବଦ୍ଧହୋଇ ଦଳକୁ ଶୁଦ୍ଧପୂତ ଗାନ୍ଧିପନ୍ଥୀ କରିବାକୁ ହେବ । ଏଥିପାଇଁ ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ତ୍ୟାଗ କଷ୍ଟ ସ୍ୱୀକାର କରିଥିଲେ, ଯେଉଁମାନେ ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଗଠନ ମୂଳକ କାର୍ଯ୍ୟରେ ଆତ୍ମନିୟୋଗ କରି ଆସୁଛନ୍ତି, ସେମାନେ ବାହାରିପଡ଼ି ଏ ସନ୍ଧିକ୍ଷଣରେ ଦେଶରେ ଗାନ୍ଧିବାଦର ରକ୍ଷାକରନ୍ତୁ । ଗାନ୍ଧିଜୀଙ୍କ ସମାଜବାଦ ହିଁ ବାସ୍ତବରେ ଭାରତୀୟ ସମାଜବାଦ, ଋଷ୍‌ର ସମାଜବାଦ ଯେ ଭାରତ ଉପରେ ଲଦା ହୋଇଛି, ତା'ର ପ୍ରତିରୋଧ ଅତି ଆବଶ୍ୟକ ।" ଏ ବିବୃତି ପ୍ରକାଶପରେ ହରିଚରଣଙ୍କ ସହିତ ଦେଖା ଓ ଆଲୋଚନା କରିବାପାଇଁ ବାଳକୃଷ୍ଣଙ୍କର କୌଣସି ଭାବବିରୋଧ ମନରେ ରହିଲା ନାହିଁ ।

ସେ ଭୁବନେଶ୍ୱରରେ ହରିଚରଣଙ୍କ ବାସଭବନରେ ପହଞ୍ଚି ଦେଖନ୍ତି ସେଠାରେ ପ୍ରାୟ ଦଶ ବାର ଜଣଙ୍କର ଏକ ବୈଠକ ଚାଲିଛି । ଘମାଘୋଟ ଆଲୋଚନା ଚାଲିଛି ଉପଦଳର ସଂଗଠନ ବିଷୟରେ । ଆଗରୁ ଖବରଦେଇ ଭିତରକୁ ଯିବାର ବ୍ୟବସ୍ଥା ମନ୍ତ୍ରୀପଦ ଗଲାଠାରୁ ଆଉ ନାହିଁ । ବାହାରର ପ୍ରତୀକ୍ଷା କକ୍ଷ ଓ ଭିତରର ଅଫିସ୍ ପ୍ରକୋଷ୍ଠ ଏପରି ପ୍ରଭେଦ ବି ଆଉ ନାହିଁ, ସାଧାରଣଙ୍କ ଘରେ ଯେପରି ଗୋଟିଏ ବାହାରଘରେ ସବୁକାମ ଚାଲିଯାଏ, ସେହିପରି ହରିଚରଣଙ୍କ ଘରର ବର୍ତ୍ତମାନ ଅବସ୍ଥା । ବାହାର-ଘରେ ତୁମୁଳ ଆଲୋଚନା ଚାଲିଥିଲାବେଳେ ବାଳକୃଷ୍ଣ ଯାଇ ପହଞ୍ଚିଗଲେ । ନମସ୍କାର କରି ହରିଚରଣଙ୍କୁ କହିଲେ "ଚିହ୍ନି ପାରୁଛନ୍ତି ?" ଦୋ ଦୋ ଚିନ୍ତା ହୋଇ ହରିଚରଣ କିଛିକ୍ଷଣ ଚାହିଁରହିଲେ, ତା'ପରେ ବାଳକୃଷ୍ଣ ନିଜର ପରିଚୟ ଦେବାମାତ୍ରେ ହରିଚରଣ ଉଠି କୋଳାଗ୍ରତକରି ବୈଠକରେ ଜଣେ ସମ୍ମାନିତ ଅତିଥି ହିସାବରେ ବସାଇଲେ ଏବଂ ତାଙ୍କର ପରିଚୟ ବନ୍ଧୁମାନଙ୍କୁ ଦେଇ କହିଲେ "ଏଇ ଦେଖ, ଏ ଜଣେ ମୋର ପୂର୍ବତନ ସହକର୍ମୀ । କେତେ ନିର୍ଯ୍ୟାତନା ସେ ସମୟରେ ଏ ସହିଛନ୍ତି !! ଆଜି ଯାଙ୍କର

ସ୍ଥାନ ସାଧାରଣ ଜୀବନରେ ଏମାନେ ଉପେକ୍ଷିତ, ଆଉ ଅନୁଗୃହୀତ କିଏ ନାଁ ଯେଉଁମାନେ ଋଷିଆର ଜୟ ଜୟକାର କରି ଚେରିକଟ୍ ପ୍ୟାଣ୍ଟସ ଟଂ ପନ୍ଧି ସିଗାରେଟ ମଦପେଇ ବିପ୍ଳବୀ ବୋଲଉଛନ୍ତି । ଏ ଆସିଗଲେ ମୋର ଜଣେ ପ୍ରଧାନ ସହାୟକ ହେବେ । ଆଜି ଆମର ଆଲୋଚନା ବନ୍ଦରହୁ । ମୁଁ ଏ ବନ୍ଧୁଙ୍କ ସଂଗରେ ଆଲୋଚନା କରି ପୂର୍ବତନ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଏକଜୁଟ୍ କରାଏ—ଜୀବନ ଥାଉ ଆଉ ଗାନ୍ଧିଙ୍କ ସ୍ମୃତିକୁ କାର୍ଲମାର୍କସ ମୂଳପୋଛ କରିଦେବାକୁ ବସିଛନ୍ତି, ତା କଦାପି କରାଇ-ଦିଆଯିବନାହିଁ । ବାଳକୃଷ୍ଣ ଉପସ୍ଥିତଥିବା ଅନ୍ୟମାନଙ୍କ ସଂକ୍ଷିପ୍ତ ପରିଚୟ ପାଇଲ । ସମସ୍ତେ ଯୁବକ, ଏକମାତ୍ର ପ୍ରୌଢ଼ ଥିଲେ ହରିଚରଣ, ଆଉଜଣେ ପ୍ରୌଢ଼ଙ୍କ ପରିଚୟ ପାଇ ଜଣେ ଯୁବକ କହିଲେ, "ଆସନ୍ତୁ ଆପଣମାନେ, ଆମକୁ ବାଟ ଦେଖାନ୍ତୁ । ପରାମର୍ଶ ଦିଅନ୍ତୁ । ମାଡ଼ିଯିବୁ ଆଗକୁ । ଆମର ଗତିରୋଧ କେହି କରିପାରିବେ ନାହିଁ ।" "ଆଚ୍ଛା ହେଉ, ପରେ ସବୁ ଆଲୋଚନା କରିବା" କହି ହରିଚରଣ ସମସ୍ତଙ୍କୁ ବିଦାୟ ଦେଲେ ତା'ପରେ ଭିତର କୋଠରୀକୁ ଆସି ବାଳକୃଷ୍ଣଙ୍କ ସହ ଏକାନ୍ତରେ କଥାବାର୍ତ୍ତା ହେଲେ ।

ହରିଚରଣ ପଚାରିରେ ତାଙ୍କ ପୂର୍ବ ସହକର୍ମୀ ବନ୍ଧୁମାନଙ୍କ କଥା ବାଳକୃଷ୍ଣ ଦୁଃଖର ସହିତ କହିଲେ ଜଗଦୀଶ ପୁରୀର ଶେଷାଶ୍ରୟ ନାମକ ଏକ ପରିତ୍ୟକ୍ତ ମଠରେ ଯୋଗ ସାଧନା କରୁଛି । ଶରତ ତା'ର ଘର-ସଂସାର ବୁଝିବା ପାଇଁ ଗ୍ରଲିଗଲଣି । ଶେଷାଶ୍ରୟ କଥା ଶୁଣି ହରିଚରଣଙ୍କ ଚେହେରାରେ ବିମର୍ଷତା ଫୁଟି ଉଠିଲ, ତୁଳସୀ ବ୍ୟାପାର ମନେ ପଡ଼ିଗଲ । ମନଭିତରେ ଗୁଡ଼େଇ ହେଉଥିବା କ୍ଷୋଭକୁ ତଳକୁ ମୁହଁକରି ଧୀରେ ଧୀରେ କହିଦେଲେ, "ତୁଳସୀ ଆସିଥିଲ ସେ ଆଶ୍ରମ ପାଇଁ ସାହାଯ୍ୟ ମାଗିବାକୁ । ମୁଁ ଶହେଟି ଟଙ୍କା ଦେଲି । କ'ଣ ମୋ ମନକୁ ଆସିଲ, ମୁଁ କହିଦେଲି ଏ ସାହାଯ୍ୟ କଥା କାହାକୁ କହିବ ନାହିଁ । ଏଇଥିରେ ସେ ଏତେ ମର୍ମାହତ ହେଲ, ଏଠୁ ତ ଗ୍ରଲିଗଲ, ସ୍ୱାମିଜୀଙ୍କ ପାଖକୁ ମୃତ୍ୟୁ ପୂର୍ବରୁ ଯେଉଁ ପତ୍ର ଦେଇଥିଲ, ମୋତେ ମଧ୍ୟ ଯେଉଁ ପତ୍ର ଲେଖି ଛାଡ଼ିଦେଇ ଯାଇଥିଲ, ସେଥିରେ ସେହିକଥାକୁ ହିଁ ଜୋର୍ ଦେଇ ଲେଖିଲ । ମୋ ମନରେ ଦୁଃଖ, ମୁଁ ବୋଧହୁଏ ତା' ମୃତ୍ୟୁର କାରଣ ହେଲି । ମୋର ଏବେ ନୈତିକ

ସାହାସ ନାହିଁ ଏବଂ ମୁଁ ହେଉଛି ଏକ ନୀତିଶୂନ୍ୟ ଯୁଗ ପ୍ରତୀକ ବୋଲି ସେ ମନେକଲ ; ମୋରି ଯୋଗୁଁ ସ୍ୱାମିଜୀ ବି ଗଲେ. ଆଶ୍ରମ ଭାଙ୍ଗିଗଲା, ଏ ପାପର ପ୍ରାୟଶ୍ଚିତ୍ତ ପାଇଁ ମୁଁ ବାହାରିଛି ଆଖିବୁଜି ଗାନ୍ଧିଜୀଙ୍କ ଯାହା ନୀତି ତାକୁ ହିଁ ଦୃଢ଼ତାର ସହିତ ମାନି ମୁଁ ଗ୍ରଳିବି ସାଧାରଣ ଜୀବନରେ ।" ବାଳକୃଷ୍ଣ ଏ ସ୍ୱଗତ ଅନୁଶୋଚନା ଶୁଣି ସମବେଦନା ପ୍ରକାଶ କଲେ, ସେ ଆଶ୍ୱାସନା ଦେଇ କହିଲେ "ନୈତିକ ପରିବେଶରେ ଯେଉଁମାନେ ଗୋଟିଏ ଯୁଗ ଚଳିଆସିଛନ୍ତି, ସେମାନଙ୍କ ମନରେ ଗୁରୁମନ୍ୟତା ଏତେ ବେଶୀ ଯେ ସେମାନେ ମନେ କରନ୍ତି, ସେହିମାନେହିଁ କେବଳ ନୀତି ପରାୟଣ, ଅନ୍ୟମାନେ ଦୁର୍ନିତିଗ୍ରସ୍ତ । ସେମାନେ ବୁଝନ୍ତି ନାହିଁ ରାଜନୀତି ସାଧାରଣରେ ଗୃହୀତ ନୈତିକତା ଠାରୁ ଭିନ୍ନ, ଉଦାହରଣ ସ୍ୱରୂପ— "ମିଥ୍ୟା କହିବା ପାପ, ଲୁଚେଇ କୌଣସି ଅନୁଷ୍ଠାନକୁ ସାହାଯ୍ୟ କରିବା ପାପ," କିନ୍ତୁ ରାଜନୈତିକ କ୍ଷେତ୍ରରେ ଏ ନୀତିରୁ ବାଧ୍ୟ ହୋଇ ସମୟ ସମୟରେ ବିଚ୍ୟୁତ ହେବାକୁ ହୁଏ । ମୂଳ କଥା, ଗାନ୍ଧିଯୁଗର ଅନେକେ ତଥାକଥିତ ନୀତିବାଦୀ ହୋଇ ରାଜନୀତିରୁ ଅପସରିଗଲେ । ତେଣୁ ରାଜନୀତିର ପତନ ଘଟିଲା ଏବଂ ସେମାନେ ମଧ୍ୟ ସଂଗ୍ରାମରେ ଖାପଛଡ଼ା ବ୍ୟକ୍ତି ବିଶେଷ ହୋଇ ରହିଗଲେ । ଏ ବିଷୟ ନେଇ ଜଗଦୀଶ ଓ ଶରତ ସହ ମୁଁ କେତେ ଯେ ଆଲୋଚନା କରିଛି, କିଛି ଫଳ ହେଲା ! ମୋର ସଙ୍ଗୀମାନଙ୍କୁ ସାଂଗରେ ନେଇ ଏ ଯୁଗର ରାଜନୀତିରେ ପଶିବି ବୋଲି ମୁଁ ମନସ୍ଥ କରି ବହୁ ବର୍ଷ କଟାଇ ଦେଲି । ତା'ଛଡ଼ା ଭୂଦାନ କାମରେ ମୁଁ ପନ୍ଦର ବର୍ଷ ମାତିଲି । ଭାବିଲି ଏହି ଗ୍ରାମ ଆନ୍ଦୋଳନ ମାଧ୍ୟମରେ ଭାରତର ରାଜନୀତି ପ୍ରଭାବିତ ହେବ ଗାନ୍ଧିନୀତିଦ୍ୱାରା । କିନ୍ତୁ ଗାନ୍ଧି ଯେପରି ରାଷ୍ଟ୍ରଭାବନାକୁ ମୂଳବୋଲି ଧରି ତାକୁ ନିଜ ବିଚାର ଅନୁଯାରେ ପରିଚାଳନା କରୁଥିଲେ ତାଙ୍କର ଅନୁଗାମୀମାନେ ବିଶେଷତଃ ଭୂଦାନ ଆନ୍ଦୋଳନକାରୀମାନେ ରାଜନୀତି ଓ ରାଷ୍ଟ୍ରଭାବନାଠାରୁ ଏପରି ଦୂରେଇ ଗଲେ ଯେ ଶେଷରେ ସେମାନେ ସାଧାରଣ ବୁଲାବାବାଜୀଙ୍କ ଠାରୁ ଆଉରି ହୀନ ହୋଇଗଲେ । ବିରକ୍ତ ହୋଇ ମୁଁ ଛାଡ଼ି ଦେଲି, ଭାବିଲି ପ୍ରତ୍ୟକ୍ଷ ରାଜନୀତିରେ ପଶିବି । ଯଦି ମୋ ଦ୍ୱାରା କିଛି ସାଧିତ ହୋଇପାରେ । ଜୀବନଟା ମୋର ଉତ୍ସାହରେ କଟୁ, ଏହାହିଁ ମୋର ଲକ୍ଷ୍ୟ ।"

ଧୈର୍ଯ୍ୟଧରି ହରିଚରଣ ଶୁଣୁଥିଲେ । ବୋଧହୁଏ ସେ ନିଜର ମନୋଭାବକୁ ବାଳକୃଷ୍ଣଙ୍କ ମନୋଭାବ ସହିତ ମିଳାଉଥିଲେ । ତାଙ୍କ ଚେହେରାରେ କେବଳ ଗାମ୍ଭୀର୍ଯ୍ୟ ଛଡ଼ା ଅନ୍ୟ କୌଣସି ଭାବ ପ୍ରକାଶ ପାଉ ନ ଥିଲା । ସେ ଦୀର୍ଘ ନିଶ୍ୱାସ ପକାଇ ହସିଦେଇ କହିଲେ—"ଯାହା ହେଉ, ତୁମେ ଆସିଯାଇଛ, ମୁଁ ଜଣେ ସହାୟକ ପାଇଲି । ତୁମେ ଜାଣିଥିବ, ଏଯୁଗରେ ଯୁବକମାନେ ଏପରି ଅଧୀର ଓ ଅଭିଜ୍ଞତା ଉପାର୍ଜନ ଅର୍ଜନ କରିବାପାଇଁ ଏପରି ଅନିଚ୍ଛୁକ, ସେଥିରେ ତୁମେ ଆମେ ପରି ବୟସ୍କ ଲୋକେ ପାଦ ମିଳେଇ ଚାଲିବା କଷ୍ଟକର । ସେମାନେ ଚାହାନ୍ତି, ଆମ୍ଭେମାନେ ବାହା ନ ହୋଇ ସେମାନଙ୍କୁ ପାଲିଙ୍କିରେ ବସାଇ ବରବେଶବରି ବିବାହ-ବେଦୀକୁ ନେଇଯାଉଁ । ଏମାନଙ୍କୁ ଆୟତ୍ତରେ ରଖି ବର୍ତ୍ତମାନର ଶାସନ ବିରୁଦ୍ଧରେ ସଂଗଠନ କରିବା ଏକାକୀ ମୋ ପକ୍ଷରେ କଷ୍ଟକର ଥିଲା ? ତୁମେ ଆସିଗଲଣି ମୋର ସାହସ ବଢ଼ିଯାଇଛି, ନିଶ୍ଚୟ ଆମେ ଲକ୍ଷ୍ୟ ହାସଲ କରିବା।"

ଭୁବନେଶ୍ୱରରେ ବାଳକୃଷ୍ଣଙ୍କ ରହିବାର ବନ୍ଦୋବସ୍ତ କରିଦେଲେ ହରିଚରଣ ।

—୧୮—

ଦୁଧରୁ ଲହୁଣୀ ବାହାରି ଗଲା ପରେ ପୁଣି ଲହୁଣୀକୁ ଦୁଧରେ ମିଶାଇ ପୂର୍ବ ଅବସ୍ଥାକୁ ଆଣିବା ଯେପରି ଅସମ୍ଭବ, ସେହିପରି ରାଜନୈତିକ ଦଳରୁ ଛିଟିକି ଯାଇ ବହୁବର୍ଷ ବାହାରେ ରହି ପୁଣି ଫେରି ସେ ଦଳରେ ମିଶିଯିବା ସେହିପରି ଅସମ୍ଭବ । ଏ ସତ୍ୟଟି ଉପଲବ୍ଧି କରିବା ପାଇଁ ବାଳକୃଷ୍ଣଙ୍କୁ ବେଶୀ ସମୟ ଲାଗିଲା ନାହିଁ, ବାଳକୃଷ୍ଣ ଯେତେବେଳେ ନିଜର ଜ୍ଞାନ ଓ ଅଭିଜ୍ଞତାରୁ ପ୍ରସୂତ ପରାମର୍ଶ ଦେବାକୁ ବସନ୍ତି, ଯୁବକମାନେ ନିଃସଙ୍କୋଚରେ କହିଦଅନ୍ତି, "ଏ ସବୁ ପୁରୁଣା କଥା ଇତିହାସର ବିଷୟ ବସ୍ତୁ, ଆଜିର କାମରେ ଏ ଲାଗି ପାରିବ ନାହିଁ," ପ୍ରତି କଥାରେ ଯେତେ-ବେଳେ ପ୍ରବୀଣ ତରୁଣ ମଧ୍ୟରେ ଭେଦଯୋଗୁଁ ବାଳକୃଷ୍ଣଙ୍କ ମତ ଆଗ୍ରାହ୍ୟ ହେଲା, ସେତେବେଳେ ସେ ଅସମ୍ମାନିତ ହେଉଛନ୍ତି ବୋଲି ଅନୁଭବ

କରୁଥାନ୍ତି । ବେଳେବେଳେ ବିରକ୍ତ ହୋଇ ହରିଚରଣଙ୍କୁ କହନ୍ତି, "ତୁମେ ଏ ଲଗାମଛଡ଼ା ଘୋଡ଼ା ଗୁଡ଼ାକଙ୍କୁ ଚଳାଉଛ କିପରି ?" ହରିଚରଣ ହସି ହସି କହନ୍ତି–"ମୁଁ ସେ ଯୁବକମାନଙ୍କ କଥାରେ ବାଧା ଦିଏ ନାହିଁ, ସବୁ କଥାରେ ସେମାନଙ୍କ ସହିତ ସମ୍ମତ ହୋଇ ଚେଷ୍ଟା କରେ ଧୀରେ ଧୀରେ ସେମାନଙ୍କୁ ମୋ ମତକୁ ଆଣିବା ପାଇଁ ଯେପରି ବନିସି ପକାଇ ମାଛ ଧରହୁଏ ।" ଏଥିରେ ବାଳକୃଷ୍ଣଙ୍କ ମନ ମାନେ ନାହିଁ । ମେଳ ଭିତରେ କିଛି ମତ ପ୍ରକାଶ ନ କରି ବାଳକୃଷ୍ଣ ତାଙ୍କର ମତ ଓ ପରାମର୍ଶକୁ ହରିଚରଣଙ୍କୁ ଏକାନ୍ତ ଭାବରେ ଦିଅନ୍ତି । ହରିଚରଣ ଚେଷ୍ଟା କରନ୍ତି ସେ ମତକୁ ଅନ୍ୟମାନଙ୍କ ଦ୍ୱାରା ଗୃହୀତ କରିବା ଲାଗି, କିନ୍ତୁ ହରିଚରଣ ପାରନ୍ତି ନାହିଁ । ବସ୍ତୁତଃ ହରିଚରଣଙ୍କ ନିଜର ମତ ବୋଲି କିଛି ନ ଥାଏ । ସେ ମେଳ ଭିତରେ ବହୁ ମତ ଦ୍ୱାରା ପରିଗ୍ରାହିତ ହୁଅନ୍ତି । ତାଙ୍କ ମତ ଗ୍ରହଣ କରୁ-ନଥିଲେ ମଧ୍ୟ ତାଙ୍କୁ ତାଙ୍କ ଦଳର ଲୋକେ ମାନନ୍ତି । କାରଣ ସେ ହେଉଛନ୍ତି ମାଲ ମସଲା ଯୋଗାଇବା ଲୋକ । ପେଟ୍ରୋଲ୍ ପକାଇଲେ ସିନା ଗାଡ଼ି ଗ୍ଲିବ । ପାଣିରେ ତ ଗ୍ଲିବ ନାହିଁ । ଏ ତତ୍ତ୍ୱଟିକୁ ଯୁବକମାନେ ଯେପରି ଭଲ ବୁଝନ୍ତି, ପ୍ରବୀଣମାନେ ସେପରି ବୁଝନ୍ତି ନାହିଁ । ସେମାନେ ଜୋର୍ ଦିଅନ୍ତି ଗାଡ଼ିର ଇଞ୍ଜିନ୍ ଉପରେ, କିନ୍ତୁ ଯୁବକମାନେ ଜୋର୍ ଦିଅନ୍ତି ପେଟ୍ରୋଲ୍ ଉପରେ । ଏହାକୁ ଲକ୍ଷ୍ୟକରି ଥରେ ଅଧେ ବାଳକୃଷ୍ଣ କହି-ପକାଇଲେ, "ଅର୍ଥଉପରେ ପର୍ଯ୍ୟବସିତ ରାଜନୈତିକ ଦଳ କେବେହେଲେ ଜନତାର ଆଶା ଆକାଂକ୍ଷା ପୂରଣ କରିପାରିବ ନାହିଁ । ଅର୍ଥ ଯୋଗେ ଶାସନ, ପୁଣି ଶାସନ ଯୋଗେ ଅର୍ଥ । ଏହିପରି ଚକ୍ରରେ ରାଜନୀତି ଘୂରିବ ।" ଏ ସବୁ ମନ୍ତବ୍ୟ ହରିଚରଣଙ୍କୁ ସୁଖ ଲାଗେ ନାହିଁ । ସେ କହନ୍ତି "ତୁମର ଏ ସବୁ ନୀତିବାକ୍ୟ ବୟାନ୍ କରିବାର ଆବଶ୍ୟକତା କଅଣ ? ଗାୟକ, ବାଦକ, ନର୍ତ୍ତକ ଜୁଟାଇ ଯାତ୍ରାଦଳ ଗଠନ କରି ଯେପରି ଓସ୍ତାଦ୍ ନାମକରେ, ଅର୍ଥମଧ୍ୟ ଉପାର୍ଜ୍ଜନ କରେ, ସେହିପରି ଲୋକ ଜୁଟାଇ ଦଳ ଗଠନ କଲେ ସିନା ତୁମେ ନେତା ହେବ, ତା'ପରେ ଶାସନରେ ତୁମେ ମୁଖ୍ୟ ହେବ–ଦଳ ଗଠନ କରିବାକୁ ହେଲେ, ଜନତାର ସ୍ୱାର୍ଥ ପ୍ରତି ଦୃଷ୍ଟି ନ ଦେଇ ଦଳର ସ୍ୱାର୍ଥ ପ୍ରତି ଦୃଷ୍ଟି ଦେବାକୁ ହେବ । ତା'ପରେ ଜନତା

ଜନତା ବୋଲି ଯେଉଁ ଜିନିଷଟି ତୁମେ କହି ହେଉଛ, ସେ ଜିନିଷଟି କଅଣ ମୁଁ ଆଜି ପର୍ଯ୍ୟନ୍ତ ବୁଝିଲି ନାହିଁ । ଦଳ ଗଠନ କରି ମାଡ଼ିଗଲିଲେ, ଜୟ ଜୟ କହି ଜନତା ପଛରେ ଦୌଡ଼ିବେ, ଜନତା ଏକ କବନ୍ଧ, ଏହାର ମୁଣ୍ଡ ନାହିଁ, ଏକ ବିଶାଳ ଗଣ୍ଡି ଦଳ ହେଉଛି ଏହାର ମୁଣ୍ଡ । ଏଣୁ ଜନତା ଜନତା ଉଦି ନ ହୋଇ ଦଳ ଗଠନରେ ଚିନ୍ତା କରିବାକୁ ହେବ ।” ଏ ସବୁ ଉପଦେଶ ଦେଇଥିବାବେଳେ ମଝିରେ ମଝିରେ ନିଜର ନମ୍ରତା ପ୍ରକାଶ କରି ହରିଚରଣ କହନ୍ତି, “କିଛି ମନେ କରିବ ନାହିଁ, ମୁଁ ଏସବୁ କହୁଛି ମୋର ଅଭିଜ୍ଞତାରୁ । ତୁମେ ତ ସକ୍ରିୟ ରାଜନୀତିରୁ ଦୂରେଇ ରହିଥିଲ । ତେଣୁ ତୁମର ସ୍ୱାଧୀନତା ପରବର୍ତ୍ତୀ ରାଜନୀତିରେ ଅଭିଜ୍ଞତା ନାହିଁ ।” ଗମ୍ଭୀର ଭାବରେ ବାଳକୃଷ୍ଣ ସବୁ ଶୁଣନ୍ତି କିନ୍ତୁ ତାଙ୍କ ମନରେ କେଉଁଠି ଟିକିଏ ଖଟ୍‌କା ଲାଗୁଛି, ସେ ପୁରାପୂରି ଏ ଅଭିଜ୍ଞ ମତକୁ ଅନ୍ତରର ସହିତ ଗ୍ରହଣ କରିପାରୁ ନଥାନ୍ତି, ତଥାପି ଧୈର୍ଯ୍ୟ ଧରି ସେ ପରିସ୍ଥିତି ସହିତ ଖାପ ଖୁଆଇବା ପାଇଁ ଯଥାସାଧ୍ୟ ଚେଷ୍ଟା କରୁଥାନ୍ତି କିନ୍ତୁ ଯେତେ ସେ ପରିସ୍ଥିତି ପଛରେ ଦୌଡ଼ିଥାନ୍ତି ତା'କୁ ଧରିବା ପାଇଁ, ସେ ସେତେ ଦୌଡୁଥାଏ ଆଗକୁ ଆଗକୁ ।

ହରିଚରଣ ମୂଳରୁ ଦଳଗତ ନିର୍ବାଚନ ସର୍ବସ୍ୱ ରାଜନୀତିରେ ରହି ସେ ଜାଣନ୍ତି କେଉଁ ପର୍ଦାରେ କେଉଁ ସ୍ୱର । ତେଣୁ ସେ ସମସ୍ୱର ଉତ୍ପାଦନରେ ଅଭିଜ୍ଞ । ଯୁବକମାନଙ୍କ ସହିତ ସେ ସ୍ୱର ମିଳାଇ ଜାଣନ୍ତି । ତା'ଛଡ଼ା ସ୍ୱର ଉତ୍ପାଦନ ଯନ୍ତ୍ର ଅର୍ଥ ତାଙ୍କ ହାତରେ । ତେଣୁ ସେ ଦଳ ଭିତରେ ଗ୍ରହଣୀୟ ଓ ଆଦରଣୀୟ । ବାଳକୃଷ୍ଣଙ୍କ ଅନୁପ୍ରବେଶ ବିସ୍ମୟ ସୃଷ୍ଟି କରୁଥାଏ । ସେ ଦଳ ଭିତରେ ଗୃହୀତ ହେଉନଥାନ୍ତି । ହରିଚରଣଙ୍କ ସମସ୍ତ ଚେଷ୍ଟା ବାଳକୃଷ୍ଣ ଦଳ ଭିତରେ ଜଣେ ତାଙ୍କର ପ୍ରଧାନ ସହାୟକ ହୋଇ ଯୁବକମାନଙ୍କୁ ସୀମା ଭିତରେ ରଖନ୍ତୁ । ପାଳି ନ ଧରିଲେ ଯେପରି ଗାୟକ ପାଇ ଗାଇ ପାରେ ନାହିଁ । ସେହିପରି ଦଳ ଭିତରେ ନେତାକୁ ଜଣେ ବା କେତେ ଜଣ ହଁ ଭରିବା ଲୋକ ନ ରହିଲେ, ନେତା ନେତୃତ୍ୱ ଜାରି କରି ପାରନ୍ତି ନାହିଁ । ବାଳକୃଷ୍ଣଙ୍କ ଗ୍ରହଣରେ ହରିଚରଣ ପୂର୍ବଯୁଗର ସ୍ୱାଧୀନତା ସଂଗ୍ରାମର ବିବରଣୀ କହି ନିଜ ମୌଳିକତ୍ୱ ପ୍ରତିପାଦନ କରିବାକୁ

ଚେଷ୍ଟା କରୁ ଥାଆନ୍ତି । ଏକ ଦିଗରେ ଯୁବକମାନେ ଆଉଜଣେ ନବାଗତ ପ୍ରବୀଣଙ୍କୁ ସସମ୍ମାନେ ଗ୍ରହଣ କରିବାକୁ ନାରାଜ ଅନ୍ୟ ଦିଗରେ ବାଳକୃଷ୍ଣ ନିଜେ ମଧ୍ୟ ସଙ୍କୁଚିତ ହେଉଥାନ୍ତି । କାରଣ, ହରିଚରଣ ତାଙ୍କ ଉପରେ ମୁରବିତ୍ୱ ପ୍ରକାଶ କରି କରି ଚାଲୁଥାନ୍ତି । ନିର୍ବାଚନ ରାଜନୀତିରୁ ଦୂରେଇ ରହି ବାଳକୃଷ୍ଣ ନିର୍ବାଚନରେ ମାତିଥିବା ସ୍ୱାଧୀନତା ସଂଗ୍ରାମୀ ମାନଙ୍କୁ ଏକ ସମୟରେ କଠୋର ସମାଲୋଚନା କରୁଥିଲେ । ପ୍ରସଙ୍ଗକ୍ରମେ ନାମଧରି ହରିଚରଣଙ୍କୁ ମଧ୍ୟ ତୀବ୍ର ସମାଲୋଚନା କରୁଥିଲେ । ସେହିମାନେ ଗାନ୍ଧି ନୀତିକୁ ଧ୍ୱଂସ କଲେ ବୋଲି କହୁଥିଲେ । ମନ୍ତ୍ରୀ ହରିଚରଣ ଏକ ସମୟରେ ଭୂଦାନୀ ବାଳକୃଷ୍ଣଙ୍କ ଏକ ଚରମ ନିନ୍ଦା ଓ ଉପେକ୍ଷାର ପାତ୍ର ଥିଲେ । ଘଟଣା ଚକ୍ରରେ ବାଳକୃଷ୍ଣ ଭାବିଥିଲେ, ସେ ହରିଚରଣଙ୍କ ସମକକ୍ଷ ଜଣେ ରାଜନୈତିକ ନେତା ହେବେ, କିନ୍ତୁ ତା' ହୋଇପାରୁନାହିଁ । ନେତା ବୋଲି ଅନ୍ୟମାନେ ଗ୍ରହଣ କରୁନାହାନ୍ତି, ଧୀରେ ଧୀରେ ବାଳକୃଷ୍ଣଙ୍କ ମନରେ ପ୍ରଚ୍ଛନ୍ନ ଭାବରେ ଆତ୍ମଗ୍ଲାନି ପ୍ରବେଶ କରୁଥାଏ । ସେ ଭାବୁଥାନ୍ତି ହୁଏତ ଅବସ୍ଥା ବଦଳିଯିବ । ଯେତେବେଳେ ହରିଚରଣଙ୍କ ଦଳ ନିର୍ବାଚନରେ ଅନ୍ୟ ଦଳମାନଙ୍କ ସହିତ ପ୍ରତିଦ୍ୱନ୍ଦିତା କରିବେ ସେ ପ୍ରତିଦ୍ୱନ୍ଦିତାରେ ତାଙ୍କର ଭୂମିକା ଯେ ଗୁରୁତ୍ୱପୂର୍ଣ୍ଣ ହେବ, ଏହି ଆଶା ବାଳକୃଷ୍ଣଙ୍କୁ ସମସ୍ତ ଗ୍ଲାନି କର୍ଦ୍ଦମ ଭିତରେ ଠେଲି ଠେଲି ନେଉଥାଏ ।

ନିର୍ବାଚନ ସମୟ ନିକଟ ହୋଇଗଲା । ଜୋର୍‌ସୋର୍‌ରେ ପ୍ରାର୍ଥୀ ମନୋନୟନ କାମ ଚାଲିଛି, ବାପ ସାଙ୍ଗରେ ପୁଅ ଲଢିଲାପରି ମୁଖ୍ୟ ଦଳ ସହିତ ଉପ ଦଳ ଲଢିବ । ସେଥିପାଇଁ ଉପଦଳରେ ବେଶୀ ତତ୍ପରତା । ତର୍କଯୁକ୍ତି ଆଲୋଚନା ଚାଲିଛି ନିରନ୍ତର । ହରିଚରଣଙ୍କ ଖାଇବା ଶୋଇବା ପାଇଁ ମଧ୍ୟ ସମୟ ନାହିଁ । ଯୁବକମାନେ ଧରି ବସିଥିଲେ ସେମାନଙ୍କୁ ଶତକଡ଼ା ଷାଠିଏଟି ସ୍ଥାନ ଛାଡ଼ି ଦିଆଯାଉ । ତାକୁ ଗ୍ରହଣ କରିବାକୁ ହରିଚରଣ ବାଧ୍ୟ ହୋଇଥିଲେ, ଏଥିରେ ତାଙ୍କ ମନରେ ଆଶଙ୍କା ଉଙ୍କି ମାରିଲା, ନିର୍ବାଚନ ପରେ ସେ ଦଳପତି ନିର୍ବାଚନରେ ଜିତି ମୁଖ୍ୟମନ୍ତ୍ରୀ ହୋଇ ପାରିବେ ତ ! ସେ ଚେଷ୍ଟା କଲେ ବାଳକୃଷ୍ଣଙ୍କୁ ନିରାପଦ ନିର୍ବାଚନ ମଣ୍ଡଳୀ ଛାଡ଼ି ଦେବା ପାଇଁ । ଯୁବକମାନେ ତାକୁ କେଉଁଠି ହେଲେ ସ୍ଥାନ

ଦେବା ପାଇଁ ରାଜି ନୁହନ୍ତି, କୁଆଡ଼େ ଥିଲେ ସେ, ଭାଗବଣ୍ଟା ବେଳକୁ ଭାଗ ନେବା ପାଇଁ ସେ ହକ୍‌ଦାର୍ ନୁହନ୍ତି । ବହୁ ଯୁକ୍ତିତର୍କ ପରେ ତାଙ୍କୁ ଗୋଟିଏ ନିର୍ବାଚନ ମଣ୍ଡଳୀ ଛାଡ଼ି ଦେବା ପାଇଁ ସ୍ଥିର କରାଗଲା । ପ୍ରାର୍ଥୀ ମନୋନୟନ ବେଳେ ଅପର ପକ୍ଷକୁ ହାଇରାଣରେ ପକାଇବା ପାଇଁ ଜାଣି-ଶୁଣି ଏପରି କେତେକ ମନୋନୟନ କରାହୁଏ । ଯାହାଫଳରେ ମନୋନୀତ ପ୍ରାର୍ଥୀ ହୁଏତ ହାରିଯିବ, ବା ଅତି କଷ୍ଟରେ ଜିତିବ, ପ୍ରାୟ ସବୁ ଦଳରେ ଏହିପରି ଅନ୍ତର୍ବିବାଦ ଫଳରେ ହୋଇଥାଏ । ହରିଚରଣଙ୍କ ଦଳ ସେଥିର ବ୍ୟତିକ୍ରମ ନୁହେଁ—ବାଳକୃଷ୍ଣଙ୍କୁ ଅନୁଗ୍ରହକରି ଯେଉଁ ନିର୍ବାଚନ ମଣ୍ଡଳୀ ତାଙ୍କପାଇଁ ସ୍ଥିର ହେଲା ସେଥିରେ ଅନ୍ୟ ଦଳ ପକ୍ଷରୁ ତାଙ୍କ ଭାଇ ପ୍ରଫୁଲ୍ଲ ପ୍ରାର୍ଥୀ ମନୋନୀତ ହୋଇଛନ୍ତି ବୋଲି ଘୋଷଣା କରାହୋଇ ସାରିଛି, ବାଳକୃଷ୍ଣ ଆପତ୍ତି କଲେ, ଆବେଗଭରେ କହିଲେ, "ବହୁବର୍ଷପରେ ମୁଁ ରାଜନୀତିକୁ ଫେରି ଆସିଥିଲି କେବଳ ରାଜନୈତିକ ସ୍ରୋତକୁ ଗତିମାର୍ଗୀ କରିବା ଉଦ୍ଦେଶ୍ୟରେ । ହରିଚରଣଙ୍କ ଏ ଦଳ ବର୍ତ୍ତମାନର ଏ ସ୍ଥିତି ବିରୁଦ୍ଧରେ ଲଢ଼ିବାକୁ ବାହାରିଛି, ତେଣୁ ଏ ଦଳରେ ଯୋଗଦେଲି । ଯଦି ଆପଣମାନେ ମୋତେ ନ ଚାହାନ୍ତି, ତେବେ ତା' ସ୍ପଷ୍ଟକରି କହିଦିଅନ୍ତୁ, ତା' ନକରି ମୋତେ ଅପଦସ୍ଥ କରିବା ପାଇଁ ଏତେ ଚେଷ୍ଟା କାହିଁକି ? ଜାଣୁଛନ୍ତି ମୋ ଭାଇ ସେ ନିର୍ବାଚନ ମଣ୍ଡଳିରୁ ଅନ୍ୟଦଳ ପକ୍ଷରୁ ପ୍ରାର୍ଥୀ । ସେଇଠି ମୋତେ ପକାଉଛନ୍ତି କି ବିଚାରରେ ? ଏ ତ ଭୀଷ୍ମ ଶିଖଣ୍ଡୀ ଉପାଖ୍ୟାନ ପରି ମୋତେ ବୋଧ ହେଉଛି ।" ଏହାର ଉତ୍ତରରେ ଜଣେ ଯୁବକସଭ୍ୟ ଗମ୍ଭୀର ଭାବରେ କହିଲେ "ଦଳପ୍ରତି ଆନୁଗତ୍ୟ ପ୍ରମାଣ କରିବାକୁ ହେଲେ ନିଜର ଭାଇ ବନ୍ଧୁ ସମସ୍ତଙ୍କ ସାଙ୍ଗରେ ଲଢ଼ିବାକୁ ହେବ । ଘରସଂସାର ମଧ୍ୟ ଦଳପାଇଁ ତ୍ୟାଗ କରିବାକୁ ପଡ଼ିବ ।" ଏହିପରି ଦଳିୟ ରାଜନୀତିର ମାହାତ୍ମ୍ୟ ସେ ବୁଝାଇଲେ । ଏଥିରେ ବାଳକୃଷ୍ଣଙ୍କ ମନ ଏପରି କ୍ଷୁନ୍ନ ହେଲା ସେ ଉଠି ଚାଲିଗଲେ । ରାଗରେ କହିଗଲେ—"ମୁଁ ପ୍ରାର୍ଥୀ ହେବି ନାହିଁ, ଅନ୍ୟ ପ୍ରାର୍ଥୀ ବାଛନ୍ତୁ ।" ହୁଏତ ବାଳକୃଷ୍ଣ ଭାବିଥିବେ ଏପରି ଅଭିମାନ ପ୍ରକାଶ କଲେ ହରିଚରଣ ତାଙ୍କପକ୍ଷ ନେଇ ଯୁବକମାନଙ୍କୁ ବୁଝାଇଦେବେ । ଯୁବକମାନେ ମଧ୍ୟ ନିଜର ଜିଦ୍ ଛାଡ଼ିଦେବେ । କିନ୍ତୁ ତା' ହେଲାନାହିଁ, ବାଳକୃଷ୍ଣ ଉଠିଗଲା ପରେ, ଅନ୍ୟ ପ୍ରାର୍ଥୀ ମନୋନୀତ ହେଲେ । ହରିଚରଣ-

ମଧ୍ୟ ବାଳକୃଷ୍ଣଙ୍କ ଆଚରଣର ସମାଲୋଚନା କଲେ । ବାଳକୃଷ୍ଣଙ୍କର ନିର୍ବାଚନ ରାଜନୀତିରେ ପ୍ରବେଶ ଏହିପରି ଏକ ଦୁଃଖାନ୍ତ ନାଟିକାରେ ପରିଣତ ହେଲା ।

—୧୯—

ନିମ୍ନ ସ୍ତରରେ ଗଣତନ୍ତ୍ର ପଦ୍ଧତିର ନିର୍ବାଚନ ରାଜନୀତି ଉତ୍କଟ ବାଦ ବିବାଦର କାରଣ ହୋଇଥାଏ କିନ୍ତୁ ଉଚ୍ଚସ୍ତରରେ ଏହା ଏକ ବୁଦ୍ଧିର ଖେଳ । ପ୍ରତିଦ୍ୱନ୍ଦୀମାନେ ଆନନ୍ଦରେ ଖେଳନ୍ତି, ଆନନ୍ଦରେ ବିବାଦ କରନ୍ତି ଏବଂ ପୁଣି ଶେଷରେ ହାତ ମିଳାଇ ଦିଅନ୍ତି । ଦର୍ଶକମାନେ ମଧ୍ୟ ଏ ଆନନ୍ଦରେ ପୂର୍ଣ୍ଣ ଅଂଶ ଗ୍ରହଣ କରନ୍ତି । ଏତିକି କହିବା ପ୍ରୟୋଜନ ହେଲା ଏଥିପାଇଁ ଶାସକଦଳ ଯେ କେବଳ ବାଳକୃଷ୍ଣଙ୍କ ଭଉଣୀଙ୍କୁ ନିଜର ପ୍ରାର୍ଥୀରୂପେ ମନୋନୀତ କରିଛନ୍ତି ତାହାନୁହେଁ । ସେମାନେ ଶରତର ପୁଅ ଅଜୟଙ୍କୁ ମଧ୍ୟ ପ୍ରାର୍ଥୀରୂପେ ବାଛିଛନ୍ତି । ଅଜୟର ଏମ୍. ଏ. ପରୀକ୍ଷାଫଳ ବାହାରିଛି କି ନ ବାହାରିଛି, ତାକୁ ମଟର ପଠାଇ ଡାକିଆଣି ତାଙ୍କ ନିର୍ବାଚନ ପାଇଁ ପ୍ରାର୍ଥୀ ହେବାକୁ କୁହାଗଲା । ସେତେବେଳକୁ ଶରତ ଯାଇ ଘରେ ପହଞ୍ଚି-ଯାଇଛନ୍ତି । ମାତ୍ର ଏ ଖବର ତାଙ୍କୁ କେହି ଦେଲେ ନାହିଁ, କି ଏ କଥା ମଧ୍ୟ ସେତେବେଳକୁ ସେ ଅଞ୍ଚଳରେ ସ୍ପଷ୍ଟ ହୋଇନାହିଁ । କାରଣ ଭୋଟ୍ ନିଆ ମ ସବୁ ଠାରୁ ଉଦ୍ଧ୍ୱ ସମୟରେ ହେବ । ପ୍ରଚାର କାମ ହୋଇନାହିଁ । ବାଳକୃଷ୍ଣ ଓ ଶରତ ଉଭୟଙ୍କର କେବଳ ସ୍ୱାଧୀନତା ସଂଗ୍ରାମୀ ହିସାବରେ ନୁହେଁ, ନିଷ୍ଠାପର ଗାନ୍ଧିମତବାଦୀ ପ୍ରବୀଣ କର୍ମୀ ହିସାବରେ ମଧ୍ୟ ଜନସାଧାରଣରେ ସମ୍ମାନ ଅଛି । ସେହି ସମ୍ମାନର ବ୍ୟବହାର ପାଇଁ ଜଣକ ଭଉଣୀ ଆଉ ଜଣକ ପୁଅକୁ ନିର୍ବାଚନପାଇଁ ବଛାଯାଇଛି, ଏଥିରେ ଗୋଟିଏ ଟେକାରେ ଦୁଇଟି ଚଢେଇ ମାରିବା ଯୋଜନା ନିର୍ବାଚନରେ ଏମାନଙ୍କ ସମ୍ମାନର ବ୍ୟବହାର କରଯିବ ଏବଂ ଏମାନଙ୍କୁ ଅନ୍ୟ ବିରୋଧୀଦଳ ପ୍ରାର୍ଥୀ କରଇଲେ ବି ନିର୍ବାଚନରେ ଏମାନଙ୍କ ସାହାଯ୍ୟ ନେବାରେ ଅସୁବିଧା ଘଟିବ ।

ଯାହାହେଉ ଶରତଙ୍କ କାନରେ ଏକଥା ଯେମିତି ପଡ଼ିଲା, ସେ କିଛି କ୍ଷଣପାଇଁ ହତବୁଦ୍ଧି ହୋଇଗଲେ, କାରଣ ପୁଅ ତାଙ୍କୁ ନିର୍ବାଚନରେ ସାହାଯ୍ୟ କରିବାପାଇଁ କହିବ । ବାପ ହୋଇ ମନା ବା କରିବେ କିପରି ? ଶାସକ ଦଳପାଇଁ ନିର୍ବାଚନ ପ୍ରଚାରକଲେ ଗାନ୍ଧିବାଦୀ ହିସାବରେ ଯେଉଁ ପ୍ରତିଷ୍ଠା ଟିକକ ଅଛି ତା'ନଷ୍ଟ ହେବ, ବେଶୀ ତାଙ୍କ ମନକୁ ଲାଗିଲା, ତାଙ୍କ ସାଙ୍ଗମାନେ ବିଶେଷତଃ ବାଳକୃଷ୍ଣ ଓ ଜଗଦୀଶ୍ କ'ଣ କହିବେ । ନିଜରସ୍ୱାର୍ଥ ପାଇଁ ସେ ନୀତି ତ୍ୟାଗ କଲେ । ଏ ଅପଖ୍ୟାତି ସେ ଜୀବନର ଅପରାହ୍ଣରେ ଅର୍ଜିବେ । କିଛି ବୁଝି ପାରିଲେନାହିଁ କ'ଣ ସେ କରିବେ । ପୁଅକୁ ମନାକରିବେ ପ୍ରାର୍ଥୀ ନ ହେବା ପାଇଁ ? ସେ ତ ପ୍ରାପ୍ତ ବୟସ୍କ, ତାର ତ ଜୀବନରେ ଆଶା ଅଭିଳାଷ ଅଛି । ତାକୁ ବା ଅନ୍ୟଦିଗରେ କି ସାହାଯ୍ୟ କରିହେବ ? ଚଳଚ୍ଚିତ୍ରର ଦୃଶ୍ୟ ପରିବର୍ତ୍ତନ ପରି ଗୋଟିଏ ଜୀବନର ଦୃଶ୍ୟ ପରିବର୍ତ୍ତନ ପରି ଗୋଟିଏ ଜୀବନର ଦୃଶ୍ୟ ଅନ୍ତର୍ହିତ ହୋଇ ହୋଇ ଯାଉଛି, ଆଉ ଗୋଟିଏ ଦୃଶ୍ୟ ଅଧାଅଧି ଆସି ହୋଇଗଲଣି । ଏ ସମୟଟି ବାସ୍ତବିକ୍ ଜଟିଳ ସମସ୍ୟା ସୃଷ୍ଟିକରେ । ସ୍ତ୍ରୀରିଆଡ଼କୁ ଉଭି ଶରତ ଠିକ୍‌କଲେ ଅଜୟ ସହିତ ଆଲୋଚନା କରିବେ ।

ହସି ହସି ସ୍ନେହଭରେ ଶରତ ପଚାରିଲେ, "ତୋ'ର ରାଜନୀତି ଆଡ଼କୁ ଏତେ ଜଲଦି ମନଗଲା କିପରି ? ଏଇ ତ ପାସ୍ କରିଛୁ, ଚାକିରୀ ବା ଅନ୍ୟ କୌଣସି ଉପାର୍ଜନ ପନ୍ଥା ନଭାବି ଅନିଶ୍ଚିତ ରାଜନୀତିକୁ ପଶିଗଲୁ କିପରି ?" ଏପରି ପ୍ରଶ୍ନ ବାପା କହିପାରନ୍ତି, ଆଗରୁ ଅନୁମାନ କରିଥିଲେ ଅଜୟ, କାରଣ ବାପା ଯେ ଶାସକଦଳର ନୀତିବିରୋଧି, ଏହା ସେ ଜାଣନ୍ତି । ସେ ସ୍ପଷ୍ଟ ଭାବରେ କହିଲେ, "ସମୟ ଥିଲା ରାଜନୀତି ଏକ ଉପାର୍ଜନର ପନ୍ଥା ନଥିଲା । ସେତେବେଳେ ତ ଦେଶ ସ୍ୱାଧୀନ ନଥିଲା । ତ୍ୟାଗର ଆବଶ୍ୟକତା ଥିଲା । ଆଜି ତ ଅନ୍ୟ କୌଣସି ବ୍ୟବସାୟ ପରି ରାଜନୀତି ଏକ ବ୍ୟବସାୟ । ଚାକିରି ଖୋଜିଲେ ଯେ ମିଳିଯିବ ତା' ନୁହେଁ, ନମିଳି ବି ପାରେ । ଅନ୍ୟ କୌଣସି ବ୍ୟବସାୟ କଲେ ଯେ ପହିଲେ କେତେ ବର୍ଷ ମଧ୍ୟରେ ଲାଭ ଅଜାଡ଼ି ହୋଇଯିବ ତା'ନୁହେଁ, ଶେଷରେ କ୍ଷତି ଘଟି ମୂଳଧନ ମଧ୍ୟ ଉଡ଼ିଯାଇ ପାରେ, ଏ ସବୁ ଯେପରି ଅନିଶ୍ଚିତ, ରାଜନୀତି

ତା'ଠାରୁ କମ୍ ଅନିଶ୍ଚିତ । ନିର୍ବାଚନରେ ଜିତିଗଲେ, ଛଅବର୍ଷ ପାଇଁ ମାସକୁ ଛଅଶହ ଟଙ୍କା, ଆଗକୁ ଯିବା ପାଇଁ ଦୀର୍ଘପଥ ରହିଛି । ନିର୍ବାଚନ ହାରିଗଲେ ମଧ୍ୟ ଖାଲି ଦଳର ଜଣେ କର୍ମୀ ହିସାବରେ ମଧ୍ୟ ଜୀବିକା ଅର୍ଜନପାଇଁ ନାନା ସୁବିଧା ଅଛି । ଏ ଯୁଗର ରାଜନୀତିକୁ ଆପଣ ପୂର୍ବ-ଯୁଗର ରାଜନୀତିସହିତ ତୁଳନା କରନ୍ତୁ ନାହିଁ, ଛାଡ଼ିଦିଅନ୍ତୁ ମୋତେ, ମୁଁ ଯାଏ ମୋର ବାଟ କାଟି ।" ଏ ଉକ୍ତିପରେ ଶରତ ଆଉ କିଛି କହିପାରିଲେ ନାହିଁ, ସେ ଯେ ମୁହଁ ଶୁଖେଇ ଦେଲେ, ଏହା ଅଜୟ ଲକ୍ଷ୍ୟ-କଲେ ମଧ୍ୟ ତା'କୁ ମନକୁ ନେଲେ ନାହିଁ ।

ଶରତ ଗଭୀର ଭାବେ ବିଷୟଟିକୁ ଭାବିଲେ । ସେ ତ ନିଜେ ବରାବର ଯୁକ୍ତି କରୁଥିଲେ । ତରୁଣମାନଙ୍କ ହାତରେ ସବୁ ଛାଡ଼ିଦେଇ ପ୍ରବୀଣମାନେ ମଇଦାନରୁ ବାହାରି ଯିବା ଉଚିତ୍ । ପୁଣି କାହିଁକି ସେ ନିଜ ପୁଅକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରୁଛନ୍ତି ? ଇଚ୍ଛା, ତରୁଣମାନେ ପ୍ରବୀଣମାନଙ୍କ ପଦାଙ୍କ ଅନୁସରଣ କରନ୍ତୁ । କିନ୍ତୁ ସେ ପଦାଙ୍କ ତ ଯାଇ ଅନ୍ଧ ଗଳିଟି ଭିତରେ ପହଞ୍ଚିଯାଇଛି । ନିଜ ମନରେ ବ୍ୟର୍ଥତା, ପୁଣି ପରବର୍ତ୍ତୀ ପୁରୁଷକୁ ସେ ଗଳିରେ ପୂରାଇବା ଉଚିତ୍ କି ? ପିତାର ବ୍ୟର୍ଥତାକୁ ହୁଏତ ପୁତ୍ର ସାର୍ଥକତାରେ ପରିଣତ କରିପାରନ୍ତା । ଏହା ତ ପିତା ପକ୍ଷରେ ଭାବିବା ସ୍ୱାଭାବିକ । ପାଠ ନ ପଢ଼ିଥିବା ବାପ ପୁଅକୁ ପାଠ ପଢ଼ାଏ । ସେଥିରେ ନିଜର ଅପୂର୍ଣ୍ଣତା ପୂର୍ଣ୍ଣ ହେଲା ବୋଲି ମନେ କରେ । ବାପ ଯାହା ନ କରିପାରିଛି, ପୁଅ ତା' କରିଦେଲେ ବାପର ଶେଷ ଜୀବନ ଆନନ୍ଦରେ କଟିଯାଏ, ପିତାଙ୍କୁ ଏତିକି ଆନନ୍ଦ ଦେବା କ'ଣ ପୁତ୍ରର କର୍ତ୍ତବ୍ୟ ନୁହେଁ କିନ୍ତୁ ପିତା ପୁତ୍ରର ସମ୍ପର୍କ ପୂର୍ବେ ଯେପରି ଥିଲା, ବର୍ତ୍ତମାନ ସେପରି ଅଛିକି ? ସେ ନିଜେ ତ ପିତାଙ୍କ ପରାମର୍ଶ ନମାନି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ପିତାଙ୍କ ସରକାରୀ ଚାକିରୀରେ ବିନେ ଅସୁବିଧା ଘଟାଇଥିଲେ । ସେତେବେଳେ ସେ ତ ନିଜେ ବାପାଙ୍କ ବିରକ୍ତିକୁ ଖାତିର କରି ନାହାନ୍ତି, ସେ ତ ନିଜ ବାଟ ନିଜେ ଦେଖିଲେ, ସେହିପରି ତାଙ୍କ ପୁଅ, ତାଙ୍କ ନିଜ ବାଟ ନିଜେ ଦେଖିଲେ । କି ଅଧିକାର ଅଛି ତାଙ୍କର ଆପତ୍ତି କରିବାର ? କିନ୍ତୁ ମନଟା ତ ଛାଟିପିଟି ହେଉଛି, କୌଣସି ଯୁକ୍ତିକୁ ମନ ଗ୍ରହଣ କରୁନାହିଁ, ଅସନ୍ତୁଷ୍ଟ ହେବ ବୋଲି ଯେପରି ସେ ଦୃଢ଼ ପ୍ରତିଜ୍ଞ ।

ଶରତଙ୍କ ବୃଦ୍ଧ ପିତା ସରକାରୀ ଚାକିରୀରୁ ଅବସର ଗ୍ରହଣ କଲାପରେ ସନ୍ଧ୍ୟାବେଳେ ପ୍ରତିଦିନ ବସି କୀର୍ତ୍ତନ ଶୁଣନ୍ତି । ନିଜେ ମଧ୍ୟ କୀର୍ତ୍ତନ ଗାଇ ପାରନ୍ତି, ଖୋଳ ମଧ୍ୟ ବଜାଇ ପାରନ୍ତି । ଗ୍ରାମରେ ସୁନ୍ଦର କୀର୍ତ୍ତନ ଦଳଟିଏ ଏହାଙ୍କ ଉଦ୍ୟମରେ ଗଢ଼ି ଉଠିଛି । ସେଦିନ ସନ୍ଧ୍ୟାରେ ଶରତ ଯାଇ କୀର୍ତ୍ତନରେ ଯୋଗଦେଲେ ; ମୃଦଙ୍ଗର ଶ୍ରୁତି ମଧୁର ସ୍ୱର ସହିତ ଆବେଗମୟ କୀର୍ତ୍ତନର ଗାନ ଯେ ଦ୍ୱିଧାଗ୍ରସ୍ତ ସନ୍ତପ୍ତ ମନକୁ ଶାନ୍ତ କରୁଛି, ଏହା ସେଦିନ ଉପଲବ୍ଧି କଲେ ଶରତ । "ଭାଇ ବନ୍ଧୁ ଦାର ସୁତ, ସବୁ ସିନା ଦି ଦିନ ମାତ୍ର ।" ଅନିତ୍ୟ ସଂସାରରେ ଏକ ମାତ୍ର ନାମହିଁ ସାର । ଏହି ଭାବକୁ ଏପରି ଆବେଗମୟ ସ୍ୱରରେ ବ୍ୟକ୍ତ କରା ହେଉଥାଏ, ଯେଉଁଥିରେ ଶରତଙ୍କ ମନ ଦ୍ରବୀଭୂତ ହୋଇ ଯାଉଥାଏ । ବାସ୍ତବିକ୍ ଫୁଲ ଫୁଟୁଛି, ଶୁଖି ଝଡ଼ି ପଡୁଛି–ପୁଣି ନୂଆ ଫୁଲ ଫୁଟୁଛି । ଶୀତ ଋତୁରେ ପୁରୁଣା ପତ୍ରସବୁ ଶୁଖି ଝଡ଼ି ପଡୁଛି ପୁଣି ବସନ୍ତରେ ନୂଆ କିଶଳୟ ହସି ହସି ଉଠୁଛି , ଶୁଖି ଆସୁଥିବା ଫୁଲ ବା ପତ୍ର କେହି ତ ପଚାରୁ ନାହାନ୍ତି, ତାଙ୍କ ଝଡ଼ିପଡ଼ିଲା ପରେ କି ଫୁଲ କି ପତ୍ର ଆସିବ !! ମନୁଷ୍ୟ କାହିଁକି ଏତେ ବ୍ୟଗ୍ର ତା'ର ପରବର୍ତ୍ତୀ ପୁରୁଷମାନଙ୍କ ପାଇଁ, ତାଙ୍କର ନିଜ ବାପା ତ କର୍ମମୟ ଜୀବନରୁ ଅବସର ଗ୍ରହଣ ପରେ କୀର୍ତ୍ତନରେ ବେଶ୍ ଆନନ୍ଦ ଅନୁଭବ କରି ସମୟ ଅତିବାହିତ କରୁଛନ୍ତି । ମନରେ କୌଣସି ଉଦ୍‌ବେଗ ନାହିଁ । କର୍ମମୟ ଜୀବନରୁ ଅବସର ନେବା ଅର୍ଥ, ଅବସର ନେବା, ଆଉ କର୍ମରେ ନ ମାତିବା, ଏହା ଯଦି ହୁଏ, ତେବେ ଅବସର କଟାଇବାର ଉପାୟ କଅଣ ? ଅବଶ୍ୟ ଈଶ୍ୱର ଏକ ଏପରି ଅଚିନ୍ତନୀୟ ଓ ଅପ୍ରାପଣୀୟ ସେଥିରେ ମନୋନିବେଶ କରି ଜଣେ ସମସ୍ତ ଜୀବନ ଆନନ୍ଦରେ କଟାଇ ଦେଇ ପାରେ, କିନ୍ତୁ ସେ ବିଶ୍ୱାସ କଅଣ ସହଜସାଧ୍ୟ । ଏହିପରି ଭାବୁ ଭାବୁ ତାଙ୍କର ମନେ ପଡ଼ିଗଲା ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟଙ୍କ ଜୀବନୀ, ସେ ଏକଦା ଥିଲେ ରେଭେନ୍‌ସା କଲେଜର ଅଧ୍ୟାପକ । ଦୁଇ ତିନିଟି ପୁରୁଷ ତାଙ୍କରି ଛାତ୍ର ଥିଲେ । ବୃଦ୍ଧ ବୟସରେ ଅବସର ଗ୍ରହଣ କରି ତାଙ୍କର ଜନ୍ମଭୂମି ବାଙ୍କୁଡ଼ାଠାରେ ରହିଲେ । ଶେଷ ଜୀବନରେ ତାଙ୍କ ଅଧ୍ୟୟନର ବିଷୟବସ୍ତୁ ଥିଲା, ମହାଭାରତର କାଳ ନିରୂପଣ । ସେ ଏଥିରେ କେବଳ ନିଜର ବିଶ୍ରାମ ସମୟକୁ ଛାଡ଼ିଦେଇ ଅବଶିଷ୍ଟ ସମୟ ଅତି

ଉତ୍ସାହରେ କଟାଉଥିଲେ, ତାଙ୍କୁ ଜଣେ ତାଙ୍କ ଛାତ୍ର ପଚାରିଥିଲେ, "ଏ ଗବେଷଣା କେବେ ସରିବ ?" ଉତ୍ତରରେ ସେ କହିଥିଲେ, "ଏ ଜୀବନରେ ଏହା ସରିବ ନାହିଁ, ମୁଁ ମୋର କର୍ତ୍ତବ୍ୟ କରି ନିଏ," ଆଶ୍ଚର୍ଯ୍ୟ ଏ ମନୋବୃତ୍ତି ଓ ଜୀବନରେ କର୍ତ୍ତବ୍ୟ ସ୍ଥାନ । ଶରତ ଭାବିହେଲେ, "ସେ ତ ମନେକରୁଥିଲେ ଗାନ୍ଧିଜୀଙ୍କ ଗ୍ରାମୋଦ୍ୟୋଗ, ଅସ୍ପୃଶ୍ୟତା ନିବାରଣ, ନିଶା ନିବାରଣ ଇତ୍ୟାଦି କାର୍ଯ୍ୟକ୍ରମ ମାଧ୍ୟମରେହିଁ ସମାଜ ପୁନର୍ଗଠିତ ହେବ । ହେଲା, ଅନ୍ୟ ଅନେକ ଏଥିରେ ବିଶ୍ୱାସ କଲେ ନାହିଁ । ସେ ନିଜେ କାହିଁକି ଏଥିରୁ ବିଶ୍ୱାସ ହରାଇ ଏ କାମସବୁ ଛାଡ଼ିଦେଲେ । ଏହି କାମକୁ ଜୀବନର ଶେଷ ପର୍ଯ୍ୟନ୍ତ ଧରି ରଖି ପାରିଥାନ୍ତେ । ଅନ୍ୟଙ୍କର ବିଶ୍ୱାସ ଉପରେ ତ ତାଙ୍କ ବିଶ୍ୱାସ ପ୍ରତିଷ୍ଠିତ ନଥିଲା । ବିଶ୍ୱାସ ତ ତାଙ୍କ ନିଜର । ସେ ତା'କୁ ଛାଡ଼ିଦେଲେ କାହିଁକି ? କାହିଁ ସେ ବ୍ୟର୍ଥତା ଅନୁଭବ କଲେ । ସାର୍ଥକତା ତ ହେଉଛି ନିଜ ବିଶ୍ୱାସରେ ନିଜେ ଅଟଳ ରହିବା, ସେ ତ ନିଜେ ନିଶ୍ୱାସ ହରାଇଛନ୍ତି । ଅନ୍ୟକୁ ଦୋଷ ଦେବେ କାହିଁକି ? ଗଭୀର ଅନୁତାପ ଗ୍ରସ୍ତ ବର୍ତ୍ତମାନ, ଏକଦା ସାହସୀ ଅହିଂସ ସଂଗ୍ରାମୀ ଓ ନିଷ୍ଠାପର ସମାଜସେବୀ ଶରତ ।

—୨୦—

ବାଳକୃଷ୍ଣଙ୍କୁ ଯେଉଁ ନିର୍ବାଚନ ମଣ୍ଡଳିରୁ ପ୍ରାର୍ଥୀ ହେବା ପାଇଁ ଦଳ ନିଷ୍ପତ୍ତି କଲା, ସେଥିରେ ତାଙ୍କ ମନ ମାନିଲା ନାହିଁ । କିନ୍ତୁ ସ୍ପଷ୍ଟ ମଧ୍ୟ ମନା କରି ପାରିଲେ ନାହିଁ । ଭାବିଲେ ଘରକୁ ଯାଇ ନିଜ ଭାଇକୁ ପଚାରି ତା'ମନ ବୁଝିବେ । ବହୁ କାଳପରେ ସେ ଘରକୁ ଗଲେ । ଘରର ଲୋକ ହିସାବରେ, ବାହାରର ଅତିଥି ହିସାବରେ ନୁହେଁ । ସେତେବେଳକୁ ପ୍ରଫୁଲ୍ଲ ଜୋର୍-ସୋର୍‌ରେ ତାଙ୍କ ନିର୍ବାଚନ ପ୍ରଚାର ଆରମ୍ଭ କରି ଦେଇଲେଣି । ପ୍ରଚାରର ବିଷୟବସ୍ତୁ ହେଉଛି ପୂର୍ବରୁ ଯେଉଁମାନେ ରାଜ୍ୟ ପରିଚାଳନା କରୁଥିଲେ, ସେମାନେ ଜନତାକୁ ଆଜି ଦରିଦ୍ରତାର ଅନ୍ଧକୂପ ଭିତରେ ପକାଇ ଦେଇଛନ୍ତି । ଗାନ୍ଧିବାଦ୍ ନାମରେ କେବଳ ମିଥ୍ୟାଚାର ଚାଲିଛି । ଗାନ୍ଧିବାଦ ଗାନ୍ଧିଙ୍କ ପରେ ଯାଇଛି, ଯୁଗ ମଧ୍ୟ ବଦଳି ଯାଇଛି । ନୂତନ ଯୁଗର ବାଦ

ହେଉଛି ସମାଜବାଦ । ଯେତେ ଯାହା କିଛି ପୁରୁଣା ଅଛି, ସବୁ ଭାଙ୍ଗି ଚୁରି ଲୋପ କରିଦେବାକୁ ହେବ । ପ୍ରାଚୀନର ଶ୍ମଶାନ ଉପରେ ଗଢ଼ି ଉଠିବ ନବୀନର ଗରିମା । ଏ ପ୍ରକାର ପ୍ରଚାର ହେଉଛି ଜାଣି ବାଳକୃଷ୍ଣଙ୍କ ମୁଣ୍ଡ ଘୂରେଇ ଗଲା । ସେ ଭାବିପାରିଲେ ନାହିଁ କଅଣ ସେ କରିବେ, କଣ ସେ କହିବେ । ଭାଇର ମନ ମଧ୍ୟ ଏପରି ବଦଳି ଯାଇଛି ଯେ ସେ ଭଲ କରି କଥାବାର୍ତ୍ତା କରୁନାହିଁ । ସେ ଭାବୁଛି ବାଳକୃଷ୍ଣ ଆସିଛନ୍ତି ତାଙ୍କୁ ନିବର୍ତ୍ତାଇବା ପାଇଁ । ଏ ଭାବନା ଯେ ସତ୍ୟ ଭିତ୍ତିକ ଏହା ଜାଣିବାକୁ ବେଶୀ ସମୟ ଲାଗିଲା ନାହିଁ । ଥରେ ଖାଇ ସାରିବା ପରେ ବାଳକୃଷ୍ଣ ପ୍ରଫୁଲ୍ଲକୁ ଡାକି ପାଖରେ ବସାଇଲେ । ଧୀରେ ଧୀରେ କହିଲେ, "ତୁ କଅଣ ସତରେ ଭାବୁଛୁ ଆମେ ସବୁ ମିଥ୍ୟାଚାରୀ, ଆମେ ଦେଶକୁ ରସାତଳରେ ପକାଇ ଦେଇଛୁ ।" ପ୍ରଫୁଲ୍ଲ କୌଣସି ସଂକୋଚ ନ କରି ଦୃଢ଼ ଭାବରେ କହିଲେ, "ମୋର ବିଶ୍ୱାସ ଗାନ୍ଧିବାଦର ଉପଯୋଗୀତା ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଯାହା ଥାଉନା କାହିଁକି ପରିବର୍ତ୍ତିତ ପରିସ୍ଥିତିରେ ସେହି ବାଦକୁ ଧରି ବସିବାପାଇଁ ଚେଷ୍ଟା ଫଳରେ ଦେଶର ପ୍ରଭୂତ କ୍ଷତି ଘଟିଛି । ଗାନ୍ଧିବାଦ ହେଉଛି ଊନବିଂଶ ଶତାବ୍ଦୀର ଭାବଧାରା । ତା'ର ଶେଷ ହେଲା ବିଂଶ ଶତାବ୍ଦୀର ପ୍ରଥମ ପାଦରେ । ବିଂଶ ଶତାବ୍ଦୀର ଭାବ ଧାରା ହେଉଛି ସମାଜବାଦ । ଏହି ପରିବର୍ତ୍ତନକୁ ଗ୍ରହଣ କରି ନେଇଥିଲେ ଭାରତର ଏ ଦୁର୍ଦ୍ଦଶା ଘଟି ନ ଥାନ୍ତା ।" ସାନ ଭାଇ, ବାଳକୃଷ୍ଣ ଏକ ସମୟ ମନେ କରୁଥିଲେ ପ୍ରଫୁଲ୍ଲର ରାଜନୀତିରେ କିଛି ଆଗ୍ରହ ନାହିଁ । ତା'ର ମନ ଓକିଲାତିରେ ଓ ଘର ସଂସାରରେ, କିନ୍ତୁ କାଉଁରୀ ହାଡ଼ ବାଜିଲେ ଯେପରି ଲୋକର ସ୍ୱରୂପ ବଦଳିଯାଏ ସେହିପରି ନିର୍ବାଚନର ସ୍ପର୍ଶରେ ପ୍ରଫୁଲ୍ଲ ବର୍ତ୍ତମାନ ଏକ ନୂତନ ଯୁବକ । ପୁରାତନ ସହିତ କୌଣସି ସମ୍ପର୍କ ନାହିଁ । ଏପରି ଅବସ୍ଥାରେ ସେ ନିଜେ ପ୍ରାର୍ଥୀ ହେବାକୁ ଇଚ୍ଛା କରୁଛନ୍ତି । ଏ କଥା ଘୃଣାକ୍ଷରେ ସୁଦ୍ଧା ପ୍ରକାଶ କରିବାକୁ ମଧ୍ୟ ବାଳକୃଷ୍ଣଙ୍କ ମନ ଗଲା ନାହିଁ । ଘରେ ରହିଲେ ସାତ ଆଠ ଦିନ । କେବଳ ଭାଇର ନୁହେଁ, ଆଖପାଖ ଲୋକ ଚିହ୍ନା ପରିଚୟ ସମସ୍ତଙ୍କ ମନର ଗତି ଅଧ୍ୟୟନ କଲେ । ସେ ସ୍ପଷ୍ଟ ଜାଣିଲେ ତାଙ୍କର ଏ ନୂତନ ପରିସ୍ଥିତିରେ ରାଜନୀତି କ୍ଷେତ୍ରରେ ସେଠି ସ୍ଥାନ ନାହିଁ । ଅଗତ୍ୟା ସ୍ଥିର କଲେ ସେ ନିର୍ବାଚନରେ ପ୍ରାର୍ଥୀ ହେବେ ନାହିଁ । ଜଣାଇ ଦେଲେ ତାଙ୍କ

ନିଷ୍ପତ୍ତି ଦଳର ନେତା ହରିଚରଣଙ୍କୁ । ହରିଚରଣ ମନେ ମନେ ଆଶ୍ୱସ୍ତ ହେଲେ କାରଣ ଦିନେ ବାଳକୃଷ୍ଣ ତାଙ୍କର ପ୍ରତିଦ୍ୱନ୍ଦୀ ହୋଇପାରନ୍ତି । ଏ ଆଶଙ୍କା ଅତି ଗୋପନରେ ତାଙ୍କ ମନର ଏକ ଗଭୀର କୋଣରେ ଲୁଚି ରହିଥିଲା । ଦଳର ଲୋକେ ମଧ୍ୟ ଆନନ୍ଦିତ ହେଲେ । ଜଣେ ଅନାହୂତ ଆଗନ୍ତୁକର ପ୍ରବେଶ ହୋଇ ପାରିଲା ନାହିଁ । ମାତିଲେ ସମସ୍ତେ ନିର୍ବାଚନରେ ।

ରାଜନୀତି କହିଲେ କଅଣ ଖାଲି ନିର୍ବାଚନ ବୁଝାଏ ? ନିର୍ବାଚନରେ ପ୍ରାର୍ଥୀ ନ ହୋଇ ସେ ପ୍ରଚାର କରି ବୁଲିବେ—ଦେଶବାସୀଙ୍କୁ ଉଦ୍‌ବୋଧନ ଦେବେ ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗକୁ ଫେରିଯିବା ପାଇଁ—ଏ ପ୍ରଚାର କାର୍ଯ୍ୟ ସୁବିଧାରେ ହୋଇ ପାରିବ, ଶାସକ ଦଳ ବିରୋଧୀ ହରିଚରଣଙ୍କ ଦଳ ସପକ୍ଷରେ ପ୍ରକାଶ୍ୟ ଭାବରେ ବାହାରି ପଡିଲେ ।

ଗୋଟିଏ ସାଧାରଣ ନିର୍ବାଚନ ପରେ ଗତ କେତେବର୍ଷ ମଧ୍ୟରେ ଲୋକଙ୍କର ରାଜନୈତିକ ଚେତନା ଓ ଆଚରଣରେ ଯେଉଁ ପରିବର୍ତ୍ତନ ଘଟିଛି ସେ ସମ୍ବନ୍ଧରେ ବାଳକୃଷ୍ଣଙ୍କର ସ୍ପଷ୍ଟ ଧାରଣା ନ ଥିଲା । ବିଶାଳ ଏ ଦେଶ ବିଶାଳ ଜନତା । ଯେ କୌଣସି ଚିନ୍ତାଧାରା ବା ମତବାଦ ପାଇଁ ବହୁ ଲୋକଙ୍କୁ ଏକାଠି କରିଦେବାରେ ବିଚିତ୍ରତା କିଛି ନାହିଁ । ଲୋକଙ୍କ ଭିଡ଼ ଦେଖି କୌଣସି ମତବାଦକୁ ଲୋକେ ଗ୍ରହଣ କରୁଛନ୍ତି ବୋଲି ସାଧାରଣ ଭାବରେ କହିବା ଓ ଭାବିବା ଏକ ମାରାତ୍ମକ ଭ୍ରମ କାରଣ ସେହିପରି ଭିଡ଼ ଅନ୍ୟ ବିରୁଦ୍ଧ ମତବାଦ ସପକ୍ଷରେ ମଧ୍ୟ ଥାଏ । ବାଳକୃଷ୍ଣ ଏହି ମାରାତ୍ମକ ଭ୍ରମର ଶିକାର ହେଲେ । ସେ ଯେଉଁଠି ସଭା କରିବାକୁ ଯାଆନ୍ତି, ଆଗରୁ ପ୍ରଚାର କରାଇ ଦିଅନ୍ତି । ଗାନ୍ଧିନୀତି ସମ୍ବନ୍ଧରେ ପ୍ରସିଦ୍ଧ ଗାନ୍ଧିବାଦୀ ବାଳକୃଷ୍ଣ ଭାଷଣ ଦେବେ । ଲୋକେ ଜମନ୍ତି । ଦୀର୍ଘ ଦୁଇ ତିନି ଘଣ୍ଟା ଧରି ଭାଷଣ ଚାଲେ । ନାନା ଉଦାହରଣ ଉପମା ଉପମେୟ ଦେଇ ବାଳକୃଷ୍ଣ ତାଙ୍କ ଭାଷଣକୁ ଯଥା ସାଧ୍ୟ ରୋଚକ କରନ୍ତି । ଲୋକେ ନିରବରେ ଶୁଣନ୍ତି । ଘରକୁ ଚାଲିଯାଆନ୍ତି । ଏଇଥିରୁ ବାଳକୃଷ୍ଣଙ୍କ ମନେ ହେଲା ସେ ଲୋକଙ୍କୁ ସାଙ୍ଗରେ ଅଡ଼ାଇ ନେଇଛନ୍ତି, କିନ୍ତୁ ଏ ଦେଶର ଲୋକେ ଯେ ମୂର୍ଖ ବା ପାଗଳ ନୁହଁନ୍ତି । ସଭାରେ ନିରୀହ ଭାବରେ ଏପରି ଶୁଣୁଥାନ୍ତି

ଯେପରି ସବୁ ସେମାନେ ବୁଝି ସମର୍ଥନ କରି ଯାଉଛନ୍ତି । କିନ୍ତୁ ମନ ଭିତରେ ସେମାନେ ସମସ୍ତଙ୍କ ମତ ଓ ଭାଷଣକୁ ତାଚ୍ଛ ପ୍ରତୀଚ୍ଛ କରନ୍ତି । ତାଙ୍କ ମନ କଥା ବୁଝିବା ଅତି କଷ୍ଟକର । ଏହାକୁ ଟ୍ରାଇବେଲ ବା ଗୋଷ୍ଠୀ-ମନୋବୃତ୍ତି ବୋଲି ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି । ଜାପାନୀମାନଙ୍କର କୁଆଡ଼େ ଏପରି ମନୋବୃତ୍ତି । ଏହା ବୁଝିଲେ ବାଳକୃଷ୍ଣ ନିର୍ବାଚନ ଶେଷରେ । କେବଳ ବାଳକୃଷ୍ଣଙ୍କ ସଭମାନଙ୍କରେ ନୁହେଁ, ହରିଚରଣଙ୍କ ଦଳର ବହୁ ସଭରେ ଲୋକଭିଡ଼ ଦେଖି ଅନେକ ଭାବୁଥିଲେ ହରିଚରଣ କିସ୍ତିମାତ୍ କରିବେ, କିନ୍ତୁ ଶେଷରେ ତାଙ୍କର କିସ୍ତିମାତ୍ ହୋଇଗଲା । ଶୋଚନୀୟ ଭାବରେ ପରାଜିତ ହେଲା ତାଙ୍କ ଦଳ ଏବଂ ସେ ନିଜେ ମଧ୍ୟ ଶୋଚନୀୟ ଭାବରେ ପରାଜିତ ହେଲେ । ବାଳକୃଷ୍ଣଙ୍କ ପକ୍ଷେ ଅତ୍ୟାଶ୍ଚର୍ଯ୍ୟର ବିଷୟ ହେଲା ସେ ଯେଉଁଠି ଯେଉଁଠି ବଡ଼ ବଡ଼ ସଭା କରିଛନ୍ତି ସେଠି ଶାସକ ଦଳ ହି ବହୁ ସଂଖ୍ୟକ ଭୋଟ ପାଇଛି । ଏଇଥିରୁ ସେ ଏ ସିଦ୍ଧାନ୍ତରେ ପହୁଞ୍ଚିଲେ ଲୋକେ ଗାନ୍ଧିବାଦ ଚାହାନ୍ତି ନାହିଁ । ସେମାନେ ମୂର୍ଖ, ଅଜ୍ଞ ଭୟଗ୍ରସ୍ତ, ଲୋଭଗ୍ରସ୍ତ ଗଣତନ୍ତ୍ର ପଦ୍ଧତି ପାଇଁ ସମ୍ପୂର୍ଣ୍ଣ ଅନୁପଯୁକ୍ତ । ଲୋକଙ୍କ ପ୍ରତି ତାଙ୍କର ଅସମ୍ମାନ ଚରମ ସୀମାରେ ପହଞ୍ଚିଲା । ପୁଣି ଯେତେବେଳେ ଶୁଣିଲେ ତାଙ୍କ ଭାଇ ପ୍ରଫୁଲ୍ଲ ବହୁ ଭୋଟ୍‌ରେ ଜିତିଛି ଏବଂ ଲୋକେ କୁହାକୁହି ହେଉଛନ୍ତି, ବାଳକୃଷ୍ଣଙ୍କ ଭାଇ ବୋଲି ସେ ଜିତିଗଲା ନାଁ, ନ ହେଲେ କଅଣ ସେ ଜିତି ପାରିଥାନ୍ତା, ସେତେବେଳେ ଭାବନ୍ତି ବାସ୍ତବିକ୍ "ଲୋକେ" କହିଲେ କ'ଣ ବୁଝାଏ । ଏକଇ ବ୍ୟକ୍ତିର ଦୁଇଟା ମନ ନାଁ ସ୍ୱଷ୍ଟ ମତ ପୋଷଣ କରି ସମସ୍ତେ ଭୋଟ୍ ଦେଇଛନ୍ତି । ଅଧିକ ସଂଖ୍ୟକଙ୍କ ସ୍ୱଷ୍ଟ ମତରେ ଗାନ୍ଧିନୀତି ପରିତ୍ୟକ୍ତ । ଏ ତତ୍ତ୍ୱର ବିଶ୍ଲେଷଣ କରିବାକୁ ତାଙ୍କର ଆଉ ମନ ନାହିଁ । ଏ ସବୁ ମନରୁ ଓହ୍ଲାଇ ଶେଷରେ ଯେଉଁ ହ୍ୱାଇ-ଟିରେ ସେ ଚଢ଼ିଥିଲେ ସେ ଭାଙ୍ଗି ପଡ଼ିଲା । ତତ୍ ସଙ୍ଗେ ସଙ୍ଗେ ସେ ମଧ୍ୟ ଭାଙ୍ଗି ପଡ଼ିଲେ ।

—୨୧—

ଅଦ୍‌ଭୁତ ମଣିଷର ମନ । ପ୍ରଫୁଲ୍ଲ ଭୋଟ୍‌ରେ ଜିତି କେବଳ ଏମ୍: ଏଲ୍: ଏ: ହେଲେ ନାହିଁ, ସେ ମଧ୍ୟ ଜଣେ ମନ୍ତ୍ରୀ ହେଲେ । ମନ୍ତ୍ରୀଙ୍କ

ବଡ଼ଭାଇ ବୋଲି ବାଳକୃଷ୍ଣଙ୍କ ଖାତିର କହିଲେ ନ ସରେ । ଭାଇଯୋଗେ ପ୍ରଫୁଲ୍ଲ ମନ୍ତ୍ରୀ ହୋଇ ପାରିଛନ୍ତି ବୋଲି କଥା ଖେଳିଗଲା । ବାଳକୃଷ୍ଣ ଏହାର ପ୍ରତିବାଦ ତ କଲେ ନାହିଁ । ବରଂ ଏ କାନକୁହା କଥାକୁ ପ୍ରଶ୍ରୟ ଦେଲେ । ସାନଭାଇର ମୁରବି ହିସାବରେ ସେ ଏପରି ଚଳିଲେ, ଧାରଣା ବ୍ୟାପିଗଲା, ତାଙ୍କର ପ୍ରତିନିଧି ଏବଂ ଆଜ୍ଞାବହ ହୋଇ ପ୍ରଫୁଲ୍ଲ କାର୍ଯ୍ୟ ଚଳାଉଛନ୍ତି । ଲୋକଙ୍କର ତ ମତ ଓ ଅଭ୍ୟାସ ସାଧାସିଧା । ନିଜର ଅନୁରୋଧ ବା ଆପତ୍ତିକୁ ସଂପୃକ୍ତ କର୍ତ୍ତୃପକ୍ଷଙ୍କୁ ନ ଜଣାଇ, ସେ କର୍ତ୍ତା ଯାହାଙ୍କ କଥା ଶୁଣନ୍ତି ବୋଲି ସେମାନଙ୍କ ବିଶ୍ୱାସ ତାକୁହିଁ ଯାଇ ଧରନ୍ତି ଏବଂ ତାଙ୍କରି ଦ୍ୱାରା ନିଜର ଆପତ୍ତି ଅନୁରୋଧ କୁହା କରନ୍ତି । ଏହି ଅଭ୍ୟାସ ଯୋଗେ ତଥାକଥିତ ଟାଉଟର୍ ବା ମାମଲତକାରମାନଙ୍କ ଭୂମିକା ସାଧାରଣ ସାଂସାରିକ ଜୀବନରେ ଗୁରୁତ୍ୱପୂର୍ଣ୍ଣ । ଅବଶ୍ୟ ପୂର୍ବେ ହାକିମ ହୁକୁମା ଏବଂ ଏବେ ମନ୍ତ୍ରୀମାନଙ୍କ ସାଙ୍ଗରେ ଘନିଷ୍ଠତା ଅଛି ବୋଲି ଲୋକଙ୍କୁ ଦେଖେଇବା ପାଇଁ ଯେପରି ଅନେକ ଛଦ୍ମ ଭୂମିକାର ଆଶ୍ରୟ ନିଅନ୍ତି ସେହିପରି ବାଳକୃଷ୍ଣଙ୍କ ପକ୍ଷରେ କଳ୍ପନାତୀତ ଥିଲା । କାରଣ ସେ ଜଣେ ଉଚ୍ଚଶିକ୍ଷିତ ଓ ଦେଶପ୍ରେମୀ ବ୍ୟକ୍ତି, ତାଙ୍କର ନିଜ ଭାଇ ମନ୍ତ୍ରୀ । ଏପରି ସ୍ଥଳେ ଛଦ୍ମ ଆଚରଣର ପ୍ରୟୋଜନ ତ ନଥିଲା, ସେ ସ୍ୱାଭାବିକ ଗତିରେ ଲୋକଙ୍କ ଅଭ୍ୟାସ ଅନୁଯାୟୀ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହେଲେ । ମନ୍ତ୍ରୀ ପ୍ରଫୁଲ୍ଲଙ୍କ ସରକାରୀ କୋଠିରେ ଯେତେ ଭିଡ଼ ନୁହେଁ, ବାଳକୃଷ୍ଣ ଯେଉଁଠି ରହନ୍ତୁ ପଛକେ, ଗାଁରେ ହେଉ, କୌଣସି ବନ୍ଧୁଙ୍କ ଘରେ ହେଉ ବା ଏପରିକି ବାଣୀବିହାର ହୋଷ୍ଟେଲରେ ହେଉ ତା'କୁ ପିଛା କରି ଲୋକଙ୍କ ଭିଡ଼ । ଏଠିକି ସେଠିକି ଦୌଡ଼ାଦୌଡ଼ି କରିବାର ଅସୁବିଧାରୁ ଲୋକଙ୍କୁ ଉଦ୍ଧାର କରିବା ପାଇଁ ଏବଂ ନିଜେ ମଧ୍ୟ ଅବେଳେ ସବେଳେ ମନ୍ତ୍ରୀଙ୍କ କୋଠି ବା ସେକ୍ରେଟାରୀଏଟ୍‌କୁ ବାରମ୍ବାର ଯିବାଟା ଅସୁନ୍ଦର ମନେକରି ସେ ସ୍ଥିରକଲେ ପ୍ରଫୁଲ୍ଲର କୋଠିରେ ରହିବେ । ସେଥିରେ ଲୋକଙ୍କର ସୁବିଧା ହେବ ଏବଂ ତାଙ୍କର ନିଜର ମଧ୍ୟ ସୁବିଧା ହେବ । ପ୍ରଫୁଲ୍ଲ ଅତି ଆଦରରେ ଭାଇଙ୍କ ପାଇଁ କୋଠିର ଗୋଟିଏ ପାଖ ଛାଡ଼ି ଦେଲେ । ତାଙ୍କ ପାଇଁ ଶୋଇବା କୋଠରୀ, ବସାଉଠା କରିବା କୋଠରୀ ଏବଂ ଅଫିସ୍‌ପାଇଁ ମଧ୍ୟ ଗୋଟିଏ କୋଠରୀର ବ୍ୟବସ୍ଥା ସେ କରଇ

ଦେଲେ । ଗାଇ ତାଙ୍କ ନିର୍ବାଚନରେ ପ୍ରାର୍ଥୀ ହେବାରେ ଅସନ୍ତୁଷ୍ଟ ଥିଲେ । ଭାଇ ନିଜେ ପ୍ରାର୍ଥୀ ହେବା ପାଇଁ ମନ ବଳାଇଥିଲେ । ଭାଇଙ୍କ ସମସ୍ତ ଇତିବୃତ୍ତି ପ୍ରଫୁଲ୍ଲ ଭଲଭାବରେ ଜାଣିଥିଲେ । ଭାଇଙ୍କ ବିରୋଧରେ ଏବଂ ତାଙ୍କ ଯୁବକ ନେତା କର୍ମୀ ଓ ସେମାନଙ୍କ ନୀତି ବିରୋଧରେ ସେ ଯେଉଁ କଟୁ ସମାଲୋଚନା ଉଦ୍‌ଗାର କରୁଥିଲେ, ତା'ର ପ୍ରତିକ୍ରିୟା ମନ ଭିତରେ କାମ କରୁଥିଲା । ଲୋକେ ସିନା ଭୟରେ ବା ଲୋଭରେ ଭୋଟ୍ ଦେଇ-ଦେଲେ । କିନ୍ତୁ ସେମାନଙ୍କ ମନ ଯେ ପ୍ରଚଳିତ ବ୍ୟବସ୍ଥାକୁ ମାନୁ ନଥାଏ, ଏହା ପ୍ରଫୁଲ୍ଲ ଜଣେ ବୁଦ୍ଧିମାନ୍ ଓକିଲ ହିସାବରେ ଠିକ୍ ବୁଝିଥିଲେ । ଏଣୁ ଭାଇଙ୍କୁ ସମ୍ମାନ ଦେଖାଇ ବରାବର ପାଖେ ପାଖେ ରଖିଲେ ଲୋକଙ୍କ ମନ ମଧ୍ୟ ସେ ଆକର୍ଷଣ କରିପାରିବେ—ଏ ଦୂରଦର୍ଶିତା ମଧ୍ୟ ପ୍ରଫୁଲ୍ଲଙ୍କର ଥିଲା । ଏପରିକି ତାଙ୍କଠାରେ ସିଧା କେହି ଆସି ଆପତ୍ତି ଅଭିଯୋଗ କଲେ, ସେ ତାଙ୍କୁ ପଠାଇ ଦିଅନ୍ତି ଭାଇଙ୍କ ପାଖକୁ । ଏପରି କେତେଥର ହେବାରୁ ଲୋକେ ଜାଣିଗଲେ ସେଠୁ ଏଠିକି ପୁଣି ଏଠୁ ସେଠିକି ଯିବା ଆସିବା କାହିଁକି କରିବେ, ଏକାଥରକେ ଏଠୁ ସେଠିକି ଗଲେ ସହଜରେ କାମ ଛିଡ଼ିଯିବ । ଏ ବ୍ୟବସ୍ଥାକୁ ବାଳକୃଷ୍ଣ ମଧ୍ୟ ପସନ୍ଦ କଲେ । ଘୁରିଆଡ଼େ ସମସ୍ତେ କହନ୍ତି ପ୍ରକୃତ ମନ୍ତ୍ରୀ ହେଉଛନ୍ତି ବାଳକୃଷ୍ଣ । ପ୍ରଫୁଲ୍ଲ ହେଉଛନ୍ତି ତାଙ୍କର କା', ଏ ପ୍ରବାଦରେ ବାଳକୃଷ୍ଣ ଅନ୍ତରରେ ଆନନ୍ଦ ଅନୁଭବ କରୁଥିଲେ ।

ଦିନେ ଆସି ପହଞ୍ଚିଗଲେ ଶରତ ତାଙ୍କ ପୁଅ ଅଜୟକୁ ସାଙ୍ଗରେ ନେଇ । ଅଜୟ ନିର୍ବାଚନରେ ପରାଜିତ ହୋଇଛି । ଏମ୍.ଏ. ପାସ୍ କରି ଘରେ ବସିଛି । ବାପାଙ୍କ ଶେଷାବସ୍ଥା ଆସି ପହଞ୍ଚିଲାଣି । ଘର ଚଳିବା ପାଇଁ ଅଜୟକୁ ଉପାର୍ଜନ କରିବାକୁ ହେବ । ଏ ଦିଗରେ ବାଳକୃଷ୍ଣ ସାହାଯ୍ୟ କରିପାରିବେ ବୋଲି ଶରତ ଆସି ତାଙ୍କଠି ପହଞ୍ଚିଲେ । ମନ୍ତ୍ରୀଙ୍କୁ ସାକ୍ଷାତ୍ କରିବାକୁ ଗଲେ ନାନା କଟକଣା ଭିତରେ ଯିବାକୁ ହୋଇ-ଥାନ୍ତା, କିନ୍ତୁ ବାଳକୃଷ୍ଣଙ୍କ ସହିତ ଦେଖା କରିବା ପାଇଁ କୌଣସି କଟକଣା ନାହିଁ । ସେ ମଧ୍ୟ ଲୋକ ଭିଡ଼କୁ ସୁଖ ପାଉଥିଲେ । ଏଣୁ ସେ ନିଜ ପକ୍ଷରୁ ମଧ୍ୟ ତାଙ୍କୁ ଦେଖା କରିବା ପାଇଁ କଟକଣା ବା ବାଧା ଦେବା

ଯେପରି ନ ହୁଏ, କୋଠିରେ ଥିବା ସବୁ ଚପରାସୀଙ୍କୁ ସେ ସତର୍କ କରାଇ ଦେଇଥିଲେ । ଭିଡ ଭିତରେ ବାଳକୃଷ୍ଣ ବସିଛନ୍ତି । ଶରତ ଆସି ସାମନାରେ ଛିଡ଼ା ହୋଇଗଲା ମାତ୍ରେ ଦୁହିଁଙ୍କ ମୁହଁରୁ ହସ ଛିଟିକି ପଡ଼ିଲା । "କି ଶରତ, ବସ ବସ" କହି ପାଖ ଚେୟାର ଉପରେ ଖବର କାଗଜ ଖଣ୍ଡେ ପଡ଼ିଥିଲା, ତାକୁ ଉଠାଇଦେଇଁ ତାଙ୍କ ଆଡ଼କୁ ଚେୟାରଟି ଘୁଞ୍ଚାଇ ଦେଲେ । ଶରତ ବସିପଡ଼ିଲେ, "ବସ୍, ତୋ ସାଙ୍ଗରେ ବହୁତ କଥା ଅଛି, ମୁଁ ଏ ଲୋକଙ୍କୁ ବିଦା କରିଦିଏ ।" କହିଦେଇ କମି ଯିବା ଲୋକଙ୍କୁ ଜଣ ଜଣ କରି ସେମାନଙ୍କ କଥା କହି ଯିବା ପାଇଁ ନିର୍ଦ୍ଦେଶ ଦେଲେ, ନିଜେ ଖଣ୍ଡେ ନୋଟ୍ ବହିରେ ଯାହା ଯେ କହୁଥାଏ ତାକୁ ନୋଟ କରୁଥାନ୍ତି, ଜଲ୍‌ଦି ଜଲ୍‌ଦି ଲୋକଙ୍କୁ ବିଦା କରିଦେଇ ବାହାରେ ଛିଡ଼ା ହୋଇଥିବା ଚପରାସିକୁ କହିଲେ, "ଆଉ କାହାରିକୁ ଭିତରକୁ ଛାଡ଼ ନାହିଁ । ମୁଁ ଏ ବାବୁଙ୍କ ସାଙ୍ଗରେ କଥା ହେବି ।" କାମ ଶେଷରେ କର୍ମକ୍ଳାନ୍ତ ଲୋକପରି ଦୀର୍ଘ ନିଶ୍ୱାସଟିଏ ପକାଇ ଶରତଙ୍କ ଆଡକୁ ଗୁହିଁ ଗଭୀର ସନ୍ତୋଷର ସ୍ୱରରେ କହିଲେ "ଓଃ, ଦିନଗତି ଏତେ ଲୋକ ଆସୁଛନ୍ତି, ଜଣ ଜଣକୁ ପଦେ ପଦେ କଥା କହିଲେ, ଦିନକ ଚବିଶ ଘଣ୍ଟାରୁ ଅନ୍ତତଃ ଦଶଘଣ୍ଟା ଯାଉଛି । ଏତେ ଆପତ୍ତି ଲୋକଙ୍କର ନିଜ ପ୍ରତିନିଧି ସିନା ଶାସନ ଭାରରେ ଥିବାରୁ ଏମାନେ ମୁହଁ ଖୋଲି ଆପତ୍ତି କରୁଛନ୍ତି । ନହେଲେ ତ ଏମାନେ ମନକଥା ମନରେ ମାରି ରହୁଥାନ୍ତେ । ବାସ୍ତବିକ୍ ଗଣତନ୍ତ୍ରର ମୂଲ୍ୟ ସର୍ବାପେକ୍ଷା ବେଶୀ," ଶରତ ଯେପରି ପିଲା, କିଛି ବୁଝି ନାହାନ୍ତି, ତାଙ୍କୁ ବୁଝାଇବା ସ୍ୱରରେ ବାଳକୃଷ୍ଣ କହିବାରେ ଲାଗିବାରୁ ଶରତ ଅଳ୍ପ ହସି ବାଧାଦେଇ କହିଲେ—"ଯା' ହେଉ ତୁମେ ଗଣତନ୍ତ୍ରର ମୂଲ୍ୟ ବୁଝିଛ, ଏହା ଆନନ୍ଦର କଥା, ଏକ ସମୟରେ ତୁ ତ କହୁଥିଲୁ ଗଣତନ୍ତ୍ର ବର୍ତ୍ତମାନ ଧ୍ୱସ୍ତ, ତାକୁ ରକ୍ଷା କରିବାକୁ ହେବ ।" ବାଳକୃଷ୍ଣ ଗମ୍ଭୀର ହୋଇଗଲେ, କିଛି କ୍ଷଣପରେ କହିଲେ, "ବାସ୍ତବିକ୍ ମୋର ଧାରଣା ନଥିଲା ଏତେ ଆପତ୍ତି ଲୋକଙ୍କର ଅଛି ବୋଲି, ଶାସନ ବାହାରେ ଆମେ ଥିଲୁ କି ନା, ଦୂରରୁ ସବୁ ଶାନ୍ତ ନିର୍ବିକାର ଜଣାପଡୁଥିଲା । କିନ୍ତୁ ଭିତରେ ପଶିବାରୁ ଲୋକଙ୍କ ମନ ସହଜରେ ଜାଣି ହେଉଛି ।" ଶରତ ହସୁଥାନ୍ତି, କିଛି କହିବେ କି ନ କହିବେ ଏପରି ହେଉଥାନ୍ତି, ସେ ନିଜେ ଜଣେ ଆପତ୍ତିକାରୀ, ଉଚ୍ଚବାଚ କରିବା

ସୁବିଧା ଜନକ ନୁହେଁ । ଏହିପରି ଦ୍ୱିଧାରେ ପଡ଼ି ଅସ୍ପଷ୍ଟ ସ୍ୱରରେ କହିଲେ "ଲୋକ କହିଲେ ଯାହା ବୁଝାଏ, ସେମାନେ କ'ଣ ଆପତ୍ତି କରିବାକୁ ଆସୁଛନ୍ତି, ଆସୁଛନ୍ତି ଶାସନର ଆଖପାଖ ଲୋକେ ।" ବାଳକୃଷ୍ଣ ଫାଙ୍କି ଦେବା ସ୍ୱରରେ କହିଲେ, "ତୁ ଜାଣି ପାରୁନାହୁଁ, ଶହ ଶହ ଲୋକ ଆସୁଛନ୍ତି । ସମସ୍ତେ କଅଣ ସରକାରର ଆଖପାଖ ଲୋକ ? ଯଦି ତା'ହୋଇଥାଏ, ତେବେ ତ ସରକାର ପ୍ରକୃତ ଲୋକ ପ୍ରତିନିଧି । ଶରତ୍ ତୁ ଆଉ ଯୁକ୍ତି କରନା, ଏଇ କେତେ ମାସ ଭିତରେ ମୋର ଯେଉଁ ଅଭିଜ୍ଞତା ହୋଇଛି, ସେଥିରେ ମୋର ବିଶ୍ୱାସ ହୋଇଛି, ଆମେ ଶାସନ ବା ପ୍ରଚଳିତ ବ୍ୟବସ୍ଥାଠାରୁ ଦୂରରେ ରହି ଭୁଲ୍ କରୁଛୁ । ଏ ଭୁଲକୁ ମାନି ନେଇ ଚଳିବାକୁ ହେବ । ଅବସ୍ଥାକୁ ଗ୍ରହି ବ୍ୟବସ୍ଥା କରିବା ହେଉଛି ଉତ୍କୃଷ୍ଟ ନୀତି । କେବଳ ନୀତିକୁ ଧରିରହି ଅବସ୍ଥାର ସମ୍ମୁଖୀନ ନ ହେଲେ ଅବସ୍ଥାର ପ୍ରଖର ସ୍ରୋତରେ ନୀତି ତଥା ନୀତିବାଦ କୁଆଡ଼େ ଭାସିଯିବ ।" ଶରତ ଏଥର ଟିକେ ମୁହଁ ଖୋଲିଲେ, ମୁହଁରେ କିନ୍ତୁ ହସଟିଏ ଏପରି ଭାବରେ ଥାଏ ମନେହେବ ଯେପରି ସେ କୌଣସି ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରୁ ନାହାନ୍ତି । ସେ କହିଲେ—ଏଇ ଯେ ଛବିଶ୍ ଲୋକଙ୍କର ଆପତ୍ତି ଶୁଣି ତୁ ନୋଟ୍ କଲୁ, ମୁଁ ଗଣିଛି, ମନେ ମନେ ନୋଟ୍ କରିଛି, ଛବିଶ୍ ଜଣରୁ କୋଡ଼ିଏ ଜଣଙ୍କର ଆପତ୍ତି ହୋଇଛି ତାଙ୍କର ଭାଇବନ୍ଧୁ ସରକାରୀ କର୍ମଚାରୀଙ୍କ ବଦଳି ଆଦେଶ ରଦ୍ଦ କରିବା ପାଇଁ । ତିନି ଜଣଙ୍କ ଆପତ୍ତି ହେଉଛି ସେମାନଙ୍କ ନାଁରେ ପୋଲିସ୍ କଅଣ ମୋକଦ୍ଦମା ଚଳାଇଛି, ସେ ମୋକଦ୍ଦମା ଯେପରି ସବୁ ଉଠାଇ ନିଆହୁଏ କାରଣ ସେମାନେ ପ୍ରଫୁଲ୍ଲଙ୍କ ନିର୍ବାଚନରେ ପ୍ରଚାର କାର୍ଯ୍ୟ କରିଥିଲେ । ଆଉ ଜଣେ ଛାତ୍ର ପରୀକ୍ଷା ଫିସ୍ ଦେବା ପାଇଁ ସାହାଯ୍ୟ ମାଗିବାକୁ ଆସିଥିଲା ।" ଏଥିରେ ଲୋକ କାହାନ୍ତି, ଲୋକଙ୍କର ପଦା ମୁହଁ ଫିଟେ ନାହିଁ, ସେହି ମୂକ ଜନତା ମୁହଁରେ ଭାଷା ଦେବାପାଇଁ ପରା ଆମେ ବାହାରିଥିଲେ । ଶେଷରେ ଆସି ପହଞ୍ଚିଲେ ସରକାରୀ କର୍ମଚାରୀ ବଦଳି, ନିର୍ବାଚନରେ କାମ କରିଥିବାରୁ ସାତ ଖୁଣୀ ମାଫ୍ ଏଇତ—ଛାଡ଼ ସେ କଥା, ମୁଁ ଆସିଲି ମୋ ନିଜର ଏକ ବ୍ୟକ୍ତିଗତ ଆପତ୍ତି କରିବାପାଇଁ, ବାଳକୃଷ୍ଣ ଟେବୁଲ୍ ଉପରକୁ ଝୁଙ୍କି ଆସି ଦୀର୍ଘ ଯୁକ୍ତି ତର୍କର ଅବତାରଣା

ପାଇଁ ଉଦ୍ୟତ ହେଉଥିଲେ, କିଛି କହିପକାଇଥିଲେ ମଧ୍ୟ । ଶରତ ହସି ହସି ଆଉ ବେଶୀ କଥା ନ ବଢ଼ାଇ ତାଙ୍କ ନିଜ ଆପତ୍ତିଟି କହିବାକୁ ବ୍ୟଗ୍ର ହେଲେ । ପ୍ରକୃତିର ବେଗ ବାଧା ପାଇଲେ ଯେପରି ଜଣେ ଅସୁସ୍ଥ ଅନୁଭବ କରେ, ସେହିପରି ଭାବ ବାଳକୃଷ୍ଣଙ୍କ ମୁହଁରେ ପ୍ରକାଶ ପାଇଲା । ମାତ୍ର ସେ ନିଜର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ଆପତ୍ତି ଶୁଣି ପ୍ରତିକାର କରିପାରିଲେ, ସେହି ହେବ ଶରତଙ୍କ କଥାର ଏକ ବଳବତ୍ ଉତ୍ତର । ଏହା ମନେ କରି କାମଟା ଶୀଘ୍ର କରଇ ଦେବେ, ଏହା ଭାବି ପଚାରିଲେ, "କଅଣ ତୋ'ର ଆପତ୍ତି ?" ତର୍କର ଉଚ୍ଚସ୍ତରରୁ ଖସି ଆସି ପଡ଼ିଲେ ମାଟିରେ ନିଜର ବ୍ୟକ୍ତିଗତ ସମସ୍ୟା ସ୍ତରରେ । ଦୁଃଖରେ ସେ ଧୀରେ ଧୀରେ କହିଲେ, 'ତୁ ତ ଜାଣୁ ମୁଁ ଜୀବନରେ କିଛି ରୋଜଗାର କରିନାହିଁ, ବାପାଙ୍କ ପେନ୍‌ସନ୍ ଓ ପୈତୃକ ସମ୍ପତ୍ତିରେ ଯାହା ଏତେକାଳ ଆମ ପରିବାର ଚଳି ଆସିଲା । ବାପା ବର୍ତ୍ତମାନ ଅତି ବୃଦ୍ଧ । ପୁଅ ତ ନିର୍ବାଚନରେ ତୁମ ଦଳ ପକ୍ଷରୁ ପ୍ରାର୍ଥୀ ହୋଇଥିଲା । ହାରିଗଲା, ତୁ ଜାଣିଥିବୁ । ସେ ଏମ୍. ଏ. ପାସ୍ କରିଛି । ସେ କିଛି ରୋଜଗାର ନ କଲେ ତ ଆମ ଘର ସଂସାର ଅଚଳ ହୋଇଯିବ । ଏ ବୟସରେ ମୁଁ ତ ଚାକିରୀ ବା ଅନ୍ୟ କୌଣସି ବ୍ୟବସାୟ କରି ରୋଜଗାର କରିପାରିବି ନାହିଁ । ପୁଅଟିକୁ କୌଣସି ଚାକିରୀରେ ରଖାଇଦେଲେ ଆମ ଘର ଚଳିବ ମୁଁ ମଧ୍ୟ ହନ୍ତସନ୍ତରୁ ରକ୍ଷା ପାଇବି ।" ଅନୁକମ୍ପା ପ୍ରକାଶିତ ହେଲା ବାଳକୃଷ୍ଣଙ୍କ ଚେହେରାରେ । କିଛିକ୍ଷଣ ନୀରବ ରହି ଧୀରେ ଧୀରେ କହିଲେ, "ବାସ୍ତବିକ୍ ଆମେ ସବୁ ଏ ବୟସରେ ଆମ ପରିବାରମାନଙ୍କର ଗଳଗ୍ରହ । ରୋଜଗାର ଛାଡ଼ିଲୁ । ଜୀବନର ସବୁ ଅଭିଳାଷ ବିପର୍ଯ୍ୟସ୍ତ । ଶେଷରେ ନିଜର ପୁଅ ଭାଇ ଏହିମାନଙ୍କ ଉପରେ ତ ନିର୍ଭର କରିବାକୁ ପଡ଼ିବ । ଏହି ଭାଗ୍ୟ କେବଳ ତୋର ନୁହେଁ କି ମୋର ନୁହେଁ । ଆମ ଯୁଗର ଅଧିକାଂଶ ଲୋକଙ୍କ ।" ତା'ପରେ ସ୍ପଷ୍ଟ ସ୍ୱରରେ କହିଲେ, "କି ଚାକିରୀ ସେ କରିବ—ସେ ଆସିଛି ଏଠିକି ?

ଶରତ— "ସେ ବାହାରେ ଛିଡ଼ା ହୋଇଛି ।" ବାଳକୃଷ୍ଣ ବ୍ୟସ୍ତ ହୋଇପଡ଼ି କହିଲେ, "ତାକୁ ତୋ ସାଙ୍ଗରେ ନେଇ ଆସିଲୁ ନାହିଁ । ତୋ ମୋ ଭିତରେ କ'ଣ କିଛି ପ୍ରଭେଦ ଅଛି ?" ଚପରାଶି ଆସିବା ପାଇଁ ଟେବୁଲ ପାଖରେ ଏକ ସ୍ୱିଚ୍ ଦେଇ ଘଣ୍ଟି ବଜାଇ ଦେଲେ । ଚପରାଶୀ ଆସିବା-

ମାତ୍ରେ ଅଜୟଙ୍କୁ ଛାଡ଼ିଦେବା ପାଇଁ କହିଲେ । ଅଜୟ ଘରଭିତରକୁ ନମସ୍କାର କରି ଦରହସିତ ମୁହଁରେ ଛିଡ଼ା ହେଲେ । ବାଳକୃଷ୍ଣ ସ୍ନେହରେ ତିରସ୍କାର କରି କହିଲେ, "ତୁ ଆମ ନିଜର ଲୋକ, ବାହାରେ କାହିଁକି ଛିଡ଼ା ହୋଇ ରହିଲୁ ? ଘର ଭିତରକୁ ପଶି ଆସିଲୁ ନାହିଁ ?" ଅଜୟ ଯୁବକ, ଉଚ୍ଚାଭିଳାଷ ଦପ୍ ଦପ୍ ହେଉ ଛାତି ଭିତରେ ଜଳୁଛି । ନିର୍ବାଚନରେ ହାରି ଯାଇଛି ସିନା ମନ ଦବି ଯାଇନାହିଁ, ସେ ଅବଲୀଳାକ୍ରମେ କହିଲେ, "ଏ ମନ୍ତ୍ରୀଙ୍କ ଘର, ଆଉ ଆପଣ ହେଉଛନ୍ତି ଅତି ସଚୀବ....." ବାଳକୃଷ୍ଣ– "ଏ ପୁଣି କି ଉପାଧି ।" ଅଜୟ–"ଶ୍ରୀ ଅରବିନ୍ଦ ମାନସ ଶକ୍ତି ଉପରକୁ ଅତିମାନସ ଶକ୍ତି କଥା କହିଛନ୍ତି ଆଧ୍ୟାତ୍ମିକ ସ୍ତରରେ । ରାଜନୀତି ସ୍ତରରେ ସଚୀବ ଶକ୍ତି ଉପରକୁ ଅତି ସଚୀବ ଶକ୍ତି ଆପଣଙ୍କ ଅଛି ବୋଲି ଆମେ ଶୁଣୁଛୁ ।" ହସି ଉଠିଲେ ସମସ୍ତେ, "ଆଚ୍ଛା ହେଉ, ବସ୍ ବସ," କହି ପାଖରେ ଏକ ଚେୟାର୍ ଦେଖାଇଦେଲେ ବାଳକୃଷ୍ଣ, ବର୍ତ୍ତମାନ ବାଳକୃଷ୍ଣ ଜଣେ ସାଧାରଣ ସ୍ତରରେ ମନୁଷ୍ୟ ହିସାବରେ କଥାବାର୍ତ୍ତା ଚଳାଇଥିଲେ । ନାହିଁ ସେ ପୂର୍ବର ନୀତିମତ୍ତାର ଗୁରୁମନ୍ୟତା, ନାହିଁ ବର୍ତ୍ତମାନରେ ମନ୍ତ୍ରୀ ଉତ୍ତରର ଗୌରବଗାନ । ସେ ଏହିକ୍ଷଣି ଜଣେ ସାଧାରଣ ଗୃହସ୍ଥ । ସଂସାରର ସୁଖ ଦୁଃଖରେ ଭଗୀ, ପଚାରିଲେ ନିଜର ଲୋକ ଭଳି, "ଶରତ, କଅଣ କରୁଛୁ ତୁ ବର୍ତ୍ତମାନ । ଘରକୁ ତ ଗଲିଥିଲୁ, ଘର ସଂସାର ବୁଝିବା ପାଇଁ କଅଣ କରୁଛୁ ? ସମୟ କିପରି କଟୁଛି ?" ବାପାର ଉତ୍ତର ଦେବାକୁ ଅପେକ୍ଷା ନକରି ଅଜୟ ହସି ହସି କହିଲେ, "ସେ ବର୍ତ୍ତମାନ କୀର୍ତ୍ତନରେ ମାତିଛନ୍ତି । ଗୃହବାସ ଉଙ୍ଗିଗଲେ, ହରିନାମ ଛଡ଼ା ଆଉ ଅନ୍ୟ କଅଣ ଜଣେ କରିପାରେ ?" ବାଳକୃଷ୍ଣ–"ତୁ ତ ଯୋଗ୍ୟ ପୁଅ ଥିଲୁ, ନିର୍ବାଚନରେ ଜିତିଲୁ ନାହିଁ କାହିଁକି ? ଜିତିଥିଲେ ରୋଜଗାରର ଏକ ଲାଇନ୍ ଧରିଥାଆନ୍ତୁ ।" ଅଜୟ ମୁହଁ ତଳକୁ କରିଦେଲେ । ଶରତ ଉତ୍ତର ଦେଲେ, "ଅଜୟ ଆମର ବଡ଼ ମୁହଁଖୋର୍ । ଠୋ ଠୋ ସବୁଠି ସମସ୍ତଙ୍କ ସାଙ୍ଗରେ କଥାବାର୍ତ୍ତା କରେ । ସେଥିରେ କି ଭୋଟ୍ ମିଳେ, ବୈଷ୍ଣବ ଧର୍ମ ଅବଲମ୍ବନ କରି ତୃଣାଦପି ସୁନୀଚ ଦାରୁଠାରୁ ସହିଷ୍ଣୁ । ଏପରି ନ ହେଲେ ଜନତା ଜନାର୍ଦ୍ଦନ କଅଣ ପ୍ରସନ୍ନହୋଇ ଭୋଟ୍ ଦାନ କରିବେ ?" ହସିଲେ ସମସ୍ତେ । "ବାସ୍ତବିକ୍ ଯେଉଁ ଅବସ୍ଥାରେ ଯାହା

କରିବାର କଥା ତା' ନ କଲେ କାର୍ଯ୍ୟସିଦ୍ଧି ହୁଏ ନାହିଁ ।" ବାଳକୃଷ୍ଣଙ୍କ କଥାରେ ଉତ୍ତର ନ ଦେଇ ଅଜୟ ଛାଡ଼ିଲେ ନାହିଁ, ସେ କହିଲେ, "ସେହି ଶିକ୍ଷା ଆପଣମାନେ ଆମକୁ ମୂଳରୁ ଦେଇଥିଲେ ହୋଇଥାନ୍ତା ।" କଥାଟାକୁ ଘୁରିଦେଇ ଶରତ କହିଲେ "କଅଣ କିଛି କରିଦେଇ ପାରିବୁ, କରିଦେଲେ ମୁଁ ବଡ଼ ଉପକୃତ ହୁଅନ୍ତି ।" ମୁହଁ ତଳକୁ କରି ଅଜୟ ସବୁ ଶୁଣୁଥାନ୍ତି । କିଛି କହୁ ନ ଥାନ୍ତି । ବାଳକୃଷ୍ଣ କିଛିକ୍ଷଣ ଚିନ୍ତା କରି କହିଲେ, "ଯେକୌଣସି ବିଭାଗରେ ହେଉ ମୁଁ କିଛି ଗୋଟାଏ ଜୁଟାଇ ଦେବି । ସରକାରି ଚାକିରି ନ ହୋଇ ପାରିଲେ, କୌଣସି ଶିଳ୍ପପତିଙ୍କୁ କହି କୌଣସି କାମରେ ରଖି ଦେଇ ପାରିବି ।" ଶରତ ଆଶ୍ୱସ୍ତ ହେଲେ, କିନ୍ତୁ ଅଜୟ ମୁଣ୍ଡ ଉଠାଇ କରି କହିଲେ, "ସରକାରୀ ଚାକିରୀ ନ ହୋଇ ବେସରକାରି ହେଲେ ଭଲ ହେବ ।" ଜଣେ ଅଭିଜ୍ଞ ଗୃହସ୍ଥର ସ୍ୱରରେ ବାଳକୃଷ୍ଣ କହିଲେ, 'ଚାକିରୀ ତ ଚାକିରୀ, ସରକାରୀ କଅଣ ଆଉ ବେସରକାରୀ କଅଣ ? ସେହିପରି ଭେଦଭାବ ମନରେ ରଖିବା ଠିକ୍ ନୁହେଁ ।" ହୁଏତ ଅଜୟ ଆଉ କିଛି କହିଥାନ୍ତେ । କିନ୍ତୁ ଶରତ ଚପେଇ ଦେଇ କହିଲେ, "ସରକାରୀ ହେଉ ବା ବେସରକାରୀ ହେଉ କିଛି ଗୋଟିଏ ଜୁଟାଇ ଦେ ।" କଥା ସରିଲା, ଶରତ ଉଠ୍ ଉଠ୍ ହେଲେ, ବାଳକୃଷ୍ଣ—"ବସ୍ ବସ୍, କେଉଁଠି ରହୁଛ ? ଏଠି ରହିଯା' । ଅଜୟ ରହିଯାଉ, ବହୁଦିନ ପରେ ଦେଖା, ରହିଯା କଥାବାର୍ତ୍ତା ହେବା ।" ଏ କଥା ଶୁଣି ଶରତ କାନ୍ଦ କାନ୍ଦ ହୋଇଗଲା । ତାଙ୍କର ବର୍ତ୍ତମାନର ଅସହାୟ ଅବସ୍ଥା ଓ ବାଳକୃଷ୍ଣଙ୍କ ବର୍ତ୍ତମାନ ଶାସନ ବ୍ୟାପାରରେ କ୍ଷମତା ଏ ଦୁଇ ମଧ୍ୟରେ ଏତେ ବ୍ୟବଧାନ । ସେଥିରେ ପୂର୍ବର ସମାବସ୍ଥାର ସୌହାର୍ଦ୍ଦ ସ୍ମୃତି—ହଠାତ୍ ବିଦ୍ୟୁତ ଶକ୍ତିପରି ଶରତଙ୍କ ହୃଦୟରେ କାମ କଲା । ଶରତଙ୍କ ଚେହେରା ଦେଖି ବାଳକୃଷ୍ଣ ମଧ୍ୟ ବିଷନ୍ନ ହେଲେ । କିଛିକ୍ଷଣ କେହି କାହାରିକୁ କିଛି କହି ପାରିଲେ ନାହିଁ, "ସବୁ ତ ସରିଲାଣି, ଏଣିକି ତ ବିଦାୟ ନେବାର କଥା, ଆଉ କ'ଣ କଥାବାର୍ତ୍ତା ହେବା ? ଅଜୟ କଥା ବୁଝିବ ।" ଏତିକି କହି ଦୀର୍ଘ ନିଶ୍ୱାସ ପକାଇ ଉଠି ପଡ଼ିଲେ ଶରତ । ରହ କି ଯାଆ କିଛି କହି ପାରିଲେ ନାହିଁ ବାଳକୃଷ୍ଣ । ମୁହଁରୁ କିଛି ସ୍ୱର ନଥାଏ, ଭିତରେ ଅନ୍ତରରେ ଆଲୋଡ଼ନ ଷଂବ୍‌ଧ ହୋଇ ବସି ରହିଲେ ସେ । ଶରତ ଓ ଅଜୟ

ନମସ୍କାର କରି ଗ୍ଲଲିଗଲେ । ବହୁକ୍ଷଣ ବାଳକୃଷ୍ଣ ଟେବୁଲ୍ ଉପରେ ମୁହଁ ମାଡ଼ି ବସି ରହିଲେ, ତା'ପରେ ମୁହଁ ଉଠାଇ ରୁମାଲରେ ଆଖି ପୋଛି ହେଲେ, ସେଦିନ ଆଉ କାହାକୁ ଦେଖା କରିବେ ନାହିଁ ଚପରାସୀକୁ କହି ଭିତରକୁ ଗ୍ଲଲିଗଲେ ।

—୨୨—

ସେଦିନ ପୁରୀ ସହର ସାରା ଲଉଡ ସ୍ପିକର୍‌ରେ ପ୍ରଚାର ଗ୍ଲଲିଛି, ନବ ପ୍ରତିଷ୍ଠିତ ସମାଜବାଦୀ ଯୁବକେନ୍ଦ୍ର ଉଦ୍‌ଘାଟନ କରିବେ ଏ ଯୁଗର ପ୍ରଗତିବାଦୀ ନେତା ଓ ମନ୍ତ୍ରୀ ପ୍ରଫୁଲ୍ଲକାନ୍ତି ରଥ । ବହୁ ସଂଖ୍ୟାରେ ଯୁବଛାତ୍ର ଯୋଗ ଦିଅନ୍ତୁ । ସେହି ସମୟକୁ ଝାଞ୍ଜପିଟା ମଠରେ ଥାଆନ୍ତି ଶରତ । ପୁଅ ଅଜୟର ଏକ ଉଚ୍ଚ ସରକାରୀ କାର୍ଯ୍ୟରେ ନିଯୁକ୍ତି ହୋଇଗଲା ପରେ ଶରତ ନାମସଂକୀର୍ତ୍ତନରେ ତାଙ୍କ ଅଧିକାଂଶ ସମୟ କଟାଉଛନ୍ତି । ଝାଞ୍ଜପିଟା ମଠରେ ନାମ ସଂକୀର୍ତ୍ତନର ଅନୁଭୂତି ଅପୂର୍ବ ବୋଲି ସେ ଉପଲବ୍ଧି କରନ୍ତି । ଇତିମଧ୍ୟରେ ସେ ଶ୍ରୀଚୈତନ୍ୟ ଚରିତାମୃତ ବାବାଜି ରାଧାରମଣ ଚରଣ ଦାସଙ୍କ ଜୀବନୀ ଇତ୍ୟାଦି ପଢ଼ିସାରିଛନ୍ତି । ଏ ସବୁ ଗ୍ରନ୍ଥରେ ତାଙ୍କ ବାପାଙ୍କ ନିରତିଶୟ ଆଗ୍ରହ । ବହୁ ବୈଷ୍ଣବ ଗ୍ରନ୍ଥ ସେ ସଂଗ୍ରହ କରିଛନ୍ତି । ଘରେ ବସି ଏ ସବୁ ପଢ଼ିବାର ଏବଂ ବାପାଙ୍କ କୀର୍ତ୍ତନ ଗୋଷ୍ଠିର ସୁବିଧା ସେ ପାଉଛନ୍ତି । ବାପା ତ ଅବସରପ୍ରାପ୍ତ ଜଣେ ଡେ଼ପୁଟି ମାଜିଷ୍ଟ୍ରେଟ୍ । କେତେ କ୍ଷମତା ତାଙ୍କର ଥିଲା ଗ୍ଲକିରି ସମୟରେ । କେତେ ଅଭିଳାଷ ଥିଲା ତାଙ୍କ ମନରେ । ଅବସର ପ୍ରାପ୍ତି ପରେ ସେ ତ ନିଜକୁ ଆନନ୍ଦରେ ବୁଡ଼ାଇ ରଖିଛନ୍ତି । କୀର୍ତ୍ତନରେ ତାଙ୍କର ଉତ୍ସାହ ଯେ କୌଣସି ଯୁବକ ମନରେ ଉଦ୍ଦୀପନା ସୃଷ୍ଟି କରିବ । ନାମ କୀର୍ତ୍ତନ ମଧ୍ୟ ଜୀବନର ଅପରାହ୍ନରେ ଏକ ଆନନ୍ଦଦାୟକ କାର୍ଯ୍ୟକ୍ରମ । ଏହାହିଁ ଶରତ ଉପଲବ୍ଧି କଲେ ତାଙ୍କ ବାପାଙ୍କ ଜୀବନରୁ । ବୈଷ୍ଣବ ଗ୍ରନ୍ଥ ଅଧ୍ୟୟନ କରି ସେ ଜାଣିଲେ ଲୋକ ମୁଖରେ କଥିତ ଝାଞ୍ଜପିଟା ମଠର ଇତିହାସ । ଶ୍ରୀ ଚୈତନ୍ୟ ଦେବଙ୍କ ଭକ୍ତ ନରୋତ୍ତମ ଦାସ ଠାକୁରଙ୍କର ଶିଷ୍ୟ ଶ୍ରୀ ସେବାଦାସ ଏ ମଠଟି ସ୍ଥାପନ କରିଥିଲେ । ମଠଟିର ନାମ ହେଉଛି 'ବିରକ୍ତି ସିଦ୍ଧାଶ୍ରମ' । ଶ୍ରୀ ଚୈତନ୍ୟଙ୍କ

ପରବର୍ତ୍ତୀ ଯୁଗର ଶ୍ରେଷ୍ଠ ପ୍ରେମ ଭକ୍ତି ସାଧକ ଶ୍ରୀ ଚରଣ ଦାସ ବାବାଜୀ ଏ ମଠରେ ବହୁବର୍ଷ ରହି ଏହାର ପୁନରୁଦ୍ଧାର ଏବଂ ଉନ୍ନତି ସାଧନ କରିଥିଲେ । ଏ ମଠଟିର ନାମ ଶରତଙ୍କ ମନରେ ଏକ ଅପୂର୍ବ ଉଦ୍ଦୀପନା ଦେଇଥିଲା । ଅପୂର୍ବଙ୍କର ବିରକ୍ତି ଜୀବନରେ ହିଁ ଏହି ଆଶ୍ରମ ନିତ୍ୟ ଜୀବନରେ ଅନୁରକ୍ତି ଜାଗରଣ କରିପାରେ । ଏହି ବିଶ୍ୱାସରେ ସେ ମଝିରେ ମଝିରେ ଆସି ଏହି ମଠରେ ରହନ୍ତି । ସେତେବେଳେ ସେ ଏହି ମଠରେ ଥିଲେ । ମଠବାଡ଼ି ଆଶ୍ରମ ଇତ୍ୟାଦିରେ ଯେଉଁମାନେ ମନମାରି ରହିଯାଆନ୍ତି, ସେମାନେ ବାହାରର କୌଣସି ଖବର ରଖନ୍ତି ନାହିଁ । ତେଣୁ ଲଉଡ଼୍ସ୍ପିକର ଯୁଗର କୌଣସି ମଠ ଭିତରକୁ ପ୍ରବେଶ କରେ ନାହିଁ । ତଥାପି ସଂସାର ଦୋଷ ତ ରହିଛି । ମଠ ପାଖ ଦେଇ ଲଉଡ଼୍ସ୍ପିକର୍ ପ୍ରଚାରକ ଗଲାବେଳେ ଶରତଙ୍କ କାନରେ ପଡ଼ିଗଲା । ମନ୍ତ୍ରୀ ପ୍ରଫୁଲ୍ଲଙ୍କ ସଭା । ପ୍ରଫୁଲ୍ଲଙ୍କ ନାମ ଶୁଣିବା ମାତ୍ରେ ସଙ୍ଗ ନିୟମାନୁସାରେ ବାଳକୃଷ୍ଣଙ୍କ କଥା ମଧ୍ୟ ମନେ ପଡ଼ିଗଲା । ସ୍ମୃତି ଗୋଟିଏ ବିନ୍ଦୁ ସ୍ପର୍ଶ କଲେ, ଜାଗିଉଠେ ଆନୁସଙ୍ଗୀକ ସମସ୍ତ ସ୍ମୃତି । ମନ୍ତ୍ରୀ ସର୍କିଟ୍ ହାଉସ୍‌ରେ ଥିବେ । ବାଳକୃଷ୍ଣ ମଧ୍ୟ ତାଙ୍କ ସାଥିରେ ଆସି ସେଇଠି ଥିବେ । ଅନ୍ତରଙ୍ଗ ବନ୍ଧୁ ବାଳକୃଷ୍ଣ ମାତ୍ର ଏଇ ଅଳ୍ପ କାଳ ପୂର୍ବର । ଆଜି ସେ କେଉଁଠି ଏବଂ ସେ ନିଜେ କେଉଁଠି । ପୁଣି ମନେ ପଡ଼ିଗଲା ସେ କାଳର ଅନ୍ତରଙ୍ଗ ବନ୍ଧୁ ଜଗଦୀଶ୍ । ସେ ତ ଏହି ପୁରୀର ସ୍ୱର୍ଗଦ୍ୱାରରେ କ'ଣ ଯୋଗ ସାଧନା କରୁଥିଲା । ସେ ସେଠି ଅଛି ନା କୁଆଡ଼େ ଗଲାଣି ? ଏତେ ଥର ପୁରୀ ଆସୁଛନ୍ତି କିନ୍ତୁ ଦିନେହେଲେ ତା କଥା ମନେ ପକାଉ ନାହାନ୍ତି । ଦୁଃଖ ହେଲା । କିନ୍ତୁ ଜଗଦୀଶ୍ କ'ଣ ତାଙ୍କୁ ମନେ ପକାଉଛି ? ଦୁନିଆରେ କେହି କାହାରି ନୁହଁନ୍ତି । ସମସ୍ତେ ଧର୍ମଶାଳାରେ କିଛିଦିନ ପାଇଁ ଏକାଠି ରହୁଥିବା ଯାତ୍ରୀଙ୍କ ପରି । ଧର୍ମଶାଳା କଥା ମନକୁ ଆସିଲା ମାତ୍ରେ ସ୍ମୃତିପଟରେ ନାଚିଗଲା ଗୋଏଙ୍କା ଧର୍ମଶାଳାରେ ତିନି ବନ୍ଧୁଙ୍କ ନିଭୃତ ଆଲୋଚନା ଓ ଶେଷରେ ପରସ୍ପର ସଙ୍ଗତ୍ୟାଗ । ପୁଣି ଘଟଣାଚକ୍ରରେ ସେ ବାଳକୃଷ୍ଣଙ୍କଠାରେ ଅନୁଗ୍ରହ ପ୍ରାର୍ଥୀ । ଗାନ୍ଧିବାଦୀ ବାଳକୃଷ୍ଣ ପୁଣି ସମାଜବାଦୀ ଶାସନରେ ଜଣେକ କର୍ଣ୍ଣଧାର । ବିଚିତ୍ର ଏ ସଂସାର । ବିଚିତ୍ର ଏ ସାଢ଼େ ତିନିହାତ ମନୁଷ୍ୟର ଜୀବନ ଓ ମତିଗତି । ଏ ସବୁ ସ୍ମୃତି କିଛି କାଳ ପାଇଁ ଶରତଙ୍କୁ ଅସ୍ଥିର

କରିଦେଲା । ଯେତେ ସେ ଚେଷ୍ଟା କଲେ ମନକୁ ଏ ସ୍ମୃତି ଗହ୍ୱରରୁ ଓଟାରି ଆଣିବା ପାଇଁ, ପାରିଲେ ନାହିଁ । ଶେଷରେ ଯେତେବେଳେ ସ୍ଥିର କଲେ, ସନ୍ଧ୍ୟାରେ ଯିବେ ସଭାକୁ, ଯଦି ଦୈବାତ୍ ବାଳକୃଷ୍ଣଙ୍କ ସାଙ୍ଗରେ ଦେଖା ହୋଇଯାଏ ତେବେ ଭଲ, ନଚେତ୍ ସେ ଆଉ ସେ କଥା ମନକୁ କେବେ ନେବେ ନାହିଁ । ସେ ସ୍ଥିର କଲେ କ'ଣ ହେବ, ମନ ତ ଅସ୍ଥିର । ସଭା ସମୟର କିଛିକ୍ଷଣ ପୂର୍ବରୁ ସଭାସ୍ଥଳରେ ପହଞ୍ଚିଲେ । ସିଂହଦ୍ୱାର ପୁରୀରେ ସଭାସ୍ଥଳ ପାଇଁ ପ୍ରଧାନ । କାରଣ ଏଠାରେ ସବୁ ସମୟରେ ଲୋକ ଗହଳି ଥାଏ । କେହି ଜଣେ ଛିଡ଼ା ହୋଇ ମାଇକ୍‌ରେ ଗୀତଟିଏ ବୋଲିଦେଲେ ବା ଉଚ୍ଚସ୍ୱରରେ ଭାଷଣଟିଏ ଦେଲେ ଆଇଲା ଗଲା ଲୋକ ଛିଡ଼ା ହୋଇ ଯାଆନ୍ତି । ବକ୍ତା ଉଦ୍ୟୋକ୍ତା ସମସ୍ତେ ସନ୍ତୋଷ ଲାଭ କରନ୍ତି ସଭାରେ ପ୍ରଚୁର ଲୋକଙ୍କୁ ଦେଖି । କିନ୍ତୁ ମନ୍ତ୍ରୀଙ୍କ ସଭା ପାଇଁ ଗୋଟିଏ ସୁସଜ୍ଜିତ ମଞ୍ଚ ତିଆରି ହୋଇଛି । ମଞ୍ଚ ଉପରେ ସାତ ଆଠ ଜଣ ବସିବାର ସ୍ଥାନ ଅଛି । ମଞ୍ଚକୁ ଛାଡ଼ି କିଛି ଦୂରରେ ବାଉଁଶ ବାଡ଼ ଦିଆ ହୋଇଛି । ବାଉଁଶ ଘେରା ବାହାରେ ଲୋକେ ବସିବେ କି ଛିଡ଼ା ହେବେ, ନିକଟରେ ଲୋକଗହଳି ହେଲେ, କାଳେ କିଏ ମନ୍ତ୍ରୀଙ୍କ ଉପରକୁ ଚେଙ୍ଗାଟିଏ ଫୋପାଡ଼ି ଦେବ ବା ରିଭଲଭର୍ ଚଳାଇ ଗୁଳି କରିଦେବ ସେଥିପାଇଁ ଏ ନିରାପତ୍ତା ବ୍ୟବସ୍ଥା । ମନ୍ତ୍ରୀଙ୍କ ଜୀବନ ଯେ ସାଧାରଣ ଜୀବନଠାରୁ ସହସ୍ରଗୁଣେ ମୂଲ୍ୟବାନ୍ ଲୋକେ ବୁଝନ୍ତୁ । ନିରାପତ୍ତା ବ୍ୟବସ୍ଥାରେ ଏହା ମଧ୍ୟ ପ୍ରଚ୍ଛନ୍ନ ଚିନ୍ତାଧାରା । ଠିକ୍ ବାଉଁଶ ବାଡ଼କୁ ଲାଗି ପଞ୍ଚମ ଧାଡ଼ିରେ ବସିଗଲେ ଶରତ । ଉଦ୍ଦେଶ୍ୟ ମଞ୍ଚ ଉପରୁ ହୁଏତ ପ୍ରଫୁଲ୍ଲ ବା ତାଙ୍କ ସାଙ୍ଗରେ ବାଳକୃଷ୍ଣ ଆସିଥିଲେ ତାଙ୍କ ଦୃଷ୍ଟି ପଡ଼ିବ । ସଭା ସମୟ ହୋଇଗଲା । ମନ୍ତ୍ରୀ ଆସିଗଲେ । ତାଙ୍କ ଆଗେ ଆଗେ ଚାଲିଥାନ୍ତି ବାଳକୃଷ୍ଣ । ସବୁଠି ସବୁ ସଭାକୁ ବାଳକୃଷ୍ଣଙ୍କୁ ସାଙ୍ଗରେ ନେଇ ଯାଆନ୍ତି ପ୍ରଫୁଲ୍ଲ ଏବଂ ଶେଷରେ ତାଙ୍କୁ କିଛି କହିବା ପାଇଁ ମଧ୍ୟ ଅନୁରୋଧ କରନ୍ତି । ଏହି ସୂତ୍ରରେ ସେ ଗାନ୍ଧି ଯୁଗର ପ୍ରଭାବକୁ ନିଜ ବ୍ୟବହାରରେ ଲଗାଇ ପାରୁଛନ୍ତି ବୋଲି ନିଜ ବନ୍ଧୁମାନଙ୍କୁ ସେ କହନ୍ତି । ମନ୍ତ୍ରୀ ଆସି ବସିଗଲା ପରେ ମଞ୍ଚ ଉପରେ ଥିବା ମାଇକ୍ ଆଗରେ ଛିଡ଼ା ହୋଇ ଏକ ଯୁବକ ଚିତ୍କାର କରୁଛି ଉଚ୍ଚସ୍ୱରରେ । "ଭାଇମାନେ ବସିଯାଆନ୍ତୁ, ମନ୍ତ୍ରୀ ଆସିଗଲେଣି, ତାଙ୍କ ସାଙ୍ଗରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବାଳକୃଷ୍ଣ

ଦ୍ୱାବୁ ମଧ୍ୟ ଆସିଗଲେଣି । ଧୀର ସ୍ଥିର ଭବରେ ଶୁଣନ୍ତୁ । ବସିଯାଆନ୍ତୁ ।
ବସିଯାଆନ୍ତୁ ।" କିଏ ଶୁଣୁଛି ଏ କଥାକୁ ଲୋକେ କେତେକ ବସିଥାନ୍ତି, କେତେକ ଛିଡ଼ା ହୋଇଥା'ନ୍ତି । ଅଧିକାଂଶ ମଞ୍ଚ ଆଡ଼କୁ ଅନାଇ ଦେଇ ଚାଲି ଯାଉଥାନ୍ତି । କିନ୍ତୁ ତାହାଙ୍କୁ ଏକ ବିରାଟ ସଭ ପରି ଜଣାଯାଉଥାଏ । ଶରତ ବାବୁ ପାଖରେ ବସି ମନ୍ତ୍ରୀଙ୍କ ମଞ୍ଚକୁ ଗୁହିଁଲେ।ଲକ୍ଷଣ ଦେଖିଲେ ଯେଉଁ ଯୁବକ "ବସିଯାଆନ୍ତୁ" "ବସିଯାଆନ୍ତୁ" ବୋଲି ଚିତ୍କାର କରୁଛି, ସେ ତାଙ୍କ ପୁଅ ଅଜୟ । ଶରତ ଶୁଣିଥିଲେ ଡ଼ିଷ୍ଟ୍ରିକ୍ଟ ପବ୍ଲିକ୍ ରିଲେସନ୍ ଅଫିସର୍ ପଦରେ ଅଜୟ ନିଯୁକ୍ତି ପାଇଛନ୍ତି । ଦଳର ଆଭିମୁଖ୍ୟ, ସମାଜ-ବାଦରେ ପୂର୍ଣ୍ଣ ବିଶ୍ୱାସ । ଏ ସବୁ ଯୋଗ୍ୟତା ଏକଦା ନିର୍ବାଚନରେ ଦଳ ଦ୍ୱାରା ମନୋନୀତ ପ୍ରାର୍ଥୀଙ୍କର ଯେ ଅଛି, ଏହା ଦର୍ଶାଇବାକୁ ବେଶୀ ସମୟ-ବା ଚେଷ୍ଟା ଆବଶ୍ୟକ ହେଲ ନାହିଁ । ପଦଟିରେ ଅଛି ମର୍ଯ୍ୟାଦା ଏବଂ ଉଚ୍ଚ ହାରରେ ବେତନ ମଧ୍ୟ । ଏହି ପଦରୁ ଜଣେ ଡ଼େପୁଟୀ ମାଜିଷ୍ଟ୍ରେଟ୍ । ପରେ ଆଡ଼ିସ୍‌ନାଲ ଡ଼ିଷ୍ଟ୍ରିକ୍ଟ୍ ମାଜିଷ୍ଟ୍ରେଟ୍ ପୁଣି ଆଇ. ଏ. ଏସ୍. ଅଫିସର୍ ହୋଇ ଯିବାର ମଧ୍ୟ ସମ୍ଭାବନା ଅଛି । ଅଜୟର ଉକ୍ତ ନିଯୁକ୍ତିରେ ଶରତ ଆଶ୍ୱସ୍ତ ହୋଇଥିଲେ । ନିଜେ ସାଂସାରିକ ଝଞ୍ଜାଳ ଓ ଦାୟିତ୍ୱରୁ ମୁକ୍ତ ହୋଇଯାଇଛନ୍ତି ଭବି ସନ୍ତୋଷରେ ଦୀର୍ଘ ନିଶ୍ୱାସ ମଧ୍ୟ ପକାଇଥିଲେ । ମାତ୍ର ସେ ଜାଣି ନ ଥିଲେ ଅଜୟ ଅବସ୍ଥାପିତ ହୋଇଛନ୍ତି ପୁରୀରେ । ପୁଅକୁ ଗୁହିଁଦେଲ ମାତ୍ରେ ମୁହଁରେ ଟିକିଏ ହସ ବାହାରିପଡ଼ିଲ । ପରେ ସେ ଗମ୍ଭୀର ହୋଇଗଲେ । ଗ୍ଭଲିଲ ପ୍ରଫୁଲ୍ଲଙ୍କ ଅନର୍ଗଳ ବକ୍ତୃତା ପ୍ରାୟ ଘଣ୍ଟାଏ କାଳ । ସ୍ୱାଧୀନତା ପରେ ଦେଖିଲେ ଦେଶରେ କୌଣସି ଉନ୍ନତିମୂଳକ କାର୍ଯ୍ୟ ହୋଇନାହିଁ । ଲୋକେ ଦରିଦ୍ରରୁ ଦରିଦ୍ରତର ହୋଇଯାଇଛନ୍ତି । ସୂତାକାଟି ଦେଶର ଦାରିଦ୍ର୍ୟ ଲୋପ କରିବା କାର୍ଯ୍ୟକ୍ରମକୁ ସେ ପରିହାସ ଭଙ୍ଗିରେ ଏପରି କହିଲେ ଶୁଣିଲ ଲୋକ ହସି ହସି ତାଳିମାରିଲେ । ଉତ୍ସାହିତ ହୋଇ ପ୍ରଫୁଲ୍ଲ ପୂର୍ବ ଯୁଗର ତୀବ୍ର ସମାଲୋଚନା କଲେ । ନୂତନ ଯୁଗର ସମାଜବାଦ ଦେଶକୁ ଆଣିଦେବ ଶକ୍ତି ଓ ସମୃଦ୍ଧି । ସହଯୋଗ କରନ୍ତୁ ଭଇ ଓ ଭଉଣୀମାନେ" ଏହି ହେଲ ଭଷଣର ଶେଷ ବାକ୍ୟ । ବାଳକୃଷ୍ଣଙ୍କୁ କିଛି କହିବା ପାଇଁ ଅନୁରୋଧ କରି ପ୍ରଫୁଲ୍ଲ କହିଲେ, "ମୋ ସଙ୍ଗରେ ଆସିଛନ୍ତି ପୂର୍ବ ଯୁଗର ଏକ ବିଶିଷ୍ଟ ଜନନାୟକ ଶ୍ରୀ ବାଳକୃଷ୍ଣ ରଥ ।

ଯାହାଙ୍କର ତ୍ୟାଗ ଏ ଦେଶ ପାଇଁ କାରାବରଣଠାରୁ ଆରମ୍ଭ କରି ଅଶେଷ ନିର୍ଯ୍ୟାତନା ଭୋଗ ସେ ଯୁଗରେ ଏକ ପୁରାଣର କାହାଣୀପରି ଥିଲା । ସେ ବୁଝୁଛନ୍ତି ପରିବର୍ତ୍ତିତ ପରିସ୍ଥିତିର ଆହ୍ୱାନ । ତାଙ୍କର ପାଣ୍ଡିତ୍ୟ, ବିଜ୍ଞତାରୁ ସେ ଯେଉଁ ମତ ବର୍ତ୍ତମାନ ପୋଷଣ କରୁଛନ୍ତି ଧୀରସ୍ଥିର ଭାବରେ ଆପଣମାନେ ଶୁଣନ୍ତୁ ।” ବାଳକୃଷ୍ଣ ଧୀରେ ଧୀରେ ଉଠି ଧୀର ପଦକ୍ଷେପରେ ମାଇକ୍ ପାଖକୁ ଆସିଲେ । ଗଳା ସଫା କରି ଆରମ୍ଭ କଲେ, “ଭାଇ ଓ ଭଉଣୀମାନେ, ମନ୍ତ୍ରୀ ପ୍ରଫୁଲ୍ଲ ଯାହା ମୋ ସମ୍ବନ୍ଧରେ କହିଲେ, ତାହା ଅତିରଞ୍ଜନ । ସେ ମୋର ଭାଇ ବୋଲି ଏପରି ଉଚ୍ଚ ପ୍ରଶଂସା କରିଗଲେ । ବାସ୍ତବିକ୍ ମୁଁ ପୂର୍ବଯୁଗର ଅସଂଖ୍ୟ କର୍ମୀମାନଙ୍କ ଭିତରୁ ନଗଣ୍ୟ ଜଣେ । ଆମେ ମନେ କରିଥିଲୁ ପୂର୍ବ ଯୁଗର ନୀତି ଅର୍ଥାତ୍ ଗାନ୍ଧିନୀତି ଦ୍ୱାରା ଦେଶର ସର୍ବାଙ୍ଗୀନ ଉନ୍ନତି ସାଧନ କରିବୁ । କିନ୍ତୁ ସ୍ୱାଧୀନତା ପରେ ସେ ନୀତି ପରିତ୍ୟକ୍ତ ହେଲା । ଆମ୍ଭେମାନେ ବିରକ୍ତ ହେଲୁ । ମନେ କଲୁ ଦେଶ ରସାତଳକୁ ଗଲା ବା ଯିବ । ଯେ ଦେଶ ତା’ର ନେତା ଓ ଜନ୍ମଦାତାକୁ ଭୁଲିଯାଏ ସେ ଦେଶର ଭାଗ୍ୟ ପେଟିକାବଦ୍ଧ । ଆମେ କେତେଜଣ ବାହାରିଲୁ ସ୍ରୋତର ଗତି ପରିବର୍ତ୍ତନ ପାଇଁ । ଏ ଚେଷ୍ଟା ଆମେ ଯେଉଁମାନେ କରିଥିଲୁ, ସେମାନଙ୍କ ନାମ ଆପଣମାନେ ଜାଣିଥିବେ । ଶରତବାବୁ, ଜଗଦୀଶବାବୁ ଏମାନଙ୍କ ମଧ୍ୟରେ ପ୍ରଧାନ । ଏମାନଙ୍କ ତ୍ୟାଗ ପ୍ରତ୍ୟେକ ଯୁବକର ଆଦର୍ଶ ହେବା ଉଚିତ୍ । କିନ୍ତୁ ଦୁଃଖର ସହିତ ମୋତେ କହିବାକୁ ହେଉଛି, ଯୁଗ ସହିତ ପାଦ ମିଳେଇ ଚାଲିପାରିଲେ ନାହିଁ ଏମାନେ । ଏମାନେ ସାଂସାରିକ ଜୀବନରୁ ଅପସରି ଗଲେ । କିନ୍ତୁ ମୁଁ ଭାବିଲି, ଅପସରି ଯିବା ହେଉଛି ନିତାନ୍ତ ଭୀରୁତା । ଗାନ୍ଧିଯୁଗର ଲୋକେ ଭୀରୁ ହେବା ଅନୁଚିତ । ସାହସ ସହକାରେ ମୁଁ ଏ ନୂତନ ଯୁଗ ସହିତ ପାଦ ମିଳେଇ ଚାଲିଛି । .........” ଏତିକି ଖୁବ୍ ଉଚ୍ଚ ସ୍ୱରରେ କହୁଥିବା ବେଳେ ତାଙ୍କ ଦୃଷ୍ଟି ପଡ଼ିଲା ବାଡ଼ ପାଖରେ ବସିଥିବା ଶରତଙ୍କ ଉପରେ । ଚାହିଁ ଦେଇ କିଛି କ୍ଷଣ ନୀରବ ହୋଇଗଲେ । ତା’ପରେ କହିଲା ନ କହିଲା ପରି ହୋଇ କହିଲେ, “ନୂତନ ଯୁଗର ସନ୍ଦେଶ ତ ଆପଣ ପାଇଲେ ଯୁବନେତା ପ୍ରଫୁଲ୍ଲଙ୍କ ଠାରୁ । ଏଠାର ଜିଲ୍ଲା ଲୋକ ସମ୍ପର୍କ ବିଭାଗର ମୁଖ୍ୟ ଶ୍ରୀମାନ୍ ଅଜୟ ଠାରୁ ମଧ୍ୟ ମଝିରେ ମଝିରେ ଆପଣ ଶୁଣୁଥିବେ ବା

ସେମାନଙ୍କୁ ପଗ୍ଭରେ । ଧ୍ୟାନଗତ ଆନନ୍ଦବେ ବାଧାଦେବା ନିହାତି [illegible] ।” [illegible] ଯାଉଥିବାର ନାହିଁ ।” କି ହସି ହସି କହିଲେ, କହିଦେଇ କ୍ଷିପ୍ର ଗତିରେ ନିଜ ଚୌକି ପାଖକୁ [illegible] କହିଛନ୍ତି, ସେଇଠି ଗ୍ଭହିଁ ରହିଲେ ଶରତ ଆଡ଼କୁ–ଚିନ୍ତାକୁଳ ଶୁଖିଲା ବାରନ୍ଦାରେ ସମୁଦ୍ର ସ୍ଵଭାବ ତ ମଧ୍ୟାହ୍ନର ସହକର୍ମୀ । ଆଜି ଅପରାହ୍ନରେ [illegible] ଅଥଚ ନିଜେ ଖ୍ୟାତିର ଆଲୋକରେ ଉଦ୍‌ଭାସିତ ହେବାକୁ [illegible] ଶରତଙ୍କ ପ୍ରତି କାରୁଣ୍ୟ ଓ ନିଜ ଭିତରେ ଆତ୍ମଗ୍ଳାନି ଏ ଦୁଇ ଭାବ ପରସ୍ପର ମିଶିଯାଇ ବାଳକୃଷ୍ଣଙ୍କୁ କିଛିକ୍ଷଣ ପାଇଁ ସ୍ତବ୍ଧ କରିଦେଲେ । ତାଙ୍କ ବକ୍ତୃତା ପରେ ସଭାରେ କଣ ହେଲା ସେ ଆଉ ଶୁଣିନାହାନ୍ତି । ଅଜୟ ଉଠି ମନ୍ତ୍ରୀଙ୍କୁ ମହାଭାରତ ଯୁଦ୍ଧର ଅର୍ଜୁନ ଆଖ୍ୟା ଦେଇ ତାଙ୍କୁ ଧନ୍ୟବାଦ ଅର୍ପଣ କଲେ । ବାଳକୃଷ୍ଣଙ୍କୁ ଭୀଷ୍ମଙ୍କ ସହିତ ତୁଳନା କରି ତାଙ୍କର ଆଶୀର୍ବାଦ ଭିକ୍ଷା କଲେ । “ସଭା ଭଙ୍ଗ ହେଲା” କହି ପ୍ରଫୁଲ୍ଲ ଚୌକିରୁ ଉଠିଲେ । ବାଳକୃଷ୍ଣ ସ୍ତବ୍ଧ ହୋଇ ବସି ରହିଥାନ୍ତି । ଅଜୟ ଆସି ଯେତେବେଳେ କହିଲେ, “ଉଠନ୍ତୁ ସଭା ଶେଷ ହେଲାଣି” ସେତେବେଳେ ସେ ନିଦରୁ ଉଠିପଡ଼ିବା ପରି “ହଁ ଗ୍ଭଲ ଯିବା।” ବୋଲି କହିଲେ । ଧୀରେ ଧୀରେ ସମସ୍ତଙ୍କ ପଛେ ପଛେ ଯାଉଥାନ୍ତି ଗହଳି ଅତିକ୍ରମ କରି । ବାଟରେ ଅଟକିଯାଇ ଅଜୟଙ୍କୁ କହିଲେ, “ଶରତ ବସିଥିଲେ ଏଇ ବାଡ଼ ପାଖରେ । ଦେଖି ଡାକିଦେବୁ ତ ।” ଶରତଙ୍କ ନାମ ଶୁଣି ଅଜୟ ମଧ୍ୟ ଚମକିପଡ଼ିଲା ପରି ହେଲେ । ମନ୍ତ୍ରୀଙ୍କୁ ଗାଡ଼ିରେ ବସାଇ ଦେଇ ଆସି ଏପାଖ ସେପାଖ ହୋଇ ଶରତଙ୍କୁ ଖୋଜିଲେ । ପାଇଲେ ତାଙ୍କୁ ଗହଳି ପଛେ ପଛେ ଯାଉଥିବାବେଳେ । ନଇଁପଡ଼ି ପାଦ ଛୁଇଁ ପ୍ରଣାମ କଲେ । “କିରେ ଭଲ ଅଛୁ” ବୋଲି କହିଦେଇ ଶରତ ଗ୍ଭଲିଲେ । ଅଜୟ ପଛେ ପଛେ ଯାଇ କହିଲେ, “ଆପଣଙ୍କୁ ବାଳକୃଷ୍ଣ ବାବୁ ଡ଼ାକିଛନ୍ତି କଥା ହେବା ପାଇଁ । ଶରତ ବୁଲିପଡ଼ି କହିଲେ, “ସେ ଦେଖିଲେ କି ମୋତେ ? ଆଚ୍ଛା ହଉ ଯିବି । କେଉଁଠି ରହୁଛି ସେ ?” “ସର୍କିଟ୍ ହାଉସ୍”ରେ ଏତକ ଶୁଣି ସେ ଆଉ କିଛି ନ କହି ଗ୍ଭଲିଗଲେ । ମଞ୍ଚ ଉପରେ ପଡ଼ିଥିବା ସତରଞ୍ଜି ଚୌକି, ଟେବୁଲ, ଉପରେ ଟଙ୍ଗା ହୋଇଥିବା ଗ୍ଭନ୍ଦୁଆ, ଏ ସବୁ ଶୀଘ୍ର ସଂଗ୍ରହ କରି ଦେବା ପାଇଁ ଅଜୟ ତର ତର ହୋଇ ଗ୍ଭଲିଆସିଲେ । ନ ହେଲେ ‘ଯଥା ଲାଭ’ ଭାବରେ ଉଦ୍ଦୀପ୍ତ ହୋଇ ‘ସମାଜବାଦୀ’ ଶ୍ରୋତାଙ୍କ ମଧ୍ୟରୁ ଏଗୁଡ଼ିକ ମଧ୍ୟ ନେଇଯାଇ ପାରନ୍ତି ବୋଲି ଅଜୟ କହି କହି ଗ୍ଭଲି ଆସିଲେ ।

ଯାହାଙ୍କର ତ୍ୟାଗ ଏ ଦେଶ ପାଇଁ କାରାବରଣଠାରୁ ଆରମ୍ଭ କରି ଅ...ଶଙ୍କ
ନିର୍ଯ୍ୟାତନା ଭୋଗ ସେ ... ମୋ ରହୁଛନ୍ତି



ପରିବର୍ତ୍ତିତ ପରିସ୍ଥି...

ମତ ବର୍ତ୍ତମାନ ସେ...ଲେ ଶରତ କିନ୍ତୁ ସର୍କିଟ୍‌ହାଉସକୁ ଯାଇ ସରକାରୀ ବେଷ୍ଟନୀ ମଧ୍ୟରେ ପୂର୍ବ ବନ୍ଧୁଙ୍କ ସହ ଦେଖା ସାକ୍ଷାତକୁ ସେ ସ୍ନାରବର୍ତ୍ତି ଚିନ୍ତାରେ ଅବାଞ୍ଛନୀୟ ବୋଲି ମନେ କଲେ । ବିଶେଷତଃ ବାଳକୃଷ୍ଣ ଯେପରି ଭବରେ ଶାସନ ସହିତ ଜଡ଼ିତ ହୋଇଗଲେଣି, ସେଥିରେ ତାଙ୍କ ସହିତ ଆଉ କି ଆଲୋଚନା ହୋଇପାରେ ? ଯେ ଯାହା ବାଟରେ ଗଲେ—ଆଉ ପୂର୍ବକଥା ସବୁ ସ୍ମରଣ କରି ମନକୁ ଅସ୍ଥିର କରିବା ଉଚିତ୍ ନୁହେଁ । ଶରତ, ବାଳକୃଷ୍ଣଙ୍କୁ ଦେଖା କରିବାକୁ ଗଲେ ନାହିଁ । ବାଳକୃଷ୍ଣ କିନ୍ତୁ ପ୍ରତି ମୂହୂର୍ତ୍ତରେ ଅପେକ୍ଷା କରୁଥାନ୍ତି କାହିଁକି ଶରତ ଆସିଲେ ନାହିଁ । ଏଥିପାଇଁ ମନ ଚଞ୍ଚଳ । ସନ୍ଧ୍ୟା ବେଳକୁ ଅଜୟ ଯେତେବେଳେ ସର୍କିଟ୍ ହାଉସ୍‌କୁ ଗଲେ ସେତେବେଳେ ବାଳକୃଷ୍ଣ ତାଙ୍କୁ ଏକୁଟିଆ ଡ଼ାକିନେଇ ଶରତ କଥା ପଗ୍ଭରିଲେ । "ସେ ବୋଧହୁଏ ଭୁଲିଯାଇଛି । ତୁ ଯା ଏଇକ୍ଷଣି ନେଇଆସିବୁ । ଏଇଠି ସେ ଖାଇବ । ରାତିରେ ସମୁଦ୍ର ହାଉଆରେ ବସି କଥାବାର୍ତ୍ତା କରିବା ସୁବିଧା ହେବ ।" ଅଜୟ ଛୁଟିଲେ ଝାଞ୍ଜପିଟା ମଠକୁ । ସେତେବେଳେ ଉଦ୍ଦଣ୍ଡ କୀର୍ତ୍ତନ ଲାଗିଛି । କୀର୍ତ୍ତନର ହୁଙ୍କାର କମ୍ପନ ନର୍ତ୍ତନ ଦେଖି ଅଜୟ ଅବାକ୍ । ଶରତ ଧୀର ଗମ୍ଭୀର ଭାବେ ଆଖିବୁଜି କୀର୍ତ୍ତନକୁ କେବଳ ଉପଭୋଗ କରୁଥାନ୍ତି । ଗାନ ବା ବାଦ୍ୟରେ ସେ ଅଂଶ ଗ୍ରହଣ କରୁ ନ ଥାନ୍ତି । କାରଣ ସେ ଗାଇ ବଜେଇ ପାରନ୍ତି ନାହିଁ । ଏହା ଅଜୟ ଜାଣନ୍ତି । ତେଣୁ ଶରତଙ୍କ ନୀରବ ଶ୍ରୋତା ଭୂମିକା ତାଙ୍କ ମନରେ ବିସ୍ମୟ ସୃଷ୍ଟି କଲା ନାହିଁ । ଧୀରେ ଧୀରେ କୀର୍ତ୍ତନ ପାଖକୁ ଯାଇ ଶରତଙ୍କ କାନ ପାଖରେ 'ବାଳକୃଷ୍ଣବାବୁ' ଏତିକି କହିଛନ୍ତି ଶରତ ଚମକି ଉଠି ଗୁହିଁ ଦେଲେ, ଅଜୟ । ବଡ଼ ବିରକ୍ତ ହେଲେ । ଗଭୀର ଧ୍ୟାନରେ ସେ ବାଧା ଦେଲା । ପୁଣି ମନକୁ ସ୍ଥିର କରିବାକୁ ସମୟ ଲାଗିବ । କେବଳ ମୁଖ ବିକାରରେ ବିରକ୍ତି ପ୍ରକାଶ କଲେ । ଅନ୍ୟଥା କୀର୍ତ୍ତନରେ ବାଧା ସୃଷ୍ଟି ହୋଇଥାନ୍ତା । ମନ ଆଉ ସ୍ଥିର ହେଉନାହିଁ । କିଛିକ୍ଷଣ ପରେ ସେ ଧୀରେ ଧୀରେ ଉଠି ଆସିଲେ, ଅଜୟକୁ ତୀବ୍ର ସ୍ୱରରେ କହିଲେ—"ତୁ ସିନା ଗ୍ଭକିରୀ କରିଛୁ ତୋତେ ବାଳକୃଷ୍ଣ ବଡ଼ । ଏ ପରିବେଶରେ କି ବାଳକୃଷ୍ଣ କି ମନ୍ତ୍ରୀ, କିଏ

ସେମାନଙ୍କୁ ପସନ୍ଦରେ । ଧ୍ୟାନଗତ ଆନନ୍ଦରେ ବାଧାଦେବା ନିହାତି ଅନ୍ୟାୟ ।" ଅଜୟ ଏ ବିରକ୍ତିର ଗୁରୁତ୍ୱ ନ ବୁଝି ହସି ହସି କହିଲେ, "କାଳକୃଷ୍ଣ ବାବୁ ଏଇକ୍ଷଣି ଯିବାପାଇଁ କହିଛନ୍ତି, ସେଇଠି ରହିବେ, ଖାଇପିଇ ଓ ରାତିରେ ସର୍କିଟ୍ ହାଉସ ବାରନ୍ଦାରେ ସମୁଦ୍ର ପବନରେ ସେ ଦୀର୍ଘ ସମୟ କଥାବାର୍ତ୍ତା କରିବେ ।" ଶରତଙ୍କ ବିରକ୍ତି ଏ ଅନୁରୋଧରେ ଆହୁରି ବେଶୀ ବଢ଼ିଗଲା, ସେ ମୁହଁ ଛାଟି ଦେଇ କହିଲେ "ସେ ମନ୍ତ୍ରୀ ଓଇ ବୋଲି ତା'ର ସମୟର ମୂଲ୍ୟ ଅଛି, ମୁ ଜଣେ ସାଧାରଣ ଲୋକ, ମୋର ଆଉ ସମୟର ମୂଲ୍ୟ ନାହିଁ । ସେ ଶାସନ ଚଳାଇବାରେ ବ୍ୟସ୍ତ । ଶାସନ ବାହାରେ ଯେ ଆଉରି ମୂଲ୍ୟବାନ୍ ବସ୍ତୁ ଅଛି ଏ କଥା ସେ ନ ବୁଝୁ ପଛକେ ତୁ କିପରି ବୁଝିଲୁ ନାହିଁ ? ତୋ ଚାକିରି ତୁ ସମ୍ଭାଳ, ତୁ ଏ ସବୁଥିରେ ପଡ଼ନା ।" କହିଦେଇ କିଛିକ୍ଷଣ ନୀରବ ରହି ତା'ପରେ କହିଲେ, "ଆଚ୍ଛା ଦେଖାହେବ—ସମୁଦ୍ର ହାଓଆରେ ତ କଥାହେବ—ସ୍ୱର୍ଗଦ୍ୱାରକୁ ସମୁଦ୍ର ଆହୁରି ନିକଟ ହେବ । ସେଠି ଶେଷାଶ୍ରୟକୁ ଆସନ୍ତାକାଲି ଦଶଟା ସମୟରେ ଆସିବ – ମୁଁ ଯିବି । ସେଠି ଆମର ଆଉ ଜଣେ ପୂର୍ବ ବନ୍ଧୁ ଅଛନ୍ତି । ସମସ୍ତେ ବସି କଥାବାର୍ତ୍ତା ହେବା । ଏଥିରେ ସେ ରାଜି ନ ହେଲେ କହିଦେବୁ ମୁଁ ସର୍କିଟ୍ ହାଉସ୍‌କୁ ଯିବି ନାହିଁ ।" ଏତିକି କହି ଦେଇ ସେ ତରତର ହୋଇ ଚାଲିଗଲେ କୀର୍ତ୍ତନ ମଣ୍ଡଳି ଭିତରକୁ । ଅଜୟ ମୁହଁ ଶୁଖେଇ ଧୀରେ ଧୀରେ ମଠ ବାହାରକୁ ଆସି ସାଇକେଲ୍‌ରେ ସର୍କିଟ୍ ହାଉସ୍‌କୁ ଗଲେ । ଶାସନର ଜଣେ ଅତି ପ୍ରତିପତ୍ତିଶାଳୀ ବ୍ୟକ୍ତିଙ୍କ ଅନୁରୋଧକୁ ଏପରି ଭାବରେ ପ୍ରତ୍ୟାଖ୍ୟାନ କରି ପୁଣି ତାଙ୍କୁ ଏକ ଅଜ୍ଞାତ ଅଖ୍ୟାତ ସ୍ଥାନକୁ ଯିବା ପାଇଁ କହିବା ଯେ କେତେ ଅବିମୃଶ୍ୟକାରିତା, ଏହା ଅଜୟ କଳ୍ପନା କରି ପାରୁ ନ ଥାଏ । କଅଣ ଯାଇ ସେ କହିବ—ବାପାଙ୍କୁ ଘଣ୍ଟ ଘୋଡ଼େଇ କଥାଟାକୁ ସଜାଡ଼ି କହିବାକୁ ହେବ—ଏହା ଭାବି ଅଜୟ ନମ୍ର ଭାବରେ କହିଲା, "ମୁଁ ଗଲାବେଳକୁ ସେ କୀର୍ତ୍ତନରେ ବସିଥିଲେ । ବହୁ ଲୋକର ସମାଗମ । ତାଙ୍କୁ ତ ବେଳ ନ ଥିଲା । ତଥାପି ଚୁପ୍‌କରି ତାଙ୍କୁ ଏଠିକି ଆସିବା ପାଇଁ କହିଲି । କୀର୍ତ୍ତନ ଚାଲିଥିବାରୁ ସେ ଆସି ପାରିବେ ନାହିଁ କହିଲେ । କାଲି ସେ ଯିବେ ସ୍ୱର୍ଗଦ୍ୱାରରେ ଶେଷାଶ୍ରୟ ବୋଲି ଏକ ମଠକୁ, ସେଠି ତାଙ୍କର

ଓ ଆପଣଙ୍କର କିଏ ଜଣେ ପୂର୍ବ ବନ୍ଧୁ ଅଛନ୍ତି । ଆପଣ ସେଠାକୁ ଗଲେ ହୁଏତ ଦେଖା ହୋଇ ଯାଇ ପାରନ୍ତା । ବାଳକୃଷ୍ଣ ଭାବିଲେ କିଛି ସମୟ, ମନେ ପଡ଼ିଗଲା ଜଗଦୀଶ୍ । ମନେ ପଡ଼ିଗଲା ସେ ଓ ଶରତ ଶେଷାଶ୍ରୟକୁ ଯିବା କଥା । ଚଳଚିତ୍ର ପରି ପୂର୍ବ ଜୀବନର ଦୃଶ୍ୟ ପରେ ଦୃଶ୍ୟ ସ୍ମୃତି ପଟରେ ଅଭିନୀତ ହୋଇଗଲା । ତାଙ୍କୁ ମୁହଁ କରି ଅସ୍ପଷ୍ଟ ସ୍ୱରରେ କହିଲେ– "ଆଚ୍ଛା ହେଉ, ମୁଁ ଯିବି–କେତେଟା ବେଳେ, ସମୟ କହିଛି କି ?" ଅଜୟ–"ହିଁ, ଦଶଟା ବେଳେ ।" ବାଳକୃଷ୍ଣଙ୍କ ମନ ଟିକିଏ ହାଲୁକା ହୋଇ ଆସିଲା । ସେ ହସି ଦେଇ କହିଲେ, "ସେ ତ ବର୍ତ୍ତମାନ ହରିନାମରେ ବ୍ୟସ୍ତ । ଭୁଲି ଯାଇପାରେ । ତୁ ଯାଇ ୧୦ଟା ବେଳକୁ ତାକୁ ଟିକିଏ ସେଠିକି ନେଇ ଯିବୁ ।"

–୨୪–

ଶେଷାଶ୍ରୟରେ ବର୍ତ୍ତମାନ ଜଗଦୀଶ୍ ଏକାକୀ ନୁହନ୍ତି । ଗତ କେତେ ମାସ ହେଲା କଲିକତାରୁ ଦୁଇଜଣ ଯୁବକ ଆସି ସେଠାରେ ଅଛନ୍ତି । ସେମାନେ ମଧ୍ୟ ଯୋଗ ଶିକ୍ଷାର୍ଥୀ ହିସାବରେ ଯୋଗଦାଶ୍ରମରେ ଗୃହୀତ ହୋଇଛନ୍ତି । ସେମାନଙ୍କୁ ପଠାଇ ଦେଇଛନ୍ତି କଲିକତାର ସେ ସନ୍ୟାସୀ । ଯାହାଙ୍କଠାକୁ ବିବ୍ରତ ରାଜନୈତିକ ଲୋକେ ପରାମର୍ଶ ପାଇଁ ଯାଇଥାଆନ୍ତି । ଏ ଦୁଇଜଣ ଆସିଗଲା ପରେ ଜଗଦୀଶ୍ ଗାନ୍ଧିଯୁଗର ଆଶ୍ରମ ନିୟମ ଅନୁସାରେ ଶେଷାଶ୍ରୟକୁ ପରିଚାଳନା କରୁଛନ୍ତି । ଦୈନନ୍ଦିନ କାର୍ଯ୍ୟ ନିର୍ଘଣ୍ଟ ପ୍ରସ୍ତୁତ ହୋଇ ଠିକ ସମୟରେ ସବୁ କାମ ସମ୍ପାଦିତ ହୁଏ । ସୌଭାଗ୍ୟବଶତଃ ସକାଳ ଦଶଟା ହୋଇଛି ଆଲୋଚନା ପାଇଁ ନିର୍ଦ୍ଦିଷ୍ଟ ସମୟ । ତେଣୁ ଶରତ ଯେତେବେଳେ ଯାଇ ପହଞ୍ଚିଲେ, ତାଙ୍କ ସହିତ ବାକ୍ୟାଳାପ କରିବା ପାଇଁ ଜଗଦୀଶ୍‌ଙ୍କ କିଛି ଅସୁବିଧା ନ ଥିଲା । ଶରତଙ୍କୁ ଦେଖି ଜଗଦୀଶ୍ ଭାବବିହ୍ୱଳ ହୋଇ କୁଣ୍ଢାଇ ପକାଇଲେ । ଜଗଦୀଶ୍‌ଙ୍କ ଶୀର ଏବଂ ମୁଖରେ କେଶ ବଢ଼ିଯାଇଛି, ଦେଖାଯାଉଛନ୍ତି ଠିକ୍ ଜଣେ ସନ୍ୟାସୀ ପରି । ପରିହାସ କରି ଶରତ କହିଲେ, "କ'ଣ, ତୁତ ପରମହଂସ ପାଲଟି ଗଲୁଣି ।" "ବସ୍ କଥାବାର୍ତ୍ତା ହେବା ।" କହି ଶରତଙ୍କୁ ଆସନରେ ବସାଇଲେ । କଲିକତାରୁ

ଆସିଥିବା ଯୁବକଦ୍ୱୟଙ୍କୁ ତାଙ୍କର ପରିଚୟ ଦେଇ କହିଲେ, "ଏ ଜଣେ ପୂର୍ବ ଯୁଗର ସିଦ୍ଧ ସ୍ୱାଧୀନତା ସଂଗ୍ରାମୀ । ବର୍ତ୍ତମାନ କଅଣ କରୁଛନ୍ତି ଜଣା ନାହିଁ । ଯୁବକ ଦ୍ୱୟଙ୍କ ପରିଚୟ ଦେଇ କହିଲେ. "ଏମାନେ କଲିକତାର ବିପ୍ଳବୀ ଜୀବନକୁ ହାତ ମୁଠାରେ ନେଇ ଚଳିବା ଯୁବକ । ବିପ୍ଳବ ଅଭିମୁଖୀ ମନ ବର୍ତ୍ତମାନ ଆଧ୍ୟାତ୍ମ ଆଡ଼କୁ ଧାଇଁଛି । ପରସ୍ପର ପରିଚୟ ପ୍ରଦାନ ପରେ ଜଗଦୀଶ ପଚାରିଲେ,' "ଆଚ୍ଛା, ଏବେ ତୋର ବର୍ତ୍ତମାନର ପରିଚୟ ଦେ । କଅଣ କରୁଛୁ ? ବହୁକାଳ ପରେ ଦେଖା । ଶରତ କଅଣ କହିବେ କିଛି ହଠାତ୍ ଭାବି ପାରିଲେ ନାହିଁ । ସେ ମୁଣ୍ଡ କୁଣ୍ଡାଇ ଧୀର ସ୍ୱରରେ କହିଲେ, "ବହୁକାଳ ପରେ କାହିଁକି କହୁଛୁ । ଏହି ତ ମାତ୍ର ଦୁଇବର୍ଷ ପୂର୍ବେ—ଆମର ସାକ୍ଷାତ୍ ଆଲୋଚନା ସବୁ ଏହି ପୁରୀରେ ହୋଇଥିଲା । ଅନନ୍ତ ଜୀବନରେ କଅଣ ଦୁଇବର୍ଷ ବହୁକାଳ ? ଜଗଦୀଶ୍—"ଅନ୍ତବନ୍ତ ଏ ଜୀବନରେ ଦୁଇବର୍ଷ ଅବଶ୍ୟ ବହୁକାଳ—ବିଶେଷତଃ ପରିବର୍ତ୍ତନର ଗତି ଏପରି କ୍ଷୀପ୍ର ଯେ ସମୟର ଦୀର୍ଘତ୍ୱ ସେଥିରେ ବଢ଼ି ବଢ଼ି ଯାଉଛି । ଯାʼ ହେଉ କଅଣ କରୁଛୁ ।" ଶରତ ନିଃସଙ୍କୋଚରେ କହିଲେ, "ତୁ ତ ଆଧ୍ୟାତ୍ମ ସାଧନା ଗୋଟିଏ ମାର୍ଗରେ ଯାଉଛୁ । ମୁଁ ଆଉ ଏକ ମାର୍ଗରେ ଯାଉଛି । ସେ ହେଉଛି ନାମ କୀର୍ତ୍ତନ । ବାପା ତାଙ୍କର ଅବସରପ୍ରାପ୍ତ ଜୀବନକୁ ଏହି କୀର୍ତ୍ତନରେ ଆନନ୍ଦରେ କଟାଇ ଦେଇଛନ୍ତି । ମୁଁ ବି ତ ଜଣେ ଅବସରପ୍ରାପ୍ତ ରାଜନୈତିକ ବ୍ୟକ୍ତି । (ହସିଉଠିଲେ) ମୁଁ କାହିଁକି ସେହି ଉପାୟରେ ଆନନ୍ଦରେ ଅବଶିଷ୍ଟ ଜୀବନତକ ନ କଟାଇବି ?" ଜଗଦୀଶ୍—"ଭଲ ଭଲ, ଶୁଣି ଖୁସି ହେଲି, ଜୀବନର ଗୋଟିଏ ସମୟରେ କର୍ମରୁ ଅପସରି ଯିବା ଶ୍ରେୟସ୍କର । ନିଜ ପକ୍ଷରେ ଓ ସମାଜ ପକ୍ଷରେ ।" ଏ କଥାରେ ହସି ହସି ପ୍ରତିବାଦ କଲେ କଲିକତାର ଜଣେ ଯୁବକ । ଏହି ବିଷୟକୁ ନେଇ ଏକ ଦୀର୍ଘ ତର୍କ ବିତର୍କର ଅବତାରଣା କରିବା ବେଳକୁ ମଠ ଦ୍ୱାର ଆଗରେ ଆସି ଲାଗିଲା ଏକ ବିଶାଳକାୟ ମଟରଗାଡ଼ି । ଉତ୍ସୁକ ହୋଇ ଚାହିଁଲେ ସମସ୍ତେ । ଶରତ କିନ୍ତୁ ଧୀର ସ୍ୱରରେ ଜଗଦୀଶଙ୍କୁ କହିଲେ, "ବାଳକୃଷ୍ଣ ଆସୁଛି । ମୋତେ ଡାକିଥିଲା ସର୍କିଟ ହାଉସକୁ । ମୁଁ ଗଲି ନାହିଁ, ଏଠିକି ଆସିବା ପାଇଁ କହିଛି ।" ଜଗଦୀଶ ବିସ୍ମିତ ହୋଇ ପଚାରିଲେ—"ବାଳକୃଷ୍ଣ ସର୍କିଟ୍ ହାଉସ୍, କଅଣ ସବୁ ଏତେ ପରିବର୍ତ୍ତନ

ଘଟିଗଲଣି । ମୁଁ କିଛି ଖବର ରଖେ ନାହିଁ କି ଖବର କାଗଜ ପଢ଼େ ନାହିଁ ।
ଆଶ୍ରମକୁ ଖବର କାଗଜ ଆସିବା ମନା ।" କହୁଁ କହୁଁ ବାଳକୃଷ୍ଣ ହସି ହସି
ଆସିଗଲେ ମଠ ଭିତରକୁ । "ହେଲୋ ଜଗଦୀଶ୍, କେତେଦୂର ଗଲା ତୋ
ସାଧନା" କହିଦେଇ ବସିଗଲେ ଆସନରେ ଚାହିଁଦେଲେ ବଙ୍ଗୀୟ ଯୁବକ
ଦ୍ୱୟଙ୍କୁ । "କିଏ ଏମାନେ ?" ଜଗଦୀଶ ସେମାନଙ୍କ ପରିଚୟ ଦେଲେ ।
ବୁଲିପଡ଼ି ଶରତ ପିଠିରେ ଚାପୁଡ଼ା ମାରି କହିଲେ, "ତୋତେ ଡାକିଲି
ସର୍କିଟ୍ ହାଉସ୍‌କୁ, ଆସିଲୁ ନାହିଁ—ତୁ ତ ବର୍ତ୍ତମାନ ହରେକୃଷ୍ଣ ହରେରାମରେ
ମତୁଆଲା । ବାଳକୃଷ୍ଣଙ୍କ ପରିଧାନ ଆଚରଣ ଏପରି ଭିନ୍ନ ଯେ ଜଗଦୀଶ୍
ବା ଶରତ କଅଣ କେଉଁଠୁ କଥା ଆରମ୍ଭ କରିବେ କିଛି ଜାଣି ପାରିଲେ
ନାହିଁ । କିଛିକ୍ଷଣ ନୀରବ ହୋଇ ସମସ୍ତେ ବସି ରହିଲେ । ହସି ଦେଇ
ବାଳକୃଷ୍ଣ କହିଲେ, "କ'ଣ ଆମେ ସମସ୍ତେ ବସି ରହିଲେ ଧ୍ୟାନରେ ।
କଅଣ କୁହ ତୁମ ସବୁଙ୍କ ଖବର । ବହୁକାଳ ପରେ ଦେଖା । ଅବଶ୍ୟ
ଶରତ ସାଙ୍ଗରେ ଏହି ଅଳ୍ପକାଳ ପୂର୍ବରୁ ଦେଖା ହୋଇଥିଲା । କାଲି
ସଭାରେ ତାକୁ ଦୂରରୁ ଦେଖିଲି, ଡାକି ପଠାଇଲି । ସେ ଆସିଲା ନାହିଁ ।
କହି ପଠାଇଲା ଏଠିକି ଆସିବା ପାଇଁ, କଅଣ ଶରତ କହ ଏଠିକି ଆସିବା
ପାଇଁ କାହିଁକି କହିଲୁ ? ଶରତ୍—"ତୁ ଆଗେ କହ ସର୍କିଟ୍ ହାଉସ୍‌କୁ
କାହିଁକି ଡାକିଥିଲୁ ।" ବାଳକୃଷ୍ଣ—"ଡାକିଥିଲି ମୋ ନିଜ ସ୍ଥିତି ବୁଝାଇ
ଦେବାପାଇଁ । ମନ୍ତ୍ରୀ ସଭରେ ମୁଁ ଭାଷଣ ଦେଇଛି, ଶାସନକୁ ସୁହାଇବା ଭଳି
କଥା କହୁଛି ଏଥିରେ ମୋର ବନ୍ଧୁମାନେ ଯେପରି ମୋତେ ଭୁଲ୍ ନବୁଝନ୍ତି ।
ସେହିକଥା କହିବା ପାଇଁ ଭାବିଥିଲି ।" ଶରତ—"ମନ୍ତ୍ରୀସଭାରେ ଭାଷଣ,
ସରକାରକୁ ସୁହାଇବା ଭଳି କଥା ଯା ତ ତୁ କହୁଛୁ । ବନ୍ଧୁମାନେ ଓ
ଅନ୍ୟମାନେ ତ ସେୟା ବୁଝୁଛନ୍ତି । ଏଥିରେ ଭୁଲ୍ ବୁଝିବାର ଅବକାଶ
କାହିଁ ?" ବାଳକୃଷ୍ଣ—"ମୁଁ କ'ଣ କହିବାକୁ ଚାହୁଁଛି କି ମୋର ପୂର୍ବମତ
ମୁଁ ବଦଳାଇ ନାହିଁ । ଏ ପ୍ରଚଳିତ ବ୍ୟବସ୍ଥା ବିରୁଦ୍ଧରେ ମୋର
ମତ ପୂର୍ବେ ଯେପରି ଦୃଢ଼ ଥିଲା ବର୍ତ୍ତମାନ ସେପରି ଅଛି, କେବଳ କର୍ମ
କୌଶଳ ଦୃଷ୍ଟିରୁ ମୁଁ ଏକ ଛଦ୍ମବେଶରେ ଅଭିନୟ କରୁଛି ।
ମୁହାଁମୁହିଁ ପ୍ରଚଳିତ ସ୍ଥିତିକୁ ବଦଳାଇ ହେଉନାହିଁ । ସ୍ଥିତିକୁ
ବଦଳାଇବା ପାଇଁ ସ୍ଥିତି ସହିତ ମିଶି ତାକୁ ଓଲଟାଇ ଦେବାକୁ
ଚେଷ୍ଟା କରିବା ହେଉଛି ରାଜନୈତିକ "କଣ୍ଟକେ ନୈବ କଣ୍ଟକମ୍"

ଜାତି ।" ଏ ମତକୁ ଅନ୍ୟମାନେ ସହଜରେ ଖଣ୍ଡନ କରି ପାରିଥାନ୍ତେ, ମାତ୍ର କେହି କିଛି ମତ ଦେଲେ ନାହିଁ, କେବଳ ବଙ୍ଗୀୟ ଯୁବକ ଦୁଇଜଣ ଯୁକ୍ତି କରିବାକୁ ବାହାରିବାରୁ ତାଙ୍କୁ ଜଗଦୀଶ ଦାବି ଦେଇ କହିଲେ, "ଆମର ରାଜନୀତି ସହିତ ସମ୍ପର୍କ ନାହିଁ, ସେ ତାଙ୍କ ମତ କହିଲେ, ଆମେ ଶୁଣିଲେ, ଏଇଥିରେ ଆମର କର୍ତ୍ତବ୍ୟ ଶେଷ । ବାହାରର ଅବସ୍ଥା ଆମକୁ କିଛି ଜଣାନାହିଁ, ଜଣାଥିଲେ ମଧ୍ୟ ସେ ବିଷୟରେ ମଥା ଘୁରେଇବା ଦ୍ୱାରା ଚିତ୍ତବିକ୍ଷେପ ଘଟିବ, ଯାହା ଯୋଗ ସାଧନାରେ ବ୍ୟାଘାତ ଘଟାଇବ ।" "ତୁ ତ ରାଜନୀତି ସମ୍ପୂର୍ଣ୍ଣ ଛାଡ଼ି ଦେଇଛୁ । ମୁଁ ଜାଣେ, ସେଇଥିପାଇଁ ମୁଁ ତୋ ଠାକୁ ଆସିବାକୁ ମନ ବଳାଉ ନଥିଲି, କିନ୍ତୁ ଶରତର ତ ରାଜନୀତିରେ ବର୍ତ୍ତମାନ କିଛି ଆଗ୍ରହ ଅଛି ସେ କ'ଣ କହୁଛି—" କହିଦେଇ ବାଳକୃଷ୍ଣ ଅନାଇଲେ ଶରତ ଆଡ଼କୁ । ଶରତର ବାସ୍ତବିକ୍ ଏ କଥାରେ ଆଗ୍ରହ ନ ଥିଲା । ସେ ଖାଲି କହିଲେ, "ମୁଁ ଆଉ ରାଜନୀତିରେ ଆଗ୍ରହ ରଖୁନାହିଁ," ବାଳକୃଷ୍ଣ ଚଟ୍‌କି କହିଲେ, ରାଜନୀତି କହିଲେ କେବଳ ନିର୍ବାଚନ ବୁଝାଏ ନାହିଁ । ଜମିର ଖଜଣା କମାଇବା ପାଇଁ ଦରଖାସ୍ତ କରିବା ରାଜନୀତି । ପୁଅ ଝିଅଙ୍କ ଚାକିରି ପାଇଁ ଚେଷ୍ଟା କରିବା ମଧ୍ୟ ରାଜନୀତି । ସାଂସାରିକ ଜୀବନ ସହିତ ରାଜନୀତି ଓତଃପ୍ରୋତ ଭାବରେ ଜଡ଼ିତ । ଅବଶ୍ୟ ଜଗଦୀଶଙ୍କପରି ସଂସାର ତ୍ୟାଗ କରିବା ଭିନ୍ନ କଥା, ତଥାପି ଏହି ଆଶ୍ରମ, ଏହାର ଜମିବାଡ଼ି ପରିଚାଳନା ଇତ୍ୟାଦି ସମ୍ପର୍କରେ କିଛି କରିବାକୁ ହେଲେ ସରକାରୀ ସାହାଯ୍ୟ ଆବଶ୍ୟକ । ସେହି ତ ରାଜନୀତି; ରାଜନୀତି କଅଣ ଗୋଟିଏ କୋଣରେ ଲୁଚି ରହିଥିବା ଭୂତ ନା ପ୍ରେତ ।" ଏ କଥାଟା ଶରତଙ୍କ ମନକୁ ବାଧିଲା, କାରଣ ସେ ନିଜ ପୁଅ ପାଇଁ ବାଳକୃଷ୍ଣଙ୍କୁ ଅନୁରୋଧ କରିଥିଲେ । ସହସା ମୁହଁ ମଳିନ ଦେଖାଗଲା, କିଛି ନ କହି ସେ ଚୁପ୍ ହୋଇ ବସିଲେ । ବାଳକୃଷ୍ଣ କିନ୍ତୁ କଥା ଚଳାଇବାକୁ ବ୍ୟଗ୍ର । ସେ ଯେ ତାଙ୍କ ପୂର୍ବଜୀବନରୁ ବିଚ୍ୟୁତ ନୁହଁନ୍ତି ଏହା ତାଙ୍କର ବନ୍ଧୁମାନେ ବୁଝନ୍ତୁ ଏବଂ ପୂର୍ବପରି ତାଙ୍କୁ ସମ୍ମାନ କରନ୍ତୁ । ଏହିହେଲା କଥା ଚଳେଇବାର ଉଦ୍ଦେଶ୍ୟ । ସେ ବଂଗୀୟ ଯୁବକମାନଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରିଦେଲେ । ଶରତଙ୍କ ସହିତ କଲିକତା ଯାଇ ସେ କେଉଁଠିକି କେଉଁଠିକି ଯାଇଥିଲେ ସେ ସବୁ ବର୍ଣ୍ଣନା

କଲେ । ଆଜିର କଲିକତା ନିର୍ଜୀବ, ବଙ୍ଗ ହରଇଛି ତାର ବୈପ୍ଳବ ଐତିହ୍ୟ, ଏହି ମତ ପ୍ରକାଶ କରିବା ମାତ୍ରେ ଜଣେ ଯୁବକ ଦୃଢ଼ ସ୍ୱରରେ ପ୍ରତିବାଦ କରି କହିଲେ "ଦୁଇ ଦିନ ଭିତରେ କି କଲିକତା ବା ବଙ୍ଗ ଜୀବନ ଜଣେ ଜାଣିପାରେ ? ଯେଉଁ ସନ୍ୟାସୀଙ୍କ କଥା ଆପଣ କହୁଛନ୍ତି, ଆମେ ତାଙ୍କୁ ଜାଣୁ । ସେପରି ଗୁରୁତ୍ୱ ତାଙ୍କୁ ଯୁବ ମହଲରେ ଦିଆହୁଏ ନାହିଁ । କଲିକତାରେ ଯୁବ ସଂଖ୍ୟା ନିମ୍ନତ ହିସାବରେ ଗଣା ହୁଏ । କେଉଁଠି ପଚିଶ ଶହେ ଯୁବକ ଦେଖି କଲିକତାର ଯୁବ ମନ ବୁଝିବା ଯେପରି ଏକ ସମୁଦ୍ର କୂଳରେ ଛିଡ଼ା ହୋଇ ସମୁଦ୍ରର ଗଭୀରତା ସମ୍ବନ୍ଧରେ ଧାରଣା କରିବା ସେହିପରି । କଲିକତା ପୂର୍ବ ପରି ଜୀବିତ । ବଙ୍ଗ ପୂର୍ବ ପରି ବିପ୍ଳବୀ—ଝଡ଼ ତୋଫାନ ପୂର୍ବରୁ ସମୁଦ୍ର ଯେପରି ନିଶ୍ଚଳ ଗମ୍ଭୀର ହୋଇଥାଏ, ସେହିପରି ବର୍ତ୍ତମାନ ବଙ୍ଗର ଅବସ୍ଥା । ତେବେ ଛାଡ଼ନ୍ତୁ ବଙ୍ଗପ୍ରଦେଶ କଥା । ଓଡ଼ିଶାର ଅବସ୍ଥା କଅଣ ? ଅଛି କି ଓଡ଼ିଶାରେ ଜୀବନ ? ନୀରବ ହୋଇ ବସି ରହିବା, ହରି ନାମ ସଂକୀର୍ତ୍ତନ କରିବା ବା ଯୋଗ ପ୍ରଣାଳୀ ଶିକ୍ଷା କରିବା ବରଂ ଶ୍ରେୟସ୍କର କିନ୍ତୁ ଗଣ ବିରୋଧୀ ମିଥ୍ୟାଚାରୀ ଶାସନ ସହିତ ସଂପୃକ୍ତ ହେବା ଘୃଣ୍ୟ । ଏହା ଓଡ଼ିଶାର ଯୁବକମାନେ ମନେ କରନ୍ତି କି ?" ଏ ମନ୍ତବ୍ୟ ଯେ ବାଳକୃଷ୍ଣଙ୍କୁ ତୀବ୍ର ଆଘାତ ଦେଲା, ତା' ତାଙ୍କ ଚେହେରାରୁ ଜଣା ପଡ଼ିଲା । ସେ କିଛି କହିବାକୁ ଯାଉଥିଲେ କିନ୍ତୁ ଜଗଦୀଶ୍ ଶାନ୍ତ ସ୍ୱରରେ କହିଲେ, "ବାଳକୃଷ୍ଣ ତୁ ଆମର ବନ୍ଧୁ. ତୋର ମତ ଓ କାର୍ଯ୍ୟ ପ୍ରତି ଆମର ସମ୍ମାନ ଅଛି । ଆମର ମତ ଓ କାର୍ଯ୍ୟ ପ୍ରତି ତୋର ସମ୍ମାନ ରହିବା ଆମେ ଆଶା କରୁ । ଆମ୍ଭେମାନେ ରାଜନୀତିରୁ ଅପସରି ଯାଇ ନିଜ ନିଜ ଆଗ୍ରହ ଅନୁସାରେ ଶାନ୍ତ ଜୀବନ ଯାପନ କରୁଛୁ । ସେଥିରେ ତୁ ବାଧା ଦେବା ଅନ୍ୟାୟ । ଅନ୍ୟକଥା ପକା । ତୋର ସ୍ୱାସ୍ଥ୍ୟ କିପରି ? ତୋର ଭାଇ କ'ଣ କରୁଛି ? ଏକାଠି ଅଛ ନା ଭିନ୍ନେ ହୋଇଗଲଣି ?" ଜଗଦୀଶଙ୍କ ଅଜ୍ଞତାରେ ଶରତ ହସିଦେଇ କହିଲେ, "ତାଙ୍କ ଭାଇ ପରା ମନ୍ତ୍ରୀ ଆଉ ବାଳକୃଷ୍ଣ ତାଙ୍କର ଉପଦେଷ୍ଟା । ଏହି ମଟର ଗାଡ଼ି ଦେଖୁନାହୁଁ ମନ୍ତ୍ରୀ ସୌରଭ କିପରି ପ୍ରକାଶ ପାଉଛି ।" ଅଳ୍ପ ହସି ଜଗଦୀଶ କହିଲେ, "ସତ ନାଁ, ମୁଁ କିଛି ଖବର ରଖେ ନାହିଁ । ରଖିବାର ଆବଶ୍ୟକତା ମଧ୍ୟ ନାହିଁ । ଯାହାହେଉ ବାଳକୃଷ୍ଣ, ଏକ କାମରେ

ଲଗି ଯାଇଛୁ । ଭଲ କଥା, କିଛି ନା କିଛି କାମରେ ନ ଲଗି ଖାଲି ତର୍କ ବିତର୍କରେ ମନକୁ ଉଚ୍ଛନ୍ନ କରିବାରେ ଲାଭ କିଛି ନାହିଁ । ବରଂ ଭୟଙ୍କର କ୍ଷତି ।" ବାଳକୃଷ୍ଣଙ୍କ ଦୀପ୍ତି ଶତକଡ଼ା ପଚାଶରୁ ବେଶୀ କମିଗଲା । ସେ ତରତର ହୋଇ କହିଲେ, "ମୋ ଭାଇ ମନ୍ତ୍ରୀ, ସେ ତା ବାଟରେ ଯାଉଛି । ମୁଁ ତାର ଉପଦେଷ୍ଟା ନୁହେଁ କି ତା କାମ ସହିତ ମୋର କିଛି ସମ୍ପର୍କ ନାହିଁ । କେବଳ ଭାଇ ସମ୍ପର୍କ ଛଡ଼ା ଅନ୍ୟ ସମ୍ପର୍କ କିଛି ନାହିଁ । ଏ ସମ୍ପର୍କରେ ପୁଣି ଯୁକ୍ତିତର୍କ ଆରମ୍ଭ ହେବାକୁ ବନ୍ଦ କଲେ ଜଗଦୀଶ୍ । ବ୍ୟସ୍ତ ହୋଇ କହିଲେ, "ଆଚ୍ଛା କାହିଁକି ତୁମେ ଦୁଇଜଣଙ୍କ ଏ ପରିତ୍ୟକ୍ତ ନିର୍ଜନ ଆଶ୍ରମକୁ ଆଗମନ ? ଏଠି ସ୍ୱାଧୀନତା ସଂଗ୍ରାମୀ ତୁଳସୀଙ୍କ ପ୍ରେତ ବାସ କରେ । ଏଠି ପୂଜ୍ୟ ସ୍ୱାମିଜୀଙ୍କ ଆତ୍ମା ବିଚରଣ କରେ । ଏଠି ଆମେ ଶୁଣୁଛୁ ଅହରହ ସମୁଦ୍ରର ଗର୍ଜନ । ନିକଟରେ ଥିବା ଶ୍ମଶାନର ସତର୍କ ବାଣୀ । ସଂସାରଠାରୁ ତ୍ୟାଗ ବହୁ ଦୂରରେ । ଆଉ ମୋତେ ବା ଏ କ୍ଷୁଦ୍ର କୁଟୀରଟିକୁ କୌଣସି ଟଣାଟଣିରେ ପକାଅ ନାହିଁ ।" ଏହା ପରେ ଆଉ କଥାବାର୍ତ୍ତା ପାଇଁ ବିଷୟ କିଛି ରହିଲା ନାହିଁ । ମାତ୍ର କେତେ ମିନିଟ୍ ଏଣୁତେଣୁ କଥା କହି ବାଳକୃଷ୍ଣ ଚାଲିଗଲେ ।

—୨୫—

ହରିଚରଣଙ୍କ ଅବସ୍ଥା ତେଣେ କ୍ରମେ ଜଟିଳ ହୋଇ ଆସୁଛି । ନିର୍ବାଚନରେ ସେ ଏବଂ ତାଙ୍କ ଦଳ ଶୋଚନୀୟ ଭାବରେ ପରାଜିତ ହେବାପରେ ସମସ୍ତ ବିରୋଧୀ ଦଳର ମୂଳୋତ୍ପାଟନ କରିବା ପାଇଁ ଶାସକ ଦଳ ଚାହିଁଲେ । ବାସ୍ତବିକ୍ ସମାଜବାଦ ପ୍ରତିଷ୍ଠା କରିବାକୁ ହେଲେ ଏକଦଳୀୟ ଶାସନ ନିତାନ୍ତ ଆବଶ୍ୟକ । ଏକାଧିକ ଦଳ ରହି ଏକ ଅନ୍ୟର ଦୋଷ ଦେଖାଇ ଚାଲିବ ଏଥିରେ ଗଣମନ ବିଭ୍ରାନ୍ତ ହେବ ଏବଂ କୌଣସି ଗୋଟିଏ ନୀତି ବା କାର୍ଯ୍ୟକ୍ରମକୁ ଜନତା ଧିରସ୍ଥିର ଭାବରେ ଧରି ରଖି ପାରିବ ନାହିଁ । ଏଣୁ ନିର୍ବାଚନ ଫଳର ସୁବିଧା ନେଇ ବିରୋଧର ସତ୍ତା ଲୋପ କରିଦେବା ଆବଶ୍ୟକ, ଏହାହିଁ ହେଲା ଉଚ୍ଚସ୍ତରରେ ସିଦ୍ଧାନ୍ତ । ଆଜି ହରିଚରଣ ହାରିଯାଇଛନ୍ତି । ତାଙ୍କ ଦଳ ସିନା ସଂଖ୍ୟାଗରିଷ୍ଠତା ହାସଲ

କରି ପାରିଲା ନାହିଁ, କିନ୍ତୁ କେତେକ ତ ନିର୍ବାଚିତ ହୋଇଛନ୍ତି । ଏହି ତ ହେଲା ବିରୋଧର ମୂଳ । ସୁବିଧା ସୁଯୋଗ ପାଇଲେ ଏଇ ମୂଳରୁ ଗଛ ଉଠି ବିଶାଳ ବୃକ୍ଷ ହେବାର ସମ୍ଭାବନା ରହିଛି । ଏଣୁ "ମୂଳୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି" ନୀତିରେ ହରିଚରଣଙ୍କ ବିରୁଦ୍ଧରେ ଗ୍ଲଲିଲା ନାନା ଅଭିଯୋଗର ତଦନ୍ତ । ମୁଖ୍ୟ ଅଭିଯୋଗ ହେଉଛି ହିଂସାତ୍ମକ ଆନ୍ଦୋଳନ ପାଇଁ ସେ ପ୍ରସ୍ତୁତ ହେଉଛନ୍ତି । ଏଇ ଅଭିଯୋଗ ପାଇଁ ହରି-ଚରଣ ନିଜେ ଦାୟୀ, ନିର୍ବାଚନରେ ହାରିଗଲା ପରେ ବିରକ୍ତ ଉତ୍ତେଜିତ ହୋଇ ସେ ଏକ ସଭାରେ ବକ୍ତୃତା ଦେଉ ଦେଉ କହି ପକାଇଲେ— "ବ୍ୟାଲଟ୍‌ରେ ଯଦି ପରିବର୍ତ୍ତନ ନ ଆସି ପାରିବ ତେବେ ବୁଲେଟ୍‌ର ମଧ୍ୟ ଆଶ୍ରୟ ନେବା ଅନ୍ୟାୟ ହେବ ନାହିଁ ।" ହରିଚରଣ ଯେ ଏକ ସମୟରେ ଶେଷାଶ୍ରୟକୁ ଯିବା ଆସିବା କରୁଥିଲେ ଏବଂ ସେ ଆଶ୍ରମରେ ଯେ ହିଂସାତ୍ମକ ଆନ୍ଦୋଳନର ଯୋଜନା ହେଉଥିଲା ବୋଲି ରିପୋର୍ଟ ମିଳିଥିଲା, ଯେଉଁ ରିପୋର୍ଟ ପାଇବା ପରେ ସ୍ୱାମିଜୀ ଗିରଫ୍ ହେଲେ, ଏସବୁ ପୁରୁଣା କାଗଜପତ୍ର ସଂଗ୍ରହ କରଗଲା । ହରିଚରଣଙ୍କ ସମସ୍ତ କାର୍ଯ୍ୟ କଳାପ ଉପରେ ସତର୍କ ଦୃଷ୍ଟି ରଖିବା ପାଇଁ ଦକ୍ଷ ସି. ଆଇ. ଡ଼ି. ଅଫିସର କେତେଜଣ ନିଯୁକ୍ତ ହେଲେ । ମନସ୍ତତ୍ତ୍ୱବିଦ୍ ମାନେ କହନ୍ତି ମନ ଭୟରେ ଯେଉଁ ଆଡ଼କୁ ଝୁଙ୍କିଯାଏ, ସେହି ଆଡ଼ଟି କ୍ରମେ ବଡ଼ ଆକାରରେ ମନକୁ ଗ୍ରାସ କରେ । ଅହେତୁକ ଆଶଙ୍କା ଜାତ କରଏ । କର୍ତ୍ତୃପକ୍ଷଙ୍କ ଧାରଣା କ୍ରମେ ଦୃଢ଼ ହୋଇ ହୋଇ ଯାଉଛି ହରିଚରଣ ନିଶ୍ଚୟ କୌଣସି ହିଂସାତ୍ମକ କାର୍ଯ୍ୟପାଇଁ ପ୍ରସ୍ତୁତ ହେଉଛନ୍ତି । ନିର୍ବାଚନରେ ହାରିଯାଇ ସେ ତ ବସି ରହିବା ଲୋକ ନୁହନ୍ତି, କିଛି ନା କିଛି ସେ କରିବାକୁ ପ୍ରସ୍ତୁତ ହେଉଥିବେ । ହିଂସାତ୍ମକ କାର୍ଯ୍ୟକ୍ରମ ପାଇଁ ତାଙ୍କ ପ୍ରସ୍ତୁତିଟି ସିନା ଅହେତୁକ ଆଶଙ୍କା, କିନ୍ତୁ ଚୁପ୍ ହୋଇ ସେ ଯେ ବସିବେ ନାହିଁ, ଏ ଅନୁମାନ ଯଥାର୍ଥ । ହରିଚରଣ ତାଙ୍କ ଦଳର ଯୁବକ ମାନଙ୍କ ଉତ୍ସାହ ଯେପରି ହ୍ରାସ ନପାଏ, ସେଥି ପାଇଁ ସମସ୍ତ ଉଦ୍ୟମ କରୁଥାନ୍ତି । ଓଡ଼ିଶାରେ ଓ ଓଡ଼ିଶା ବାହାରେ ଯେଉଁ ସବୁ ବିରୋଧୀ ଦଳ ରହିଛନ୍ତି ବା ପ୍ରଚଳିତ ବ୍ୟବସ୍ଥାର ବିରୋଧରେ ମତ ପ୍ରକାଶ କରୁଥାନ୍ତି, ସେ ସବୁଙ୍କ ସହିତ ସଂଯୋଗ ସ୍ଥାପନ କରିସାରିଲେଣି । "ଗୃଷୀ ବୁଡ଼ିଲେ ବରଷେ, ଘେଟର ବୁଡ଼ିଲେ ପାଞ୍ଚ

ବରଷ ।" ଏ ଯେ ଗାଁଉଁଲି ପ୍ରବଚନ, ଉତ୍ତେଜନାରେ ହରିଚରଣ ଭୁଲିଗଲେ । ଆସନ୍ତା ନିର୍ବାଚନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଧୈର୍ଯ୍ୟ ନାହିଁ । କିଛି ଗୋଟାଏ କରିବାକୁ ହେବ । ଏହି "କିଛି ଗୋଟାକ" ଅନ୍ୱେଷଣରେ ସେ ଗଲେ ଶେଷାଶ୍ରୟକୁ । ଯେ ଜାଣନ୍ତି ସେଠି ଜଗଦୀଶ୍ ଅଛନ୍ତି । ଜଗଦୀଶ୍ ଜଣେ ପୁରୁଣା ସଂଗ୍ରାମୀ । ଅବସ୍ଥା ଚକ୍ରରେ ସିନା ଯୋଗମାର୍ଗ ଧରିଛନ୍ତି, କିନ୍ତୁ ସେ ନିଶ୍ଚୟ କିଛି ନା କିଛି କର୍ମପନ୍ଥା ଚିନ୍ତା କରୁଥିବେ । ତା' ଛଡ଼ା ସ୍ୱାମିଜୀଙ୍କ ସମୟରୁ ହରିଚରଣଙ୍କ ଏକ ହୃଦଗତ ବିଶ୍ୱାସ ରହିଯାଇଛି ସେ ଆଶ୍ରମର ଅଲୌକିକ ଶକ୍ତି ଉପରେ । ତାଙ୍କରି ଯୋଗୁଁ ତୁଳସୀ ସେଠି ସ୍ଥାଣ ହରାଇଛି ଅବଚେତନ ସ୍ତରରେ । ଏ ଜ୍ଞାନ ମଧ୍ୟ ଆଶ୍ରମ ପ୍ରତି ତାଙ୍କର ଆକର୍ଷଣର ଅନ୍ୟତମ କାରଣ । ସେଠିକି ଗଲେ କିଛି ଆଲୋକ ପାଇବେ, ଏହି ଧାରଣାରେ ସେ ଯାଇ ପହଞ୍ଚିଲେ 'ଶେଷାଶ୍ରୟ'ରେ । ମନ୍ତ୍ରୀଙ୍କ ଗାଡ଼ିରେ ତାଙ୍କ ପରାମର୍ଶଦାତା ଭାବରେ ବାଳକୃଷ୍ଣଙ୍କ ସେ ଆଶ୍ରମକୁ ପରିଦର୍ଶନ, ପୁଣି ଥରେ ହରିଚରଣଙ୍କ ତାଙ୍କ ନିଜ ମନ୍ତ୍ରୀ ସମୟ ଗାଡ଼ିରେ ଆଶ୍ରମକୁ ଆଗମନ, ଏ ସବୁ ମିଶି ପ୍ରଥମେ ଆଶ୍ରମ ଆଖପାଖ ଏବଂ ପରେ ପୁରୀ ସହରସାରାର ଦୃଷ୍ଟି ପଡ଼ିଲା ପରିତ୍ୟକ୍ତ ବିସ୍ମୃତ ସେ ଆଶ୍ରମ ଉପରେ । ପୁଣି ଜାଗ୍ରତ ହେଲା ସେ ଅତୀତର ସ୍ମୃତି ଛାତ୍ର ମହଲରେ । ଗଲା ହେଲା କଲିକତାରୁ ଦୁଇଜଣ ବିପ୍ଳବୀ ଯୁବକ ଆସି ସେ ଆଶ୍ରମରେ ରହନ୍ତି । କୌତୂହଳ ନିବାରଣ ପାଇଁ ଦଳକୁ ଦଳ ଗଲେ ଯେପରି ସ୍ୱାମିଜୀଙ୍କ ସମୟରେ ହୋଇଥିଲା । ଜଗଦୀଶ୍ ତ ବେଶୀ କଥାବାର୍ତ୍ତା କରିବାରେ ଅଭ୍ୟସ୍ତ ନୁହଁନ୍ତି । ଅଳ୍ପ ଯେତିକି ସେ କହନ୍ତି, ସେଥିରେ ସେ ଯୁବକମାନଙ୍କୁ ପରାମର୍ଶ ଦିଅନ୍ତି ନିଷ୍ଠାପର ଜୀବନ ଯାପନ କରିବା ପାଇଁ । ନିଷ୍ଠା ଥିଲେ ସଫଳତା ପାଇଁ ବ୍ୟଗ୍ର ହେବ ନାହିଁ ମନ । "କି କାର୍ଯ୍ୟରେ ନିଷ୍ଠା" ଏହାର ଉତ୍ତରରେ ଜଗଦୀଶ୍ କହନ୍ତି ରୁଚି ଅନୁସାରେ ନିଜର ପରିବେଶ ବିଷୟରେ ଯେ ଯାହାର କର୍ତ୍ତବ୍ୟ ନିର୍ଣ୍ଣୟ କରି ସେଇଥିରେ ସମସ୍ତ ମନଟିକୁ ଢ଼ାଳି ଦେବା ହେଉଛି ନିଷ୍ଠା ।" ଜଗଦୀଶଙ୍କ ସାମନାରେ ବଙ୍ଗୀୟ ଯୁବକ ଦ୍ୱୟ କୌଣସି ରାଜନୈତିକ ଆଲୋଚନା କରନ୍ତି ନାହିଁ । କିନ୍ତୁ ତାଙ୍କ ଅନୁପସ୍ଥିତିରେ ଏମାନଙ୍କ ଯୁବପ୍ରାଣ ବେଳା ଅତିକ୍ରମ କରି ମାଡ଼ିଯାଏ ରାଜନୀତି ଆଡ଼କୁ । "ପରିବର୍ତ୍ତନ ପାଇଁ ଆବଶ୍ୟକ ଶରୀର ଓ ମନର ଶକ୍ତି ।" ହୃଦୟ ଟଳିବେନା

ନୟନ ଗଳିବେନା କା'ରଓ ଆତୁର କ୍ରନ୍ଦନେ ।" ହୃଦୟ ଟଳିବ ନାହିଁ, ନୟନ ଗଳିବ ନାହିଁ, କାହାରି ଆତୁର କ୍ରନ୍ଦନେ । ଏହିପରି ମନ ପଥର ପରି ଦୃଢ଼ ହେବା ଆବଶ୍ୟକ । ଶରୀର ମଧ୍ୟ ସବୁ କିଛି କଷ୍ଟ ନିର୍ଯ୍ୟାତନା ସହିବା ପାଇଁ ପାଷାଣ ପରି ହେବା ଆବଶ୍ୟକ—ଏହାକୁହିଁ ବହୁତ ଉଦାହରଣ ଦେଇ ଯୁବକ ଦ୍ୱୟ ବୁଝାନ୍ତି । ଉଦାହରଣ ଭିତରେ ବଙ୍ଗର ପୂର୍ବ ବିପ୍ଳବୀମାନଙ୍କ ଜୀବନୀ ଏବଂ ବର୍ତ୍ତମାନର ନକ୍ସଲଛଟ୍‌ମାନଙ୍କ ଜୀବନୀ ବର୍ଣ୍ଣନା କରନ୍ତି । ଛାତ୍ର ଓ ଯୁବକମାନଙ୍କର ମନ ମୁକ୍ତନୀତିଟିକୁ ସେପରି ଗ୍ରହଣ କରେ ନାହିଁ । ବିପ୍ଳବୀଙ୍କ ଜୀବନର ଉଦାହରଣ ସେମାନଙ୍କ ମନରେ ଯେଉଁ ଉତ୍ତେଜନା ସୃଷ୍ଟିକରେ ସେଥିରେ ସେମାନେ ଆନନ୍ଦ ଅନୁଭବ କରନ୍ତି, ଯେଉଁ ଆନନ୍ଦ ସେମାନେ ଅବସର ସମୟରେ ତାସ୍, କେରମ୍, ଚେସ୍ ପ୍ରଭୃତିରେ ପାଆନ୍ତି ନାହିଁ । ଆଶ୍ରମରୁ ଯାହା ଶୁଣି ଯାଆନ୍ତି ତା'କୁ ନିଜ ନିଜ ଭିତରେ କଥାବାର୍ତ୍ତା ହୁଅନ୍ତି । ଗଳ୍ପ ହୋଇଗଲା, ଶେଷାଶ୍ରୟରେ ବଙ୍ଗଦେଶର ଦୁଇଜଣ ବିଖ୍ୟାତ ବିପ୍ଳବୀ ଆସି ଅଛନ୍ତି, ସେମାନେ ଯୁବକ, ନିଶ୍ଚୟ କୌଣସି କାର୍ଯ୍ୟକ୍ରମ ଘେନି ସେ ପୁରୀରେ ଅଛନ୍ତି । ଏହି ଅନୁମାନ କ୍ରମେ ଏକ ଜାଣିଲା ପରି ସତ୍ୟ ସିଦ୍ଧାନ୍ତରେ ପରିଣତ ହେଲା, ସାଧାରଣତଃ ସବୁ ଗୁଜବର ଉତ୍ପତ୍ତି ଓ ପରିଣତି ଯେପରି ହୋଇଥାଏ । ଆଶ୍ରମକୁ ଯିବାକୁ କାହାରି ସେପରି ଭୟ ନାହିଁ, କାରଣ ମନ୍ତ୍ରୀଙ୍କ ଭାଇ ବାଳକୃଷ୍ଣ ସେଠିକି ଯା' ଆସ କରନ୍ତି । ସେ ମଧ୍ୟ ଜଣେ ପୁରାତନ ସଂଗ୍ରାମୀ । ତାଙ୍କର ମଧ୍ୟ ଉକ୍ତ କାର୍ଯ୍ୟକ୍ରମ ସମ୍ବନ୍ଧରେ କିଛି ସମ୍ପର୍କ ଅଛି । ସେ ବିନା ଘଟଣାଚକ୍ରରେ ମନ୍ତ୍ରୀଙ୍କ ସହିତ ଅଛନ୍ତି । କିମ୍ବା ଏହା ମଧ୍ୟ ହୋଇପାରେ ମନ୍ତ୍ରୀଙ୍କର ଏ କାର୍ଯ୍ୟକ୍ରମ ସହିତ ସହାନୁଭୂତି ଅଛି, ଏହିପରି ଏକ ଅନୁମାନରୁ ଆଉ ଏକ ଅନୁମାନ । ପୁଣି ସେଥିରୁ ଅନ୍ୟ ଏକ ଅନୁମାନ ବାହାରି ବାହାରି ଶେଷରେ ଏକ ଜଣାଶୁଣା ସତ୍ୟ ବୋଲି ପ୍ରଚାରିତ ହେଲା, ଶେଷାଶ୍ରୟରେ ଏକ କୌଶଳ ଅନୁଯାୟୀ, ଜଣେ ପୂର୍ବ ସ୍ୱାଧୀନତା ସଂଗ୍ରାମୀ ଯୋଗ ସାଧନାର ଛଳନାରେ ଅଛନ୍ତି । ତାଙ୍କ ସହିତ ମନ୍ତ୍ରୀ ଏବଂ ତାଙ୍କ ଭାଇଙ୍କ ଘନିଷ୍ଠ ସମ୍ପର୍କ ଅଛି । ବଙ୍ଗ-ଦେଶରୁ ଦୁଇଜଣ ବିପ୍ଳବୀ ଯୁବକ ଆସି କ୍ଷେତ୍ର ପ୍ରସ୍ତୁତ କରୁଛନ୍ତି ଏକ ବିରାଟ ବିପ୍ଳବ ପାଇଁ । ସମ୍ବାଦପତ୍ର ପ୍ରଚାର ଏପରିକି ରେଡ଼ିଓ ପ୍ରଚାରଠାରୁ ଆହୁରି ଦ୍ରୁତଗାମୀ ଓ ବିଶ୍ୱାସ ଯୋଗ୍ୟ ଉପାଂଶୁ ଯନ୍ତ୍ରରେ ବାର୍ତ୍ତା ପ୍ରଚାର ।

ଏ ଉପାଂଶୁ ବାର୍ତ୍ତା ଉପରେ ପର୍ଯ୍ୟବେସିତ ସି. ଆଇ. ଡ଼ି. ରିପୋର୍ଟ କେବଳ ଏ ଦେଶରେ ନୁହେଁ, ସର୍ବତ୍ର ବିଶେଷତଃ ଏକଦଳୀୟ ଶାସନ ପଦ୍ଧତିରେ ଯେ କେତେ ଲୋକଙ୍କୁ ଫାଶି କାଠରେ ଚଢାଇ ଦେଇଛି, କେତେ ଯେ ଦୀର୍ଘ କାରାଦଣ୍ଡ ଭୋଗିଛନ୍ତି ଓ ଭୋଗୁଛନ୍ତି, କେତେ ଯେ ପଥର ଭିକାରୀ ହୋଇ ଯାଇଛନ୍ତି, ତା'ର ହିସାବ ଶତ ବା ସହସ୍ର ହିସାବରେ କରଯାଇପାରେ । ଏଣୁ ଉପାଂଶୁଙ୍କୁ ଖାତିରି ନ କରିବା ନିର୍ବୋଧତା, ଏହା ବୁଝି ପାରିଲେ ନାହିଁ ଜଗଦୀଶ । ଗୁଜବ ଶୁଣି ଜଗଦୀଶ ହସି ଦେଇ କହନ୍ତି, "ବାଜେ କଥା, ମଦ ଖଟି ଗପ ।" ବାଳକୃଷ୍ଣ ହସରେ ଉଡ଼ାଇ ଦିଅନ୍ତି ଏ ସବୁକୁ ଖଟି ଗପ କହି, ଶରତ ତ ଦୂରରେ, ତାଙ୍କ କାନରେ ଏ ସବୁ ଗୁଜବ ପହଞ୍ଚିପାରେ ନାହିଁ । ହରିଚରଣ ଏ ସବୁ ଗୁଜବ ଶୁଣନ୍ତି– ମନେ ମନେ ଆନନ୍ଦିତ ହୁଅନ୍ତି, ଭାବି ଯେ ଏ ପ୍ରକାର ଗୁଜବ ଶାସକଗୋଷ୍ଠୀ ଭିତରେ ଭୟ ସଞ୍ଚାର କରିବ । ସେ ଭୟରୁ ଯେ ସେ ନିଜେ କିପରି ଲାଭ ଉଠାଇବେ, ସେ ଚିନ୍ତା ତାଙ୍କ ମନକୁ ଆସେ ନାହିଁ । ପରାଜୟ ଜର୍ଜ୍ଜରିତ ମନ ପ୍ରକୃତିସ୍ଥ ଅବସ୍ଥାରେ ନ ଥାଏ ।

—୨୬—

ଅପ୍ରତ୍ୟାଶିତ ଆଗମନ ହରିଚରଣଙ୍କ ଶେଷାଶ୍ରୟକୁ ଉପରବେଳା, ସେତେବେଳେ ଜଗଦୀଶ୍ ପ୍ରସ୍ତୁତ ହେଉଥାନ୍ତି ଯୋଗଦା ଆଶ୍ରମକୁ ଯିବା ପାଇଁ, ତାଙ୍କ ସଙ୍ଗରେ ଯିବାପାଇଁ ବଙ୍ଗୀୟ ଯୁବକଦ୍ୱୟ ମଧ୍ୟ ପ୍ରସ୍ତୁତ ହେଉଥାଆନ୍ତି । ହରିଚରଣଙ୍କୁ ଦେଖି ଜଗଦୀଶ୍ ଗେଟ୍‌ଠୋକ୍ କହିଦେବେ ବୋଲି ଭାବୁଥିଲେ । ଆଶ୍ରମରେ ରାଜନୈତିକ ଲୋକଙ୍କର ସ୍ଥାନ ନାହିଁ କିନ୍ତୁ ଭଦ୍ରତା ଖାତିରରେ ସେ ଏହି କଥାଟାକୁ ଟିକିଏ ନରମେଇ କହିଲେ ଏବଂ ଚଟ୍ ଫଗେ ଫଗେ କହି ପକାଇଲେ "ମୁଁ ଗେଟ୍‌ଠୋକ୍ କହିବାକୁ ଯାଉଥିଲି କିନ୍ତୁ କଥା ତଣ୍ଟି ପାଖରେ ଅଟକି ଗଲା ।" ହରିଚରଣ ତ ନିଜ ଚିନ୍ତାରେ ଆତ୍ମହରା । ସେ ହସି ଦେଇ କହିଲେ, "ମୁଁ ତୁମ ପାଖକୁ ଆସିନାହିଁ । ଶୁଣିଲି କଲିକତାରୁ ଦୁଇଜଣ ଯୁବକ ଆସିଛନ୍ତି, ସେମାନଙ୍କ ସହିତ ଆଳାପ ପରିଚୟ କରିବାକୁ ମନ ହେଲା । କଲିକତାର ପ୍ରେରଣା

ତ ସବୁଦିନେ ଓଡ଼ିଶାକୁ ପରିଗ୍ଳାନିତ କରେ ।" "ବସ, ତାଙ୍କ ସହିତ କଥାବାର୍ତ୍ତା କର, ମୁଁ ଯାଉଛି ।" କହିଦେଇ ଜଗଦୀଶ ବାହାରିଗଲେ । ଆଗନ୍ତୁକଙ୍କ ସହିତ ବାକ୍ୟାଳାପ କରିବା ପାଇଁ ଯୁବକ ମାନଙ୍କର ମଧ୍ୟ ଆଗ୍ରହ ହେଲା, ସେମାନେ ଜଗଦୀଶଙ୍କ ସହ ନ ଯାଇ ରହିଗଲେ । କିଛି ସମୟ ପରେ ଯିବାକୁ କହିଲେ । ହରିଚରଣ ବସିଲେ, ତାଙ୍କର ନିଜର ପରିଚୟ ଦେଲେ । ଏହି ଆଶ୍ରମରେ ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଦେହତ୍ୟାଗ କରିଛନ୍ତି କହି ଗଭୀର ଦୁଃଖ କଲେ, ପୁଣି ସ୍ୱାମିଜୀଙ୍କ ସହିତ ତାଙ୍କର ସମ୍ପର୍କ ବିଷୟ ବର୍ଣ୍ଣନା କଲେ । ଶେଷରେ ଆସି ପହଞ୍ଚିଲେ ତାଙ୍କର ମନ କଥାରେ । ପରିସ୍ଥିତିର ପରିବର୍ତ୍ତନ ପାଇଁ ଯେ ବିପ୍ଳବ ଆବଶ୍ୟକ ଏହା ସେ ବୁଝୁଛନ୍ତି, କିନ୍ତୁ ସଙ୍ଗଠନର ଦାୟିତ୍ୱ ନେବା ପାଇଁ ଓଡ଼ିଶାରେ ସେପରି ଯୁବକ କାହାନ୍ତି ନାହାନ୍ତି । ଏଥିରେ ତାଙ୍କର ଗଭୀର ଦୁଃଖ ସେ ପ୍ରକାଶ କଲେ, କଥାରେ ସର ପକାଇ କହିବାରେ ହରିଚରଣ ଧୁରନ୍ଧର, ଏପରି ସ୍ୱର ଓ ମୁଖଭଙ୍ଗୀରେ ସେ କହିଲେ, ତାଙ୍କର ଆନ୍ତରିକତା ସମ୍ବନ୍ଧରେ ଯୁବକମାନଙ୍କ କୌଣସି ସନ୍ଦେହ ରହିଲା ନାହିଁ, ସେମାନେ ମନ ଖୋଲି ପ୍ରକାଶ କଲେ ସେମାନଙ୍କ ଉଦ୍ଦେଶ୍ୟ-ବିପ୍ଳବ । କିନ୍ତୁ ସେଥି ପାଇଁ ଯେଉଁ ଆଧ୍ୟାତ୍ମିକ ଶକ୍ତି ଆବଶ୍ୟକ ତାକୁ ସଂଗ୍ରହ କରିବାପାଇଁ ସେ ଏ ଆଶ୍ରମକୁ ଆସିଛନ୍ତି । ହରିଚରଣ ଯୁକ୍ତି କଲେ ଏ କାର୍ଯ୍ୟକ୍ରମ ଏତେ ସୁଦୂରପ୍ରସାରୀ ଯେ ଏ ପୁରୁଷରେ ତା' ସମ୍ଭବ ହୋଇ ପାରିବ ନାହିଁ । ଏପରି ପ୍ରୋଗ୍ରାମ୍ ହେବା ଆବଶ୍ୟକ ଯାହାକୁ ଅଳ୍ପ ସମୟ ଭିତରେ କାର୍ଯ୍ୟକାରି କରିହେବ । ଏହି ବିଷୟ ନେଇ ଦୀର୍ଘ ଯୁକ୍ତି ତର୍କ ହେଲା । ଯୁବକମାନେ ତାଙ୍କ ପଣ୍ଡ ଛାଡ଼ିଲେ ନାହିଁ । ପୂର୍ବେ ବିପ୍ଳବ ବିଫଳ ହୋଇଛି ଆଧ୍ୟାତ୍ମିକ ଶକ୍ତି ଅଭାବରୁ ସେ ଶକ୍ତି ହିଁ ବିପ୍ଳବ ପାଇଁ ଆବଶ୍ୟକ, ଏହି ଯୁକ୍ତି-ଦୃଢ଼ ଭାବରେ ବାଢ଼ିଲେ ଯୁବକ ଦ୍ୱୟ । ହରିଚରଣଙ୍କ ମନ ମାନିଲା ନାହିଁ, ପୁଣି ପରେ ଆସି ସେ ଆଲୋଚନା କରିବେ ବୋଲି କହି ବିଦାୟ ନେଲେ ।

ହରିଚରଣଙ୍କ ଶେଷାଶ୍ରୟକୁ ଆସି ବିପ୍ଳବ ସମ୍ବନ୍ଧରେ ଆଲୋଚନା କରିବା ଖବର ଅଛପା ରହିଲା ନାହିଁ । କାନ୍ଥର ସୁଦ୍ଧା କାନ ଅଛି, କିନ୍ତୁ ଏ କ୍ଷେତ୍ରରେ

ହରିଚରଣ ହିଁ ନିଜେ କେତେଜଣ ବନ୍ଧୁଙ୍କୁ କହିଲେ ସେ ବଙ୍ଗୀୟ ଯୁବକମାନଙ୍କ ସହିତ ଆଲୋଚନା କରୁଛନ୍ତି । ସେମାନଙ୍କୁ କ୍ରମେ ନିଜ ବାଟକୁ ଆଣିବେହିଁ ଆଣିବେ ବୋଲି ଦୃଢ଼ ଆଶା ସେ ପୋଷଣ କରୁଛନ୍ତି । ଷଟ୍‌କର୍ଣ୍ଣ ମନ୍ତ୍ରଭେଦ ବୋଲି ଯେଉଁ କଥାଟି ଅଛି, ଏ କ୍ଷେତ୍ରରେ ତାହାହିଁ ହେଲା । ସି.ଆଇ.ଡ଼ି.ଙ୍କ ପାଖରେ ବଡ଼ା ବଡ଼ା ରିପୋର୍ଟ ଯାଇ ପହଞ୍ଚିଲା, ହରିଚରଣ ଶେଷାଶ୍ରମରେ ବିପ୍ଳବର କାର୍ଯ୍ୟକ୍ରମ ସ୍ଥିର କରୁଛନ୍ତି । ପୂର୍ବେ ଏହି ହରିଚରଣଙ୍କୁ କେନ୍ଦ୍ର କରି ଶେଷାଶ୍ରମ ସମ୍ବନ୍ଧରେ ଯେଉଁ ରିପୋର୍ଟ ଥିଲା, ତାକୁ ବାହାର କଲେ । ଇତିମଧ୍ୟରେ ଗୁଜବ ସବୁ ଯେ ସଠିକ୍ ସମ୍ବାଦ ରୂପେ ମିଳିଛି ସେସବୁକୁ ଏକତ୍ର କରାଗଲା । ରିପୋର୍ଟକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ବାଳକୃଷ୍ଣଙ୍କ ବକ୍ତବ୍ୟ ଆବଶ୍ୟକ । ଅତି ନମ୍ର ଭାବରେ ସି. ଆଇ. ଡ଼ି., ଡ଼ି. ଆଇ. ଜି. ବାଳକୃଷ୍ଣଙ୍କ ସହିତ ସାକ୍ଷାତ୍ କଲେ । ସେଦିନ ଯେ ସେ ଶେଷାଶ୍ରମକୁ ଯାଇଥିଲେ ସେଠି କି କି କଥା ହେଲା ନମ୍ର ଭାବରେ ପଚାରିଲେ । ପ୍ରଥମେ ସେ (ବାଳକୃଷ୍ଣ) ଉଡ଼ାଇଦେଲେ । "ଜଗଦୀଶ୍ ଜଣେ ପୂର୍ବତନ ବନ୍ଧୁ । ଶରତ ମଧ୍ୟ ମୋର ସେହିପରି ଜଣେ ବନ୍ଧୁ । ଶରତକୁ ମୁଁ ଡାକିଥିଲି କଥା ହେବାକୁ । ସେ କହିଲାରୁ ମୁଁ ଶେଷାଶ୍ରମକୁ ଯାଇଥିଲି । ତିନିଜଣ ପୂର୍ବ ବନ୍ଧୁଙ୍କ ସହ ମିଳନ, ଏଥିରେ ସନ୍ଦେହ କରିବାର କାରଣ କିଛି ନାହିଁ । ସି. ଆଇ. ଡ଼ି. ଅଫିସର୍ ଦୃଢ଼ ଭାବରେ କହିଲେ କିନ୍ତୁ ବଙ୍ଗୀୟ ଯୁବକଙ୍କ ଇତିବୃତ୍ତି ତ ଭିନ୍ନ ବୋଲି କଲିକତା ସି. ଆଇ. ଡ଼ି. ଜଣାଉଛନ୍ତି । ସେମାନେ ହିଂସାତ୍ମକ ବିପ୍ଳବ ସହିତ ସଂଯୁକ୍ତ । ଏପରି କି ସେମାନେ କେତେମାସ ରିଭଲ୍‌ଭର୍ ପ୍ରାକ୍‌ଟିସ୍ କରିଛନ୍ତି । ପୁଣି କଲିକତାର ଏକ ସନ୍ୟାସୀ ପରାମର୍ଶରେ ସେମାନେ ଆସି ଏଠି ଅଛନ୍ତି ।" କଲିକତା ସନ୍ୟାସୀଙ୍କ ବିବରଣ ପ୍ରକାଶ କରିବାରୁ ବାଳକୃଷ୍ଣ ହସି ଉଠି କହିଲେ, "ମୁଁ ଜାଣେ ସନ୍ୟାସୀଙ୍କୁ, ଶରତ ମୁଁ ଯାଇ ତାଙ୍କୁ ଦେଖା କରିଥିଲୁ । ସେ ତ ବିପ୍ଳବ ଠାରୁ ବହୁଦୂରରେ ।" ଡ଼ି. ଆଇ. ଜି. ନମ୍ରତାର ଅବତାର ସାଜି ବସିଥାନ୍ତି ଓ କହୁଥାଆନ୍ତି, "ଆଜ୍ଞା ଆପଣଙ୍କର ତାଙ୍କ ସହିତ ଯାହା କଥାବାର୍ତ୍ତା ହୋଇଥିଲା, ସବୁ ରିପୋର୍ଟ ହୋଇ ଆମଠାକୁ ଆସିଛି । ଏପରି କି କଲିକତାରେ ହୋଟେଲରେ ଯେଉଁ ଶଶୀକାନ୍ତ ବାବୁ ଆପଣଙ୍କର ଅତି ପରିଚିତ ହୋଇଥିଲେ, ତାଙ୍କ ଖବର ମଧ୍ୟ ଆମଠାକୁ ଆସିଛି । ବିପ୍ଳବ ଯେଉଁ-

ମାନଙ୍କର କାର୍ଯ୍ୟକ୍ରମ ସେମାନେ କଅଣ ଖୋଲଖୋଲି ତାହା ପ୍ରକାଶ କରନ୍ତି ? ସେମାନେ ମନକୁ ଏପରି ଦିଗରେ ନେଇଯାଆନ୍ତି, ଯେଉଁଥିରେ କଣେ ଯାଇ ପହଞ୍ଚିବ ବିପ୍ଳବଠି । ଏ ବିଷୟରେ ଦେଶ ବିଦେଶରେ ବହୁ ଅଧ୍ୟୟନ କର ହୋଇ ଫରମୁଲା ସବୁ ବାହାରିଛି । ଛାଡ଼ନ୍ତୁ ସେ ଚର୍ଚ୍ଚା । ମୋଟ କଥା ଶରତକୁ ଆପଣ ଡାକିଥିଲେ ସର୍କିଟ୍ ହାଉସ୍‌କୁ । ସେ ସେଠାକୁ ନ ଆସି ଶେଷାଶ୍ରୟକୁ ଯିବା ପାଇଁ କହିଲେ । ଏହାର ତ କିଛି କାରଣ ଥିବ, ପୁଣି ଆପଣ ବନ୍ଧୁଜଣଙ୍କ ଅନୁରୋଧରେ ସେଠାକୁ ଗଲେ । ଏଥିରେ ଅସ୍ୱାଭାବିକତା କିଛି ନାହିଁ । ସେଠି ବଙ୍ଗ ଦେଶରୁ ଯେଉଁମାନେ ଆସିଛନ୍ତି ସେମାନଙ୍କ ସମ୍ବନ୍ଧରେ ଆପଣଙ୍କ ମତ କଅଣ ହେଲା ? ଆପଣ ତ କଥାବାର୍ତ୍ତା କରିଥିବେ ।" ଏତିକି ଶୁଣି ବାଳକୃଷ୍ଣଙ୍କ ମସ୍ତିସ୍କରେ ଚକ୍ର ଘୂରିଲା ପରି ବୋଧ ହେଲା । କଲିକତା ଖବର ସବୁ ସି. ଆଇ. ଡ଼ି. ପାଇଛନ୍ତି । ସେ ଶଶିକାନ୍ତଟା କ'ଣ ସି. ଆଇ. ଡ଼ି.ର ଲୋକ, ସେ ସନ୍ୟାସୀଙ୍କ ଆଖପାଖରେ କଣ ସି. ଆଇ. ଡ଼ି. ଅଛନ୍ତି, ଶଶିକାନ୍ତକୁ ସେ ଓ ଶରତ ଯେ ମନଖୋଲି ସବୁ କହିଥିଲେ ସବୁତ ବର୍ତ୍ତମାନ ସି. ଆଇ. ଡ଼ି. ହାତରେ, ଶେଷରେ ସେ ମଧ୍ୟ ସନ୍ଦେହର ପାତ୍ର ହୋଇ ଗଲେଣି କି ? ଏହିପରି ନାନା ସ୍ରୋତ ପ୍ରତିସ୍ରୋତ ତାଙ୍କ ମନରେ କାର୍ଯ୍ୟକଲା, ସେ ଯେପରି ଖୋଲା ମନରେ କଥା କହୁଥିଲେ ତା' ଆଉ ରହିଲା ନାହିଁ । ସେ ଗମ୍ଭୀର ହୋଇଗଲେ । ଢଙ୍ଗି ରଖି ସବୁ କହିବା ପାଇଁ ଚେଷ୍ଟା କଲେ । "ସେ ବଙ୍ଗାଳି ଟୋକାଙ୍କ ସଙ୍ଗରେ ମୋର ବେଶୀ କିଛି କଥାବାର୍ତ୍ତା ହୋଇ ନାହିଁ । ମୁଁ ଯାଇଥିଲି ମୋର ବନ୍ଧୁମାନଙ୍କୁ ମୋର ବର୍ତ୍ତମାନ ପରିସ୍ଥିତି ବୁଝାଇ ଦେବାପାଇଁ ।" ଏତିକି କହି ସେ ନୀରବ ହେଲେ ନାହିଁ, କହିବାରେ ଲାଗିଲେ "ଏକ ସମୟରେ ଆମେ ବିପ୍ଳବର ପରିକଳ୍ପନା କରିଥିଲୁ, କିନ୍ତୁ ଶରତର ଘରର ଅସୁବିଧା ହେତୁ ସେ ଛାଡ଼ିଗଲା । ଜଗଦୀଶର ମନ ଆଧ୍ୟାତ୍ମ ଆଡ଼କୁ ଗତିକଲା । ମୁଁ ରହିଗଲି ରାଜନୀତିରେ । ରାଜନୀତି କହିଲେ ତ ନିର୍ବାଚନ । ନିର୍ବାଚନରେ ଯେଉଁ ଦଳ ଜିତିଲା, ସେହି ଦଳ ସହିତ ମିଶି ସ୍ରୋତ ସହିତ ଗତି କରିବା ବିଧେୟ ବୋଲି ମୁଁ ମନେକଲି । ଦୈବେ ତ ମୋ ନିଜଲୋକ ମନ୍ତ୍ରୀ, ସେ ମୋତେ ଛାଡ଼ୁ ନାହିଁ, ଏଇତ ଅବସ୍ଥା—ଏ ସବୁକୁ କୌଣସି ପ୍ରକାର ଗୁରୁତ୍ୱ ଦେବା ଠିକ୍

ନୁହେଁ ।" ଡ଼ି. ଆଇ: ଜି: ଅଳ୍ପ ହସିଲେ, ଧୀରେ ଧୀରେ କହିଲେ—"ଛୋଟ ଛୋଟ ପାଣିଧାର ତ ମିଶି ବଡ଼ ବଡ଼ ନଦୀ ହୋଇଯାଏ । ଝିମିଟି ଖେଳରୁ ମହାଭାରତ ଯୁଦ୍ଧ ଲାଗିଥିଲା । ଏ ସବୁକୁ ଆମେ ଛୋଟ ବୋଲି ମନେ କରୁନାହୁଁ । ଛୋଟ ଛୋଟ କଥାକୁ ମୂଳରୁ ଦବେଇ ଦେଲେ ଆଉ ବଡ଼ ବଡ଼ କଥା ଘଟିବ ନାହିଁ । ଆପଣଙ୍କୁ ତ କହିବାକୁ ହେବ ସେ ବଙ୍ଗାଳି ଯୁବକଙ୍କ ମତିଗତି ସମ୍ପର୍କରେ ।" ଡ଼ି: ଆଇ: ଜି:ଙ୍କ ସ୍ୱର ପରିବର୍ତ୍ତନ ଦେଖି ବାଞ୍ଛକୃଷ୍ଣ ମନେ କଲେ ତାଙ୍କୁ କିଛି କହିବାକୁ ହେବ, ସେ କହିଲା ନ କହିଲା ପରି ହୋଇ ଅସ୍ପଷ୍ଟ ସ୍ୱରରେ କହିଲେ—"ଅବଶ୍ୟ ସେମାନେ ପୁରାପୁରି ଆଧ୍ୟାତ୍ମବାଦୀ ନୁହନ୍ତି । ଯୁବକ, ପରିବର୍ତ୍ତନର ସ୍ୱପ୍ନ ସେମାନଙ୍କ ମନରୁ ଯାଇ ନାହିଁ, କିନ୍ତୁ ବର୍ତ୍ତମାନ ସେମାନେ ଯୋଗ ସାଧନାରେ ବ୍ରତୀ ।" ଏହି ଉତ୍ତରରେ ସନ୍ତୁଷ୍ଟ ହୋଇ ଡ଼ି. ଆଇ. ଜି. ସଲାମ୍ ବଜାଇ ବିଦାୟ ନେଲେ । ଶେଷାଶ୍ରୟ ପ୍ରତି ବିପଦ ଘନେଇ ଆସୁଛି ସେ ଅନୁଭବ କଲେ । ସେଥିରେ ସେ ନିଜେ ଜଡ଼ିତ ହୋଇଯିବେ ନାହିଁ ତ ?

—୨୭—

କେବିନେଟ୍‌ର ଏକ ଜରୁରୀ ବୈଠକ ଡକା ହୋଇଛି । ହୋମ୍ ଡ଼ିପାର୍ଟମେଣ୍ଟର ଏକ ଅତି ଗୋପନୀୟ ମେମୋରେଣ୍ଡମ୍ ଆଲୋଚିତ ହେବ । ନିୟମ ଅନୁସାରେ କେବିନେଟ୍‌କୁ ପଠା ହୋଇଥିବା ସବୁ ଡ଼ିପାର୍ଟମେଣ୍ଟର ମେମୋରେଣ୍ଡମ୍‌ର ନକଲ କେବିନେଟ୍ ପାହ୍ୟା ମନ୍ତ୍ରୀଙ୍କ ପାଖକୁ ପଠାଯିବାର କଥା, କିନ୍ତୁ ଏ ମେମୋରେଣ୍ଡମ୍‌ର ନକଲ ମୁଖ୍ୟମନ୍ତ୍ରୀ ଓ ଚିଫ୍ ସେକ୍ରେଟେରୀ କୌଣସି ମନ୍ତ୍ରୀଙ୍କ ପାଖକୁ ନ ପଠାଇ ସେମାନଙ୍କୁ ଜଣ ଜଣ କରି ଡ଼ାକି ମେମୋରେଣ୍ଡମ୍‌ର ସାରମର୍ମ କହି ଦେଲେ । ପ୍ରଫୁଲ୍ଲଙ୍କୁ ମଧ୍ୟ ମେମୋରେଣ୍ଡମ ବିଷୟ କହିବାକୁ ହେଲା । ବିଷୟଟି ଶୁଣି ପ୍ରଫୁଲ୍ଲ ଗମ୍ଭୀର ହୋଇଗଲେ । କିଛିକ୍ଷଣ ନୀରବ ରହି ନମ୍ର ଭାବରେ କହିଲେ, "ମେମୋରେଣ୍ଡମ୍‌ଟିକୁ ମୁଁ ଦେଖିପାରେ କି ?" ମୁଖ୍ୟମନ୍ତ୍ରୀ ଇତଃସ୍ତତ ହେଲେ । ଜଣେ ସହମନ୍ତ୍ରୀଙ୍କୁ ବିଶ୍ୱାସ ନ କରିବା ଯେ କେବଳ ଭଦ୍ରତା ବିରୁଦ୍ଧ ତା' ନୁହେଁ ସହଯୋଗରେ କାମ କରିବା ମଧ୍ୟ କଷ୍ଟକର ହେବ । କିନ୍ତୁ କୌଣସି କାରଣରୁ ପ୍ରଫୁଲ୍ଲଙ୍କୁ

ସମସ୍ତ ବିଷୟଟି ଜଣାଇବା ସମୀଚୀନ ହେବ ନାହିଁ ବୋଲି ମୁଖ୍ୟମନ୍ତ୍ରୀ ଭାବିଲେ । ଅଳ୍ପ ହସିଦେଇ କହିଲେ, "ସମୟାନୁସାରେ ଦେଖିବେ । କିନ୍ତୁ ଏହା ଅତି ଗୋପନୀୟ । ଏପରିକି ସେକ୍ରେଟେରିଏଟ୍‌ର ଅନ୍ୟ କେହି ସେକ୍ରେଟେରି ବା କେହି ଆସିଷ୍ଟାଣ୍ଟ ମଧ୍ୟ ଏହା ଜାଣନ୍ତି ନାହିଁ । ଆଇ.ଜି. ନିଜେ ଆସି ହାତରେ ଚିଫ୍ ସେକ୍ରେଟେରୀଙ୍କୁ ଦେଲେ । ସାଧାରଣ ବିଭାଗର ଷ୍ଟେନୋଗ୍ରାଫର୍ ଦ୍ୱାରା ସାଇକ୍ଲୋଷ୍ଟାଇଲ୍ ନ କରାଇ ସ୍ପେଶାଲ୍ ସେକ୍‌ସନ୍‌କୁ ପଠାଇ ନିଜେ ଛିଡ଼ା ହୋଇ ମାତ୍ର ଦଶଟି କପି କରାଇ ମୋତେ ଆଣି ହାତରେ ଦେଲେ । ଅତି ଗୋପନୀୟ ଏ ବିଷୟ । ଘୁଣାକ୍ଷରେ ଏହା ପ୍ରକାଶ ପାଇଗଲେ ଯେଉଁ ମସ୍ତବଡ଼ ଷଡ଼ଯନ୍ତ୍ରଟି ଧରାପଡ଼ିଛି, ତାହା ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ବିଫଳ ହୋଇଯିବ । କିଛି ମନେ କରିବେ ନାହିଁ । ଏଥିରେ ଆପଣ ଟିକିଏ ଅସାବଧାନ ହେଲେ ନିଜେ ଜଡ଼ିତ ହୋଇଯିବେ ।" (ଏଣକୁ ତେଣକୁ ଅନାଇ କହିବେ କି ନ କହିବେ ହୋଇ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ) "ସରକାରି କାମରେ କୌଣସି ମନ୍ତ୍ରୀ ତାଙ୍କ ନିଜ ଭାଇବନ୍ଧୁ ଆଦିଙ୍କୁ ସବୁକଥା କହିବା ବା ସେମାନଙ୍କୁ ଅତି ବିଶ୍ୱାସ କରିବା ଠିକ୍ ନୁହେଁ ।" ଏତିକି ଶୁଣିବା ପରେ ପ୍ରଫୁଲ୍ଲ ଭାବିଲେ ତାଙ୍କ ଭାଇ ଯେ ସରକାରି ଫାଇଲ୍ ସୁଦ୍ଧା ଦେଖୁଛନ୍ତି, ତାହାକୁ ହିଁ ମୁଖ୍ୟମନ୍ତ୍ରୀ ଲକ୍ଷ୍ୟ କରି କହୁଛନ୍ତି । ମୁଖ୍ୟମନ୍ତ୍ରୀଙ୍କର ଏ ଧାରଣା ଦୂର କରିବା ପାଇଁ ପ୍ରଫୁଲ୍ଲ ବ୍ୟଗ୍ର ହୋଇ କହିଲେ, "ଆପଣ ଭାବୁଥିବେ ମୋ ଭାଇ ବାଳକୃଷ୍ଣ ବାବୁଙ୍କୁ ମୁଁ ଅତି ବିଶ୍ୱସ୍ତ ମନେକରି ସରକାରି କାମରେ ହସ୍ତକ୍ଷେପ କରିବାକୁ ଦେଉଛି ବା ନୁହେଁ । ଭାଇ ହେଲେ ମଧ୍ୟ ମୁଁ ତାଙ୍କୁ ଟିକିଏ ଦୂରରେ ରଖିଥାଏ । କେବଳ ତାଙ୍କର ଜନପ୍ରିୟତାର ସୁଯୋଗ ନେବା ପାଇଁ ଚେଷ୍ଟାକରେ ।" ମୁଖ୍ୟମନ୍ତ୍ରୀ ଆଉ କିଛି ନ କହି କେବଳ କହିଦେଲେ "ଆଛା ହେଉ, କେବିନେଟ୍ ମିଟିଂରେ ତ ସେ ମେମୋରେଣ୍ଡମ୍ ଆଲୋଚିତହେବ । ଦୁଇଦିନ ପରେ କେବିନେଟ୍ ମିଟିଂ ବସୁଛି। ସେଇଠି ସବୁ ଜାଣିବେ ।"ପ୍ରଫୁଲ୍ଲ ସନ୍ଦିଗ୍ଧ ମନରେ ଫେରି ଆସିଲେ । ଭାବିଲେ କଅଣ ବିଷୟଟି ହୋଇପାରେ । ସେ ବିଷୟ ସହିତ ତାଙ୍କ ଭାଇଙ୍କର ଯେ ସମ୍ବନ୍ଧ ଅଛି, ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । କାରଣ ସେ ନିଜେ ସଫେଇ ଦେଲା ପରେ ମୁଖ୍ୟମନ୍ତ୍ରୀ ଆଉ କିଛି କହିଲେ ନାହିଁ । ଆସିଲେ କୋଠିକି, ବାଳକୃଷ୍ଣଙ୍କୁ ସବୁ କଥା କହିଲେ । ବାଳକୃଷ୍ଣଙ୍କ ମନରେ ତ

ସନ୍ଦେହ ଜାତ ହେଲଣି ସେଦିନୁ ଯେବେ ଡ଼ି. ଆଇ, ଜି. ଆସି ତାଙ୍କୁ ପଚରା ପଚରି କରି ଗଲେଣି । ତାଙ୍କର କଲିକତା ଯିବା, ସନ୍ନ୍ୟାସୀ ଓ ଶଶିକାନ୍ତଙ୍କ ସହ କଥା, ଶେଷାଶ୍ରୟରେ ବଙ୍ଗାଳି ଯୁବକ ଏ ସବୁ ଯେ ଏକ ସନ୍ଦେହ ଜନକ ପରିସ୍ଥିତି ସୃଷ୍ଟି କରିଛି, ଏପରି ଅନୁମାନ କରିବା ବାଳକୃଷ୍ଣଙ୍କ ପକ୍ଷରେ ସ୍ୱାଭାବିକ । କିନ୍ତୁ ଏହା ଉପରେ ଯେ କୌଣସି ଗୁରୁତ୍ୱ ଆରୋପ କରଯାଉଛି—ତା' ସେ ମନେ କଲେ ନାହିଁ ତଥାପି ଭାବିଲେ ଆଗରୁ ସତର୍କ ହେବା ଆବଶ୍ୟକ । ତାଙ୍କ ନିଜ ପାଇଁ ସେ ଚିନ୍ତିତ ନ ଥିଲେ । କାରଣ ଶାସନ କ୍ଷେତ୍ରରେ ତାଙ୍କର ଯେଉଁ ପ୍ରଭାବ, ସେଥିରେ ତାଙ୍କର କେଶ ସୁଦ୍ଧା କେହି ସ୍ପର୍ଶ କରିପାରିବେ ନାହିଁ । କିନ୍ତୁ ଶରତ ଓ ଜଗଦୀଶର କୌଣସି ଅନିଷ୍ଟ ଘଟି ଯାଇପାରେ । ପୋଲିସ ତ ପୋଲିସ, ରାଧାନାଥ ରାୟଙ୍କ ସମୟରୁ ସେମାନେ ବିନା ମେଘେ ସୃଷ୍ଟି କରନ୍ତି କୁଳୀଶ । ପ୍ରଫୁଲ୍ଲକୁ ସାବଧାନ କରାଇ ଦେଇ କହିଲେ, "ମେମୋରେଣ୍ଡମ୍‌କୁ ଭଲ କରି ପଢ଼ି ଦେଖିବୁ ସେଥିରେ ପୋଲିସର କିଛି କାରସାଦି ଅଛି କି ନାହିଁ । ଦୁଃଖର ବିଷୟ ସ୍ୱାଧୀନତା ପରେ ମଧ୍ୟ ପୋଲିସର ମତିଗତି ବଦଳି ନାହିଁ । ସେ ସର୍ଭିସ୍‌ଟି ଖାଲି ମିଛରେ ପହଁରୁଛି । ତୁ ଦୃଢ଼ ଭାବରେ ତୋ ମତ ଦେବୁ । ଭଲ ହେବ ଯଦି ତୁ ବିଚାର ପାଇଁ ସମୟ ନେବୁ, ମେମୋରେଣ୍ଡମ୍‌ର ନକଲ ଆଣିଲେ ମୁଁ ଦେଖିବି କେଉଁଠି ସବୁ ପେଞ୍ଚ ପାଞ୍ଚ ଅଛି ।" ପ୍ରଫୁଲ୍ଲ କିଛି ନ କହି ନୀରବରେ ସବୁ ଶୁଣିଗଲେ କିନ୍ତୁ ମନ ଗଭୀର ସନ୍ଦେହରେ ଆନ୍ଦୋଳିତ ।

ବାଳକୃଷ୍ଣ ଅଜୟକୁ ପଠାଇ ଶରତକୁ ଡକାଇଲେ । ଜଗଦୀଶ୍ ପୁରୀ ଛାଡ଼ି ଆସିବ ନାହିଁ । ତେଣୁ ସେ ନିଜେ ପୁରୀ ଯିବେ । ସର୍କିଟ୍ ହାଉସ୍‌ରେ ରହିବେ ନାହିଁ । ସମୁଦ୍ର କୂଳରେ ଯେଉଁ ପାନ୍ଥଶାଳା ଅଛି ସେଠି ରହିବେ । ସେଠିକି ଡକାଇବେ ଜଗଦୀଶ୍‌କୁ ଏବଂ ଶରତ ମଧ୍ୟ ସେଇଠିକି ଆସିବ । ମଝିରେ ଦିନେ ସମୟ ଦେଇ ତା' ପରଦିନ ସମସ୍ତେ ସେଇଠି ଏକତ୍ର ହେବାର ସ୍ଥିର କଲେ ବାଳକୃଷ୍ଣ । ସମୁଦ୍ର କୂଳର ପାନ୍ଥଶାଳା ପର୍ଯ୍ୟଟକମାନଙ୍କର ଅବସ୍ଥାନ ପାଇଁ ଉଦ୍ଦିଷ୍ଟ । ସେଠି ବହୁ ବିଦେଶୀ ପର୍ଯ୍ୟଟକ ମଧ୍ୟ ଆସନ୍ତି । ଜଣେ ସି. ଆଇ. ଡ଼ି,

ଅଫିସର୍ ଜଣେ ପର୍ଯ୍ୟଟକ ହିସାବରେ ବରବର ସେଇଠି ଖାଇ ପିଇ ରହୁଛନ୍ତି । କିନ୍ତୁ ସ୍ଥାନଟି ନିର୍ଜନ, ଶାନ୍ତିପୂର୍ଣ୍ଣ । ରହିଲେ ଚିତ୍ତ ପ୍ରଶାନ୍ତି ଅନୁଭୂତ ହୁଏ । ସଂସାରର ନାନା ଝଂଝଟରୁ ମନକୁ ଟିକେ ଅବସର ମିଳେ । ଉପର ତାଲ ଏକପାଖ ପ୍ରକୋଷ୍ଠରେ ଏକତ୍ର ହେଲେ ତିନି ବନ୍ଧୁ । ଏକଦା ଅନ୍ତରଙ୍ଗ, ବର୍ତ୍ତମାନ ବିଭିନ୍ନ ପଥର ପଥିକ । ସେଠି ଆଗରୁ ଆସି ବାଳକୃଷ୍ଣ ଥିଲେ । ପରେ ଶରତ ଆସିଲେ । ଶେଷରେ ଜଗଦୀଶ । ଜଗଦୀଶ ପହଞ୍ଚିଯାଇ ହସି ହସି କହିଲେ, "ଦୁନିଆଟା ତ ପାନ୍ଥଶାଳା, ଅଳ୍ପକାଳ ପାଇଁ ଲୋକେ ଆସୁଛନ୍ତି ଯାଉଛନ୍ତି, ବନ୍ଧୁ ବାନ୍ଧୁଛନ୍ତି ପୁଣି ଛାଡ଼ି ଯାଉଛନ୍ତି । ଏହାକୁହିଁ ଆମସ୍ତରରେ ଦର୍ଶାଇବା ପାଇଁ ଏ ସ୍ଥାନ ନିରୂପଣ କଲୁକି ବାଳକୃଷ୍ଣ ?" ବାଳକୃଷ୍ଣ ହସି କହିଲେ, "ରଖ୍ ତୋ ଦର୍ଶନ, ଏକ ଗୁରୁତର ବିଷୟ ତୁମ ସବୁଙ୍କୁ ଜଣାଇ ଦେବାକୁ ମୁଁ ଡାକିଛି । ଶରତ ଓ ମୁଁ କଲିକତା ଯାଇଥିଲୁ, ସେଠି ଯାହା ସହିତ ଯାହା କଥା ହୋଇଥିଲା ସବୁ ସେଠା ସି. ଆଇ. ଡ଼ି ଏଠିକି ଜଣାଇ ଦେଇଛି । ସେଠିତ ସବୁ ସି. ଆଇ. ଡ଼ି. ସହିତ ସଂପୃକ୍ତ ବୋଲି ମୋର ମନେ ହେଉଛି । ଶରତ, ତୋର ମନେ ଅଛି ସେଭୟେ ହେଟେଲ୍‌ରେ ସେ ବଙ୍ଗାଳି ଶଶିକାନ୍ତ କଥା, ସେଟା ଜଣେ ସି. ଆଇ. ଡ଼ି. ଅଫିସର । ତା'ସହିତ ଯାହା କଥାବାର୍ତ୍ତା ହେଲା ସେ ସବୁ ରିପୋର୍ଟ ପଠାଇ ଦେଇଛି । ପୁଣି ସେ ସନ୍ୟାସୀ, ସେ ତ ଏକ ରହସ୍ୟ, ସେ ଯାହା କହିଲେ ସି: ଆଇ: ଡ଼ି: ରିପୋର୍ଟ କରିଛନ୍ତି, ପୁଣି ଶେଷ ଆଶ୍ରୟକୁ ଯେଉଁ ବଙ୍ଗାଳି ଯୁବକ ଦୁଇଜଣ ଆସିଛନ୍ତି, ସେମାନଙ୍କ ଇତିବୃତ୍ତି ମଧ୍ୟ କଲିକତା ସି: ଆଇ: ଡ଼ି: ପଠାଇ ଦେଇଛି । ଏଥି ପ୍ରତି ସାବଧାନ ହେବା ଆବଶ୍ୟକ । ମୋ କାନକୁ ଏ ସବୁ କଥା ଆସିଲା ପରେ ମୁଁ ଭାବିଲି ତୁମକୁ ଜଣାଇ ଦେବି ।" କଥାଟାକୁ ଗୁରୁତ୍ୱ ନ ଦେଇ ଜଗଦୀଶ କହିଲେ, "କଅଣ କରିବେ ସି: ଆଇ: ଡ଼ି. ? କରି କରି ତ ଧରିନେଇ ଜେଲ୍ ଦେବେ, ଆଉ କରିବେ କଅଣ ?" ଶରତ ଅତି ଗମ୍ଭୀର ସ୍ୱରରେ କହିଲେ, "ତୁ ତ ଘରି ଦଉଡ଼ି କାଟି ଦେଇଛୁ । ତୋ'ର କ'ଣ ଅଛି ?" ଜଗଦୀଶ— "ତୋର ଆଉ କି ଦଉଡ଼ି ଅଛି କି ? ଏଠି ମଠରେ କୀର୍ତ୍ତନ କରୁଛୁ । ସେଠି ଜେଲ୍‌ରେ କୀର୍ତ୍ତନ କରିବୁ ।" ବିଷୟଟାକୁ ଗୁରୁତ୍ୱ ଦେଉନାହାନ୍ତି ଦେଖି ବାଳକୃଷ୍ଣ ଗମ୍ଭୀର ହୋଇଯାଇ କହିଲେ— ଏ କଥାଟାକୁ ଏପରି

ଫାଲକା ମନେ କରନାହିଁ । ମୁଁ କେଉଁଠୁ ସବୁ ଜାଣିଲି ବୁଝି ପାରୁଥିବ । ବିଷୟଟା ଗୁରୁତ୍ୱପୂର୍ଣ୍ଣ ଆକାର ଧାରଣ କରିଛି । ମୋର ପରମର୍ଶ ହେଉଛି—ତୁମେ ଘୋଷଣା କରିଦିଅ—"କୌଣସି ହିଂସାତ୍ମକ କାର୍ଯ୍ୟ ସହିତ ତୁମର ସମ୍ପର୍କ ନାହିଁ । ଆଉ ସେ ବଙ୍ଗାଳୀ ଯୁବକଦ୍ୱୟଙ୍କୁ ବିଦା କରିଦିଅ । ଅଯଥା ଜଟିଳତା ସୃଷ୍ଟି କରିବା ବିଜ୍ଞତା ନୁହେଁ ।" ଶୁଣିଲା ମାତ୍ରେ ଜଗଦୀଶଙ୍କ ତୀବ୍ର ପ୍ରତିକ୍ରିୟା ହେଲା । "ସେ ବଙ୍ଗାଳି ଯୁବକଙ୍କ ପାଇଁ ଯଦି କିଛି ହୁଏ, ମୋର ହେବ ନା, ତୁମର ସେଥିରେ କଣ ଅଛି ?" ଏଥିରେ ଶରତ ସମ୍ମତ ହୋଇ କହିଲେ "ବାସ୍ତବିକ୍ ଶେଷାଶ୍ରୟ ବା ସେ ବଙ୍ଗାଳି ଯୁବକ ବା ଏପରିକି ଜଗଦୀଶ ସହିତ ମୋର ବା ସମ୍ପର୍କ କଅଣ ? ବାଳକୃଷ୍ଣ ସମ୍ପର୍କ ଆମର ପୂର୍ବ ବନ୍ଧୁତ୍ୱ । ସଂସ୍କାର ତ ଜନ୍ମ ଜନ୍ମ ଧରି ଚାଲେ ବୋଲି ଆଧ୍ୟାତ୍ମବାଦୀମାନେ କହନ୍ତି । ଏ ଜନ୍ମର ଯେ ଆମ ପୂର୍ବସଂସ୍କାର, ସେତ ଆମ ପିଛା ଧରିଛି ।" "ଏ ଏକ ଅହେତୁକ ଭୟ । ଅବସନ୍ନ ମନର ପ୍ରତିକ୍ରିୟା, ଏଇଥି ପାଇଁ ଡକାହକା କରି ଏଠି ଏକତ୍ର ଜଗଇଥିବାରୁ ଜଣାଯାଉଛି ତୁ ନିଜେ ଭୟଗ୍ରସ୍ତ ।" ବାଳକୃଷ୍ଣ ବାଧାଦେଇ କହିଲେ, "ମୁଁ ମୋ ସ୍ଥାନରେ ନିରପଦ । ତୁମ ଦୁଇ ଜଣଙ୍କ ପାଇଁ ମୁଁ ଚିନ୍ତିତ ।"

ଜଗଦୀଶ୍—ଏ ଦୁଇଜଣଙ୍କୁ ମୋତେ ବାଦ୍ ଦେ ।

ଶରତ—ବାକି ରହିଲି ମୁଁ । ମୋ ପାଇଁ ଭବିବାର କିଛି କାରଣ ନାହିଁ । ବାଳକୃଷ୍ଣଙ୍କ ଦୟାରୁ ମୁଁ ଘର ଚିନ୍ତାରୁ ମୁକ୍ତ ।

ବାଳକୃଷ୍ଣ—ବାସ୍ତବିକ୍ ଦୁଃଖର ବିଷୟ, ତୁମେ ମୋ କଥାକୁ ଗୁରୁତ୍ୱ ଦେଉ ନାହଁ । ମୋର ଅଭିଜ୍ଞତାରୁ ମୁଁ ସୂଚନା ପାଇଲି ଯାହା ଘଟିବା ସମ୍ଭବ । ତେଣୁ ମୁଁ କେତୋଟି ପ୍ରତିଷେଧକ ବ୍ୟବସ୍ଥା ପାଇଁ ପରାମର୍ଶ ଦେଲି । ଭଲ କରି ଭବ । ତୁମେ ସବୁ ଜେଲ୍‌କୁ ଯିବ ଆଉ ମୁଁ ମନ୍ତ୍ରୀ ସାଙ୍ଗରେ ବୁଲୁଥିବି । ଏହା କଅଣ ତୁମ୍ଭେମାନେ ଚାହୁଁଛ ? ମୁଁ ତ ଶାସନ ସହିତ ମିଶିଛି, ତୁମ୍ଭମାନଙ୍କୁ ଯଥାସାଧ୍ୟ

ସାହାଯ୍ୟ କରିବା ପାଇଁ, ଘର ବ୍ୟାପାରରେ ହେଉ ବା ସାଧାରଣ କାର୍ଯ୍ୟରେ ହେଉ ମୋତେ ଅନ୍ତୁଆରେ ପକାଇଦେଲେ ତୁମର ଲାଭ ବା କଅଣ ହେବ । ତୁମେ ଜେଲ୍‌ରେ ରହିଥିବ, ମୁଁ ଶାସନ ସହିତ ଯୋଡ଼ି ହୋଇ ରହିଥିବି । ଏଥିରେ ମୋର ଆଉ ସମ୍ମାନ ରହିବ ? ଲୋକେ ତ ଛିଛିକାର କରିବେ ।”

ଶରତ ପୂର୍ବପରି ବାଳକୃଷ୍ଣଙ୍କ ସହିତ ଆଉ ସମାନ ସ୍ତରରେ ଯୁକ୍ତି ତର୍କ କରିପାରୁନାହାନ୍ତି । କାରଣ ସେ ଉପକୃତ ଆଉ ବାଳକୃଷ୍ଣ ଉପକାରୀ, କିନ୍ତୁ ଜଗଦୀଶ ଛାଡ଼ିଲାବାଲା ନୁହଁନ୍ତି । ସେ ଯୁକ୍ତି କଲେ, “ତା’ହେଲେ ତୁ କହୁଛୁ ତୁ ଯାହା କରୁଥା, ଯେଉଁଠି ଥାଆ ପଛକେ ତୋର ମାନ ସମ୍ମାନ ରକ୍ଷା ପାଇଁ ତୋର ବନ୍ଧୁମାନେ ସେମାନଙ୍କ ମତାମତ ଛାଡ଼ି ସେମାନଙ୍କର ସମସ୍ତ କାର୍ଯ୍ୟକ୍ରମ ତୋତେ ସୁହାଇଲା ଭଳି ସ୍ଥିର କରିବେ । ଏତ ଏକ ଅତି ଚତୁର ସ୍ୱାର୍ଥପରତା ।” ବାଳକୃଷ୍ଣ ଚୁପ୍ ହୋଇଗଲେ । ସେଦିନ କଥା ଛିଡ଼ିଲା ନାହିଁ । ପୁଣି ପରଦିନ ସନ୍ଧ୍ୟାରେ ବସିବାର ସ୍ଥିର ହେଲା । ଶରତ ରହିଲେ ସେହି ପାନ୍ଥଶାଳାରେ । ଜଗଦୀଶ୍ ଗଲେ ଶେଷାଶ୍ରୟକୁ ।

—୨୮—

ଭୁବନେଶ୍ୱର ସେକ୍ରେଟେରୀଏଟ୍‌ରେ କେବିନେଟ୍ ମିଟିଂ ବସିଛି, କେବିନେଟ୍ ପାହ୍ୟା ମନ୍ତ୍ରୀ ସମସ୍ତେ ଉପସ୍ଥିତ । ଅଫିସର୍‌ମାନଙ୍କ ମଧ୍ୟରେ କେବଳ ଚିଫ ସେକ୍ରେଟେରୀ ଏବଂ ସ୍ୱତନ୍ତ୍ର ଭାବେ ଆଦିଷ୍ଟ ହୋଇ ପୋଲିସ୍ ଆଇ. ଜି. ବସିଛନ୍ତି । ମୁଖ୍ୟମନ୍ତ୍ରୀ ଟେବୁଲ୍ ଡ୍ରୟାର୍‌ରୁ ଏକ ବଡ଼ ଲଫାପା ଭିତରେ ଥିବା ପାଞ୍ଚ ପୃଷ୍ଠାର ଏକ ମେମୋରେଣ୍ଡମ୍ ବାହାର କଲେ । ପ୍ରଫୁଲ୍ଲ ଯାହା ଏ ମେମୋରେଣ୍ଡମ୍‌ର ସାର ମର୍ମ ଜାଣିଥିଲେ, ଅନ୍ୟ ମନ୍ତ୍ରୀମାନେ କେହି ଏହାର ବିଷୟବସ୍ତୁ ସମ୍ବନ୍ଧରେ ଅବଗତ ନ ଥିଲେ । ମେମୋରେଣ୍ଡମ୍ ପଢ଼ିଦେବା ପୂର୍ବରୁ ମୁଖ୍ୟମନ୍ତ୍ରୀ ମନ୍ତ୍ରୀମାନଙ୍କୁ ସୂଚେଇ ଦେଇ କହିଲେ, “ଏହା ଏକ ଅତି ଗୁରୁତ୍ୱପୂର୍ଣ୍ଣ ବିଷୟ । ଏ ବିଷୟର ନିଷ୍ପତ୍ତି ଉପରେ ନିର୍ଭର କରେ ଆମର ସମାଜବାଦର କାର୍ଯ୍ୟକ୍ରମ । ପ୍ରତିକ୍ରିୟାଶୀଳ

ଗୋଷ୍ଠୀ ବର୍ତ୍ତମାନ ଘୁରିଆଡ଼ୁ ଘେରିଗଲେଣି । ଏପରିକି ଆମରି ଦଳ ଭିତରେ ମନ୍ତ୍ରୀମଣ୍ଡଳରେ ମଧ୍ୟ ସେ ଶକ୍ତିର ପ୍ରଭାବ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ କାର୍ଯ୍ୟ କରୁଛି । ଦୃଢ଼ ହସ୍ତରେ ଏହାକୁ ଦମନ ନ କଲେ ଚଳିବ ନାହିଁ । ଏଥିରେ ବ୍ୟକ୍ତିଗତ ବନ୍ଧୁତା ବା କୌଣସି ବ୍ୟକ୍ତିଗତ ବିଗ୍ରହ କାର୍ଯ୍ୟ କରିବା ଅନୁଚିତ । ମୋତେ ବର୍ତ୍ତମାନ ଦୃଢ଼ ପଦକ୍ଷେପ ନେବାକୁ ହେବ । ଆପଣମାନଙ୍କ ସହଯୋଗ ମୋର ଆବଶ୍ୟକ । କୌଣସି କାରଣରୁ ଯଦି ଆପଣମାନଙ୍କ ମଧ୍ୟରୁ କେହି ସହଯୋଗ କରିବାକୁ କୁଣ୍ଠିତ ହୁଅନ୍ତି, ସେମାନେ ତେବେ......ମାନେ, ମାନେ ବିଦାୟ ନିଅନ୍ତୁ । ଅନ୍ୟଥା–(ନୀରବ ରହିଯାଇ) । ସେମାନଙ୍କୁ ଛାଡ଼ି ମୋତେ ଆଗକୁ ଯିବାକୁ ହେବ । ବିଷୟଟି ଅତି ଗୁରୁତ୍ୱପୂର୍ଣ୍ଣ ନ ହୋଇଥିଲେ ମୁଁ ଏପରି ଅତି କର୍କଶ ଭାଷା ବ୍ୟବହାର କରି ନ ଥାନ୍ତି ।" ତା'ପରେ ମେମୋରେଣ୍ଡମ୍ ପାଠ କଲେ । ଏହାର ନକଲ ପ୍ରତ୍ୟେକ ମନ୍ତ୍ରୀଙ୍କୁ ଦିଆ ହେଲା ଏବଂ କହି ଦିଆହେଲା ପଢ଼ିସାରି ସମସ୍ତେ ଚିଫ୍ ସେକ୍ରେଟେରୀଙ୍କୁ ଫେରେଇ ଦେବେ । ମୁଖ୍ୟମନ୍ତ୍ରୀ ଉଚ୍ଚସ୍ୱରରେ ପଢ଼ୁଥାନ୍ତି । ଅନ୍ୟମାନେ ତଦନୁସାରେ ନିଜ ନିଜ ଆଗରେ ଥିବା ନକଲକୁ ମନେ ମନେ ପଢ଼ିଯାଉଥାନ୍ତି । ମେମୋରେଣ୍ଡମ୍‌ର ସାରମର୍ମ ହେଉଛି ଏ ପର୍ଯ୍ୟନ୍ତ ପାଠକମାନେ ଯେଉଁ ଘଟଣା ପଢ଼ିଆସିଛନ୍ତି ତାହାରି ପୋଲିସ୍ ଭାଷ୍ୟ ।

"ବିଗତ ମନ୍ତ୍ରୀମଣ୍ଡଳ ଗଠନ ସମୟରୁ ହରିଚରଣଙ୍କ ଆଚରଣ ସରକାର ବିରୋଧି ଥିବାରୁ ତାଙ୍କୁ ମନ୍ତ୍ରୀ ମଣ୍ଡଳରୁ ବହିଷ୍କାର କରାଗଲା । ଆଉ ମଧ୍ୟ ତାଙ୍କୁ ଶାସକ ଦଳରୁ ବହିଷ୍କାର କରାଗଲା । ମନ୍ତ୍ରୀ ଥିବା ସମୟରେ, ପୁରୀରେ ଏକ ଶେଷାଶ୍ରୟ ନାମକ ଆଶ୍ରମ ଅଛି. ତା' ସହିତ ସେ ଗୋପନରେ ସମ୍ପର୍କ ରଖିଥିଲେ । ଶେଷାଶ୍ରୟ ପ୍ରକୃତରେ ଏକ ଆଶ୍ରମ ନୁହେଁ ବା ମଠ ନୁହେଁ । ବଙ୍ଗୀୟ ବିପ୍ଳବୀମାନଙ୍କର ସେ ଏକ ଆଡ୍ଡା । ସେ ଆଶ୍ରୟକୁ ପରିଚାଳିତ କରୁଥିଲେ ଜଣେ ପ୍ରଖ୍ୟାତ ବିପ୍ଳବୀ ସନ୍ନ୍ୟାସୀ ବେଶରେ ରହି କଲିକତାରୁ, ସେ ସନ୍ନ୍ୟାସୀ ଜଣେ ପୂର୍ବତନ ବିପ୍ଳବୀଙ୍କୁ ଓଡ଼ିଶାରେ କ୍ଷେତ୍ର ପ୍ରସ୍ତୁତି ପାଇଁ ପଠାଇଥିଲେ । ତାଙ୍କର ନାମ ସଦାନନ୍ଦ । କିନ୍ତୁ ସେ ସ୍ୱାମିଜୀ ବୋଲି ପରିଚୟ ଦେଲେ । ତାଙ୍କ ସହିତ ଜଣେ

ସ୍ୱାଧୀନତା ସଂଗ୍ରାମୀ ତୁଳସୀ ଆସି ଯୋଗ ଦେଲେ । ସେହି ତୁଳସୀ ଥିଲେ ଶେଷାଶ୍ରୟ ସହିତ ହରିଚରଣର ସଂଯୋଗକାରୀ । ତୁଳସୀ ବଗବର ହରିଚରଣଙ୍କ ପାଖକୁ ସାହାଯ୍ୟ ପାଇଁ ଆସୁଥିଲେ ଏବଂ ସାହାଯ୍ୟ ମଧ୍ୟ ପାଉଥିଲେ । ହରିଚରଣ ବାରମ୍ବାର ଶେଷାଶ୍ରୟକୁ ଯାଇ ଷଡ଼ଯନ୍ତ୍ରର ପରାମର୍ଶ କରୁଥିଲେ । ଘଟଣାକ୍ରମେ ତୁଳସୀର ମୃତ୍ୟୁ ହେଲା । ନ ହୋଇଥିଲେ ସେ ମଧ୍ୟ ଗିରଫ ହୋଇଥାନ୍ତେ । ସ୍ୱାମିଜୀଙ୍କୁ ଗିରଫ କରାଗଲା । ତାଙ୍କର ସମସ୍ତ ଷଡ଼ଯନ୍ତ୍ର ଧରା ପଡ଼ିଯାଇଛି । ଆଉ ରକ୍ଷା ନାହିଁ । ଏଇଥିରେ ତାଙ୍କ ହୃତ୍‌କ୍ରିୟା ବନ୍ଦ ହୋଇଗଲା । ସେ ମରିଗଲେ । ଇତିମଧ୍ୟରେ ବାଳକୃଷ୍ଣଙ୍କ ନେତୃତ୍ୱରେ ଶରତ ଏବଂ ଜଗଦୀଶ୍ ନାମକ ଦୁଇଜଣ ସ୍ୱାଧୀନତା ସଂଗ୍ରାମୀ ଶେଷାଶ୍ରୟର ଷଡ଼ଯନ୍ତ୍ରକୁ ଜାଗି ରଖିବା ପାଇଁ ପୁରୀରେ ବହୁଦିନ ରହି ନିଜ ଭିତରେ ଆଲୋଚନା କରି ସ୍ଥିର କଲେ ଜଗଦୀଶ୍‌କୁ ଶେଷାଶ୍ରୟରେ ରଖାଇବେ । ଜଗଦୀଶ୍ ହରିଚରଣଙ୍କ ସହିତ ସମ୍ପର୍କ ରଖିବ । ସେମାନେ କଲିକତା ଯାଇ ସେଠା ବିପ୍ଳବୀମାନଙ୍କ ସହିତ ସଂଯୋଗ ସ୍ଥାପନ କରିବେ । ପୁରୀ ଗୋଯେଙ୍କା ଧର୍ମଶାଳାରେ ଏହିମାନଙ୍କ ନିଷ୍ପତ୍ତି ଗ୍ରହଣ କରାହେଲା । ତଦନୁସାରେ ଜଗଦୀଶ ହରିଚରଣଙ୍କୁ ଭେଟିଲେ ଏବଂ ତାଙ୍କଠାରୁ ସାହାଯ୍ୟ ପାଇ ସେ ଶେଷାଶ୍ରୟରେ ରହିଲେ । ଶରତ ଏବଂ ବାଳକୃଷ୍ଣ କଲିକତାରେ ସେ ବିପ୍ଳବୀ ସନ୍ୟାସୀ ସହିତ ଦେଖା କରିଥିଲେ । ହୋଟେଲରେ ଏମାନେ ଥିଲେ । ସେଠି ପହଞ୍ଚିବା ପରେ ପରେ ଖୋଜି ବୁଲିଲେ । ବିପ୍ଳବୀମାନଙ୍କ ଅମୃତ । ସେଠି ସେମାନେ ସ୍ଥିର କଲେ ବାଳକୃଷ୍ଣ ଶାସକ ଦଳ ସହିତ ମିଶି ଶାସନର ଭିତରି କଥା ଜାଣିବେ ଓ ଶରତ କୀର୍ତ୍ତନ ମାଧ୍ୟମରେ ଜନସାଧାରଣଙ୍କ ସହିତ ସଂଯୋଗ ସ୍ଥାପନ କରିବେ । କଲିକତାରୁ ସେ ସନ୍ୟାସୀ ପଠାଇ ଦେଲେ ଦୁଇଜଣ ଯୁବକ । ସେମାନେ ଶେଷାଶ୍ରୟରେ ଅଛନ୍ତି । ଛାତ୍ର ଯୁବକମାନଙ୍କୁ ବିପ୍ଳବର କାହାଣୀ ଶୁଣାଉଛନ୍ତି । ସ୍ୱାମିଜୀ ଥିଲାବେଳେ ପ୍ରାୟ ଦୁଇଶହ ଛାତ୍ର ବିପ୍ଳବୀ ହୋଇ ଯାଇଥିଲେ । ଏମାନଙ୍କ ଭିତରୁ କେତେକ କଲେଜର ଅଧ୍ୟାପକ ଓ ପ୍ରିନ୍‌ସପାଲଙ୍କୁ ମଧ୍ୟ ଘେରାଓ କରିଥିଲେ । ମୁଖ୍ୟମନ୍ତ୍ରୀ ଗଲାବେଳେ ଏମାନେ କଳା ପତାକା ଦେଖାଇଥିଲେ । ସେ ଛାତ୍ରମାନଙ୍କ ଭିତରୁ କେତେ ଜଣ ଆଉ ନୂଆ କେତେକ ବର୍ତ୍ତମାନ ଶେଷାଶ୍ରୟରେ ଶିକ୍ଷାପ୍ରାପ୍ତ ହେଉଛନ୍ତି ।

ଇତିମଧ୍ୟରେ ଶେଷାଶ୍ରୟଙ୍କୁ ବାଳକୃଷ୍ଣଙ୍କ ଇଙ୍ଗିତରେ ଶରତ ଯାଇଥିଲେ । ଶରତ ବାଳକୃଷ୍ଣ ଓ ଜଗଦୀଶଙ୍କ ବହୁକ୍ଷଣ ଗୋପନୀୟ ଆଲୋଚନା ହୋଇଥିଲା । ହରିଚରଣ ଏମାନଙ୍କ ଅର୍ଥଦାତା । ସେ ପ୍ରକାଶ୍ୟରେ କହି ବୁଲୁଛନ୍ତି ବ୍ୟାଲଟ୍‌ରେ ସିନା ହାରିଯାଇଛନ୍ତି, ତାର ପ୍ରତିଶୋଧ ନେବେ ବୁଲେଟ୍‌ରେ । ଆଉ ମଧ୍ୟ ଓସେ କହନ୍ତି ସାର୍ମ୍ବିଧା ନିଜ ଉପାୟ ବ୍ୟର୍ଥ ହେଲେ ହିଂସା ହେଉଛି ଶେଷାଶ୍ରୟ । ହରିଚରଣଙ୍କ ସହିତ ଶେଷାଶ୍ରୟର ଗଭୀର ଘନିଷ୍ଠ ସମ୍ପର୍କ । ତାଙ୍କ ସହ ବାଳକୃଷ୍ଣଙ୍କର ମଧ୍ୟ ଘନିଷ୍ଠ ସମ୍ପର୍କ । ସେ ତାଙ୍କ ଦଳଭୁକ୍ତ ଓ ତାଙ୍କ ଦଳ ପକ୍ଷରେ ସେ ନିର୍ବାଚନ ସମୟରେ ବହୁ ସଭରେ ଭାଷଣ ଦେଇଛନ୍ତି । ଶରତ ଆସି ଝାଞ୍ଜପିଟା ମଠରେ ରହନ୍ତି । କାରଣ ସେଠିକି ବହୁ ଲୋକ ଯାଆନ୍ତି କୀର୍ତ୍ତନ ଶୁଣିବା ପାଇଁ । ଉପରେ କୀର୍ତ୍ତନ ଭକ୍ତ ଦେଖେଇ ହୁଅନ୍ତି । ମାତ୍ର ତାଙ୍କର ରାଜ-ନୈତିକ ଉଦ୍ଦେଶ୍ୟ ଜଣା ପଡ଼ିଯାଏ ତାଙ୍କ ଆଚରଣରୁ । ସେ ରାଜନୈତିକ ସଭ ମାନଙ୍କରେ ଆଗରେ ଯାଇ ବସନ୍ତି ।

ସମ୍ବିଧାନ ଅନୁସାରେ ବିଧିଲବ୍ଧ ଭାବରେ ନିର୍ବାଚିତ ମନ୍ତ୍ରୀମଣ୍ଡଳକୁ ବଳପୂର୍ବକ ହଟାଇ ଦେବାପାଇଁ ଯେଉଁ ବିରାଟ ଷଡ଼ଯନ୍ତ୍ର ଚାଲିଛି, ତା'ର ଅନୁସନ୍ଧାନ କରିଛନ୍ତି ଉଚ୍ଚ ସି. ଆଇ. ଡ଼ି. ଅଫିସରମାନେ, ବିଭିନ୍ନ ଅଫିସର ମାନେ, ବିଭିନ୍ନ ଅଫିସରଙ୍କ ରିପୋର୍ଟକୁ ମିଳାଇ ପୁଣି ଅନ୍ୟ ଉଚ୍ଚତର ଅଫିସର୍‌ମାନଙ୍କ ଦ୍ୱାରା ସେ ସବୁର ସତ୍ୟାସତ୍ୟ ନିର୍ଣ୍ଣୟ କରାହୋଇଛି । ଉପସଂହାରରେ କୁହାଯାଉଛି (୧) ଶେଷାଶ୍ରୟଙ୍କୁ ଏକ ବେଆଇନ ଅନୁଷ୍ଠାନ ବୋଲି ଘୋଷଣା କରଯାଉ । (୨) ବଙ୍ଗାଳୀ ଯୁବକଦ୍ୱୟଙ୍କୁ ଓଡ଼ିଶାରୁ ବହିଷ୍କାର କରି ଦିଆଯାଉ । ଏବଂ (୩) ବାଳକୃଷ୍ଣ, ଶରତ, ଜଗଦୀଶ ହରିଚରଣଙ୍କୁ ଆଭ୍ୟନ୍ତରୀଣ ନିରାପତ୍ତା ରକ୍ଷା ଆଇନ ଅନୁସାରେ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଜେଲ୍‌ରେ ରଖା ହେଉ । ଏହା କରା ନ ହେଲେ, ଷଡ଼ଯନ୍ତ୍ର ଯଦି କାର୍ଯ୍ୟରେ ପରିଣତ ହୋଇ ବିଭ୍ରାଟ ସୃଷ୍ଟି କରେ ତେବେ ପୋଲିସ୍ ସେଥିପାଇଁ ଦାୟୀ ହେବ ନାହିଁ ।

ଏହି ହେଲା ମେମୋରେଣ୍ଡମ୍‌ର ସାର ମର୍ମ । ମୁଖ୍ୟମନ୍ତ୍ରୀ ପଢ଼ି ସାରି ମନ୍ତ୍ରୀମାନଙ୍କ ଆଡ଼କୁ ଗ୍ୱହିଁଲେ । ଆଗେ ପଗ୍ୱରିଲେ ପ୍ରଫୁଲ୍ଲଙ୍କୁ ତାଙ୍କର ମତ । ମେମୋରେଣ୍ଡମ୍‌ଟି ପଢ଼ି ପ୍ରଫୁଲ୍ଲଙ୍କ ମୁଣ୍ଡ ଘୁରେଇଗଲା । ସେ ଭାବିପାରିଲେ ନାହିଁ ଏ ବିଷୟରେ କଅଣ କହିବେ । ଚେହେରାରୁ ଜଣାପଡ଼ିଲା, ସେ ସମ୍ପୂର୍ଣ୍ଣ ବିଭ୍ରାନ୍ତ । ମୁଖ୍ୟମନ୍ତ୍ରୀଙ୍କ ପ୍ରଶ୍ନର ଉତ୍ତରରେ ସେ କହିଲେ, "ଏ ତ ମୋତେ ଏକ ଡ଼ିଟେକ୍‌ଟିଭ ଉପନ୍ୟାସ ଭଳି ଲାଗୁଛି । ଭଲ କରି ନ ପଢ଼ିଲେ ଏ ସମ୍ବନ୍ଧରେ ମତ ଦେବା ସମ୍ଭବ ହେବ ନାହିଁ ।" ଅନ୍ୟ ମନ୍ତ୍ରୀମାନେ ଅନୁରୂପ ମତବ୍ୟକ୍ତ କଲେ । ଆଲୋଚନା ଗ୍ୱଲୁ ଗ୍ୱଲୁ ପ୍ରଫୁଲ୍ଲ ଉତ୍ତେଜିତ ହୋଇ କହି ପକାଇଲେ, "ପୋଲିସ ବର୍ତ୍ତମାନ ରାଜ୍ୟ ଚଳାଇବା ପାଇଁ ଗ୍ୱହୁଁଛି । ନିର୍ବାଚିତ ପ୍ରତିନିଧିମାନଙ୍କୁ ଆଗରେ ରଖି ପ୍ରଭାବଶାଳୀ ରାଜନୈତିକ ବ୍ୟକ୍ତିଙ୍କ ସାହାଯ୍ୟ ନେବା କୌଣସି ବିଗ୍ୱରରୁ ଅନ୍ୟାୟ ନୁହେଁ । ବାଳକୃଷ୍ଣ କେବେ ହେଲେ ବିପ୍ଳବ ପନ୍ଥୀ ନୁହଁନ୍ତି । ଏପରିକି ତାଙ୍କ ସଙ୍ଗୀମାନେ କେହି ସେହି ପନ୍ଥୀ ନୁହଁନ୍ତି । ସେମାନେ ଗାନ୍ଧିବାଦୀ । ସେମାନଙ୍କୁ ଅନ୍ୟମାନେ ପରିହାସ କରିଥାନ୍ତି । ସେମାନେ କିନ୍ତୁ ପୋଲିସ୍‌ରାଜ ବିରୋଧୀ । ଏ ହେଲା ପୋଲିସ୍ ରିପୋର୍ଟ । ଏହାକୁ ପରଖିବାକୁ ହେବ ରାଜନୈତିକ ଦୃଷ୍ଟିକୋଣରୁ । କେତେକ ମନ୍ତ୍ରୀ ମତ ଦେଲେ, "ପୋଲିସ୍ ରିପୋର୍ଟ ସବୁବେଳେ ସତ୍ୟ ଉପରେ ପ୍ରତିଷ୍ଠିତ ନୁହେଁ ।" ପ୍ରଫୁଲ୍ଲ ଆଉ ଟିକିଏ ଆଗକୁ ବଢ଼ିଯାଇ କହିଲେ, "ଗଞ୍ଜେଇ ଖଟିରୁ ରିପୋର୍ଟ ସଂଗ୍ରହ କରି ତଳ ଅଫିସରମାନେ ଯାହା ପଠାନ୍ତି କ୍ଲବରେ ମଦନିଶାରେ ଉପର ଅଫିସରମାନେ ଭୋଜରେ ସେଥିରେ ଦସ୍ତଖତ ମାରି ଦିଅନ୍ତି ।" କ୍ରମେ ପ୍ରଫୁଲ୍ଲଙ୍କ ବିଭ୍ରାନ୍ତି କଟିଯାଇ ପୋଲିସ୍ ପ୍ରତିରୋଧ ସୃଷ୍ଟି ହେଲାଣି । ମୁଖ୍ୟମନ୍ତ୍ରୀଙ୍କୁ ଏ ପସନ୍ଦ ଆସୁ ନ ଥାଏ । ସେ ଗ୍ୱହିଁ ଦେଉଥାନ୍ତି ଆଇ. ଜି.ଙ୍କ ଆଡ଼କୁ । ଆଇ. ଜି.ଙ୍କ ମୁଖମଣ୍ଡଳ ଗମ୍ଭୀରରୁ- ଗମ୍ଭୀରତର ହେବାରେ ଲାଗିଛି । କିଛି ନ କହି କେବଳ ସେ କହିଲେ "ଗଭର୍ଣ୍ମେଣ୍ଟ ଯାହା ବିଗ୍ୱର କରି ସ୍ଥିର କରିବେ, କିନ୍ତୁ କିଛି ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହେଲେ, ପୋଲିସକୁ ଆଉ ଦୋଷ ଦେବେ ନାହିଁ ।" ବହୁ ଆଲୋଚନା ପରେ ଯେପରି ସାଧାରଣତଃ ହୋଇଥାଏ, ମନ୍ତ୍ରୀମାନେ ସର୍ବସମ୍ମତିକ୍ରମେ ବିଷୟଟିର ନିଷ୍ପତ୍ତିର ଭାର ମୁଖ୍ୟମନ୍ତ୍ରୀଙ୍କୁ ଛାଡ଼ିଦେଲେ, ମନ୍ତ୍ରୀଗଣ ବିଦାୟ ନେଲେ । ମୁଖ୍ୟମନ୍ତ୍ରୀ, ଆଇ. ଜି., ଚିଫ୍ ସେକ୍ରେଟେରୀ ବହୁକ୍ଷଣ ବସି ନିଜ ନିଜ ଭିତରେ ଆଲୋଚନା କଲେ ।

ସ୍ୱରିତା ବାଜିଲାଣି, ସନ୍ଧ୍ୟାବେଳେ ତିନିଜଣଙ୍କର ପୁଣି ବସି ଆଲୋଚନା କରିବାର ଅଛି । ଇତ୍ୟବସରରେ ବାଳକୃଷ୍ଣ ଓ ଶରତ ପାନ୍ଥଶାଳାର ଉପର ମହଲାରୁ ଓହ୍ଲାଇ, ତଳ ମହଲା ଆଗ ଚଟାଣରେ ପାଇଚାରୀ କରୁଛନ୍ତି, ଦେଖୁଛନ୍ତି ନିକଟରେ ମହାସମୁଦ୍ର । ଅତି ଦୂରରେ ଶାନ୍ତ, ଗଭୀର, କିନ୍ତୁ ନିକଟରେ ଭଉଁଳ ତରଙ୍ଗମାଳ କ୍ରୋଧଭରେ ଧାଇଁ ଆସି କୂଳରେ ପିଟି ହେଉଛନ୍ତି । କୂଳ ଡେଇଁ ଚାଲିଯିବା ପାଇଁ ପ୍ରବଳ ଉଦ୍ୟମ । କିନ୍ତୁ ପାରୁ ନାହାନ୍ତି ବିରସ ମନରେ ଫେରି ଯାଉଛନ୍ତି ପୁଣି ମୁଣ୍ଡ ଟେକି ମାଡ଼ି ଆସୁଛନ୍ତି । କିନ୍ତୁ ଯେଉଁ ତରଙ୍ଗ ଫେରି ଯାଉଛନ୍ତି, ସେହିମାନେ ତ ଫେରି ଆସୁ ନାହାନ୍ତି । ସେମାନେ ମନ ଦୁଃଖରେ ଫେରି ଯିବା ଅବସ୍ଥାରେ ନୂଆ ନୂଆ ତରଙ୍ଗ ସେମାନଙ୍କୁ ମାଡ଼ି ଦଳି ଦେଇ ଚାଲି ଆସୁଛନ୍ତି । ପୁରାତନକୁ ନୂତନ ସ୍ୱୀକାର କରେ ନାହିଁ ପ୍ରକୃତରେ । ମନୁଷ୍ୟ ପକ୍ଷରେ କାହିଁକି ଏହାର ବ୍ୟତିକ୍ରମ ହେବ ? ଇତିହାସ ଲେଖକ ପୁରାତନରୁ ନୂତନର ଉଦ୍‌ଭବ ବର୍ଣ୍ଣନା କରନ୍ତି ସିନା । ଶୁଷ୍କ ପତ୍ର ଝଡ଼ିପଡ଼ି ନୂଆ ପତ୍ର କଅଁଳି ଆସିଲେ କବି ସିନା ସେ ଦୃଶ୍ୟ ବର୍ଣ୍ଣନା କରନ୍ତି କିନ୍ତୁ ଖସି ପଡ଼ିଲା ପତ୍ରକୁ ନବ କିଶଳୟ ସ୍ୱୀକାର କରେ କି ? ଗ୍ରାମର କବି ପଦ ଗାଇଛନ୍ତି "ମୁହଁରୁ ଉଠର ଗଛରୁ ପତର ଖସିଗଲେ ଆଉ ଫେରିବ କି ?" ଏ ସତ୍ୟଟିକୁ ଉପଲବ୍ଧି କରି ବୟସ୍କ ଲୋକେ ସକ୍ରିୟ ରାଜନୀତିରୁ ସନ୍ତୋଷରେ ଅପସରି ଯିବା ବାଞ୍ଛନୀୟ ନୁହେଁ କି ? ଏ ପ୍ରଶ୍ନମାନ ଶରତଙ୍କ ମନରେ ଏପରି ଆଲୋଡ଼ନ କଲା, ସେ ନୀରବରେ ପାଦଚାଲନା ବନ୍ଦକରି ବୁଲିପଡ଼ି ବାଳକୃଷ୍ଣଙ୍କୁ କହିଲେ "ବାଳକୃଷ୍ଣ, କାହିଁକି ତୁ ରାଜନୀତିରେ ପଶୁଛୁ ? ମଦ ନିଶାଠାରୁ ତ ତୋର ରାଜନୀତି ନିଶା ଆହୁରି ଉତ୍କଟତର ।" ସମୁଦ୍ର ତରଙ୍ଗର ଉଦାହରଣ ଦେଲେ । ଗଛ ପତ୍ରର ଉଦାହରଣ ଦେଲେ ।

ବାଳକୃଷ୍ଣ ବିରକ୍ତ ହୋଇ କହିଲେ, "କୀର୍ତ୍ତନରେ ମାତି ତୋର ହୃଦୟଟା ଭାରି ଦୁର୍ବଳ ହୋଇ ଗଲାଣି । ମୃଦଙ୍ଗର ମଧୁର ଧ୍ୱନୀ ତୋର ହୃଦୟ ଭିତରେ ଶିରା ପ୍ରଶିରାକୁ ନରମ କରି ଦେଲାଣି । ରାଜନୀତି ହେଉଛି ରାଷ୍ଟ୍ରଶକ୍ତି ପରିଚାଳନ । ଏ ଶକ୍ତି ଆହରଣ କର ବା ଶକ୍ତି ବିରୋଧରେ ଲଢ଼—

ଏ ଦୁଇଟି ଶ୍ୱାସ ଚାଲିଥିବା ପର୍ଯ୍ୟନ୍ତ ଜାରି ରଖିବା ମନୁଷ୍ୟର କର୍ତ୍ତବ୍ୟ ।" ଗମ୍ଭୀର ହୋଇ ଶରତ କହିଲେ, "ଦେଖ ଦୂରରେ ସୂର୍ଯ୍ୟ ବୁଡ଼ି ବୁଡ଼ି ଯାଉଛି, ଅପରାହ୍ନ ଟିକିଏ ପରେ ସାୟାହ୍ନ, ତା'ପରେ ରାତ୍ରୀ, ତା'କୁ ଏଡ଼େଇ ଦେଇ ପାରିବ ନାହିଁ । ଆମେ ତ ମୁହୂର୍ତ୍ତକୁ ରାତ୍ରୀ ଆଡ଼କୁ । କିନ୍ତୁ ଅର୍ଦ୍ଧରାତ୍ରୀରୁ ଯାତ୍ରା ଆରମ୍ଭ କରି ପ୍ରତ୍ୟୁଷରେ ଯେଉଁମାନେ ପହଞ୍ଚୁଛନ୍ତି, ସେମାନେ ତ ରାତିଟାକୁ ଠେଲି ଫୋପାଡ଼ି ଦେବାପାଇଁ ଦୌଡ଼ିଛନ୍ତି । ବୁଝିଲ ବାଳକୃଷ୍ଣ, ଅପରାହ୍ନର ପରିଣତି ରାତ୍ରି । ଏହାର ବ୍ୟତିକ୍ରମ ହେବ ନାହିଁ ।" ଏହି ସମୟରେ ଜଗଦୀଶ ଆସି ପହଞ୍ଚିଲେ । ବାଳକୃଷ୍ଣ ତାଙ୍କୁ ଦେଖି ହସି ହସି କହିଲେ, "ମୁଁ ବର୍ତ୍ତମାନ ଶରତ ଠାରୁ ସଂକୀର୍ତ୍ତନ ଶୁଣିଛି –ସଂସାର ଅନିତ୍ୟ, ହରିନାମ ଏକ ପାଥେୟ । ତା'କୁ ସଂଗ୍ରହ କରି ପରଲୋକ ଯାତ୍ରା ପାଇଁ ତିଆର ହେବାକୁ ହେବ । ଆଚ୍ଛା, ଚାଲ ଚାଲ ଉପରକୁ ଯିବା ।" ତିନିହେଁ ଗଲେ ଉପରକୁ । ବସିପଡ଼ି ବାଳକୃଷ୍ଣ କହିଲେ "ଆଜି ସକାଳୁ ମୁଁ ପ୍ରଫୁଲଙ୍କୁ ଟେଲିଫୋନ୍ କରି ତା'କୁ ପାଉନାହିଁ, ତା ଟେଲିଫୋନ୍ ଖରାପ ହୋଇଛି କି କଣ ? କାଲି ସନ୍ଧ୍ୟାରେ କେବିନେଟ୍ ମିଟିଂରେ କଅଣ ହେଲା ଜାଣିବା ପାଇଁ ତାକୁ ଟେଲିଫୋନ୍ କରୁଥିଲି ।

ଶରତ–କାଲି କ'ଣ ବିଚାର ହେବାର ଥିଲା କି ?

ବାଳକୃଷ୍ଣ–ଅତି ଗୋପନୀୟ ଏ କଥା । ପୋଲିସ୍ କ'ଣ ଗୋଟାଏ ମେମୋରେଣ୍ଡମ୍ ଦେଇଛି– ଆମ୍ଭମାନଙ୍କ ସମ୍ବନ୍ଧରେ । ସେହି ମେମୋରେଣ୍ଡମ୍ କାଲି ବିଚାର ହେବାର ଥିଲା ।

ଜଗଦୀଶ–ଆମେ କଅଣ ପରିଚାଳିତ ହେବା ସେକ୍ରେଟେରିଏଟ୍‌ର ନିସ୍‌ପତ୍ତି ଅନୁସାରେ ନାଁ ଆମେ ନିଜେ ଆମର କର୍ତ୍ତବ୍ୟ ସ୍ଥିର କରିବା ?

ବାଳକୃଷ୍ଣ–କର୍ତ୍ତବ୍ୟ ସ୍ଥିର କରିବା ପାଇଁ ସବୁ ଆଡ଼ର ସମ୍ବାଦ ସଂଗ୍ରହ ଆବଶ୍ୟକ ।

ଜଗଦୀଶ–କଅଣ ତୁ କହୁଛୁ–ତୋର ପରାମର୍ଶ ବଙ୍ଗାଳି ଦୁଇଜଣଙ୍କୁ ବିଦା କରି ଦେବାକୁ ହେବ । ଆଉ ଆମକୁ ଏକ ବିବୃତିରେ କହିବାକୁ

ହେବ ଆମେ ହିଂସାରେ ବିଶ୍ୱାସ କରୁନାହୁଁ । ଠାକୁର ଘରେ କିଏ କଦଳୀ ଖାଉଛର ଉତ୍ତର ମୁଁ ଖାଇନାହିଁ ପରି କଥାଟା ହୋଇ ଯିବ । ଏତିକି ବୁଝୁନାହୁଁ । ଗତ ରାତ୍ରୀରେ ମୁଁ ଗଭୀର ଚିନ୍ତା କରି ସ୍ଥିର କଲି ମୁଁ କୌଣସି ବିବୃତି ଦେବି ନାହିଁ କି ସେ ବଙ୍ଗାଳି ଦୁଇ ଜଣଙ୍କୁ ବାହାର କରିଦେବି ନାହିଁ । ମୁଁ କିଏ ବାହାର କରି ଦେବାକୁ ? ଶେଷାଶ୍ରୟଟି ତ ହେଉଛି କଲିକତାର ସେ ସନ୍ନ୍ୟାସୀଙ୍କର । ସେ ଏମାନଙ୍କୁ ପଠାଇଛନ୍ତି । ମୁଁ ତ ସେମାନଙ୍କୁ ବାହାର କରି ପାରିବି ନାହିଁ ବରଂ ମୁଁ ସେଠାରୁ ବାହାରି ଆସିବି ।

ବାଳକୃଷ୍ଣ—ସେଠୁ ବାହାରି ଆସି ଅନ୍ୟତ୍ର ରହି ଯୋଗ ସାଧନା କଲେ କ୍ଷତି କଅଣ ?

ଜଗଦୀଶ—ମୁଁ କଅଣ କହିବି ? ଯୋଗ ସାଧନା କଅଣ ନିର୍ବାଚନ ପ୍ରଘର କି ? ଏକେତ ମନ ଚଞ୍ଚଳ । ତାକୁ ସ୍ଥିର କରିବାର ସାଧନା ଦରକାର କରେ ବର୍ଷ ବର୍ଷ କାଳ ଏକାଗ୍ରତା । ତୋର ଏଠିକି ଆସି ମୋର ଯେ କ୍ଷତି ହେଉଛି—ମୁଁ କଅଣ କହିବି ? କେବଳ ତୋ ସହିତ ବନ୍ଧୁତାର ମୂଲ୍ୟ ଦେଉଛି ସିନା । ଯାହେଉ ବହୁତ ଦାମ୍ ଦେଇ ଦେଲିଣି ଆଜିଠୁ ଦାମ୍ ଦେବା ଶେଷ୍ । ଆଉ ତୁ ଡାକିଲେ ଆସିବି ନାହିଁ କି ଆଉ ଏ ପ୍ରକାର ଆଲୋଚନାରେ ଯୋଗ ଦେବି ନାହିଁ ।

ଶରତ ଅନୁରୂପ ମତ ଦେଇ କହିଲେ, "ମୁଁ ତ ଆନନ୍ଦରେ କୀର୍ତ୍ତନ କରି ସମୟ କଟାଉଥିଲି । କାହିଁକି ଡାକିଆଣି ଏତେ ଗଭୀର ଆଲୋଚନାର ପଙ୍କରେ ପକାଇଲୁ ? ଛାଡ଼ିଦେ ଆମ କଥା । ତୁ ତୋ ବାଟରେ ଯାଆ । ସମୟାନୁସାରେ ସାହାଯ୍ୟ କରିବୁ । ଆମକୁ ଛାଡ଼ିଦେ, ଆମେ ନିଶ୍ଚିନ୍ତରେ ଘଡ଼ୀ ଗହ୍ୱରକୁ ଚାଲିଯାଉ ।

ବାଳକୃଷ୍ଣ ନିତାନ୍ତ ଦୁଃଖିତ ସ୍ୱରରେ କହିଲେ, "ତୁମେ ସବୁ ମୋର ମନୋଭାବ ବୁଝି ପାରୁନାହିଁ । ଧର, ତୁମକୁ ଗିରଫ କଲେ । ତୁମେ

ଜେଲ୍‌ରେ ଥିବ, ମୁଁ ବାହାରେ ମନ୍ତ୍ରୀ ଗହଣରେ ବୁଲୁଥିବି । ଏୟା ମୋ ଛୁଦ ସହିବ ? ମୁଁ ଛାଡ଼ିବି ମନ୍ତ୍ରୀ ଏବଂ ଶାସନ ସଂସ୍ପର୍କ । ତା'ପରେ ମୁଁ କଅଣ କରିବି ? ଭେଗାବଣ୍ଡଟିଏ ହୋଇ ବୁଲିବି କିଆ । ରାଜନୀତି ଛଡ଼ା ମୋର ଆଉ କୌଣସି ଛବି ନାହିଁ । ଶାସନ ବିରୁଦ୍ଧରେ ଦଳଟିଏ ସୃଷ୍ଟି କରିବା ପାଇଁ ମୋର ବଡ଼ ଆଗ୍ରହ, କିନ୍ତୁ ତା' ହୋଇ ପାରୁଛି କାହିଁ ? ହରିଚରଣ ଅବଶ୍ୟ ଅର୍ଥ ସାହାଯ୍ୟ କରିପାରେ, କିନ୍ତୁ ତାର ବ୍ୟକ୍ତିତ୍ୱ ନାହିଁ । ଜନପ୍ରିୟତା ନାହିଁ, ସେ ମଧ୍ୟ ବିନା ସର୍ତ୍ତରେ ଅର୍ଥଦାନ କରିବ ନାହିଁ । ସେ ଅର୍ଥଦାନ କରିବ ନିଜେ କିଛିଂ ହେବା ପାଇଁ । ଏ ସବୁ ଅବସ୍ଥାରେ ତୁମେ ସବୁ ମୋତେ ପକାଇବା ବନ୍ଧୁର କାର୍ଯ୍ୟ ହେବ କି ?

* *

ଏ ଆଲୋଚନା ଚାଲିଛି ହରିଚରଣ ଧିଁ ସଁ ହୋଇ ଆସି ହଠାତ୍ ପହଞ୍ଚିଗଲେ । ଭୁବନେଶ୍ୱରରୁ ମଟରରେ ଆସିଲେ । ପାନ୍ଥଶାଳା ଅଗଣାରେ ଗାଡ଼ି ଥୋଇଦେଲେ । ଏକ ନିଃଶ୍ୱାସରେ ଉପର ମହଲକୁ ଉଠିଯାଇ ଘନ-ନିଶ୍ୱାସ ହୋଇଯାଇଛନ୍ତି । ତଥାପି କହି ପକାଇବାକୁ ବ୍ୟଗ୍ର । ଅତି ଜରୁରୀ କଥା କଅଣ ଅଛି । ଭୟଭୀତ ସ୍ୱରରେ କହିଲେ, "କଅଣ ଏଠି ବସି ବିଶ୍ରାମ କରୁଛ ? ବାଳକୃଷ୍ଣ ଏଠି ଅଛି ବୋଲି ପ୍ରଫୁଲ୍ଲ ପର୍ଯ୍ୟନ୍ତ ବୁଝିଲି ତୁମକୁ ଖୋଜି ଖୋଜି ଏଠି ପହଞ୍ଚିଲି । ଯା'ହେଉ ତୁମେ ତିନିଜଣ ଅଛ ଭଲ ହୋଇଛି । ମୁଁ ମୋର ଗୋପନୀୟ ସୂତ୍ରରେ ଶୁଣିଲି ଆଜି କିମ୍ବା କାଲି ଭିତରେ ଆମ ସମସ୍ତଙ୍କୁ ଗିରଫ କରାହେବ । ହିଂସାତ୍ମକ କାର୍ଯ୍ୟକ୍ରମ ପାଇଁ ଷଡ଼ଯନ୍ତ୍ର କରୁଥିବା ଅପରାଧରେ ।" ତାଙ୍କୁ ଆଉ କିଛି କହିବାକୁ ନ ଦେଇ ବାଳକୃଷ୍ଣ ଫାର୍ଙ୍କି ଦେଇ କହିଲେ, "ଏ ସବୁଗୁଡ଼ିକ ଗୁଜବ । ତା ହୋଇଥିଲେ ପ୍ରଫୁଲ୍ଲ ମୋତେ ଖବର ଦେଇ ପାରିଥାନ୍ତା ।" ହରିଚରଣ–ତୁମ କଥା ଭିନ୍ନ–ଆମ କଥା ଭିନ୍ନ ।

ଜଗଦୀଶ୍–ମୁଁ କ'ଣ କହୁଛି କି ?

ହରିଚରଣ–ତୁମ କଥା ଭିନ୍ନ ।

ଶରତ–ମୁଁ ତ ଗାଁରେ ଥାଏ । ନ ହେଲେ ଏଠି ଝାଞ୍ଜପିଟା ଥାଏ ।

ହରିଚରଣ–ଓ ହୋ । ତୁମ ସବିଙ୍କ କଥା ଭିନ୍ନ–ମୁଁ ହେଉଛି ଶରବ୍ୟ । ମୋତେ ଜେଲ୍‌ରେ ରଖିଦେଲେ ଆଉ ବିରୋଧର ନାମଗନ୍ଧ ରହିବ ନାହି । ଏହି ହେଉଛି ସରକାରଙ୍କ ସିଦ୍ଧାନ୍ତ ।

ଜଗଦୀଶ୍—ତେବେ ତୁମେ କ'ଣ କହୁଛ ଆମେ ସବୁ କରିବା ପାଇଁ ।

ହରିଚରଣ—ମୁଁ ଭାବୁଛି ଆଜି ଏହିକ୍ଷଣି ଏକ ବିବୃତି ଦେଇ ଦେଇଁ । ଆମେ ହିଂସାରେ ବିଶ୍ୱାସ କରୁନାହିଁ ଏବଂ ସରକାରଙ୍କ ଲୋକହିତକର କାର୍ଯ୍ୟକ୍ରମରେ ଆମେ ସହଯୋଗ କରୁ ।

ବାଳକୃଷ୍ଣ—ସେହି ବିବୃତି କଥା ତ ମୁଁ କହୁଥିଲି । ଏମାନେ ତ ମାନୁନାହାନ୍ତି ।

ହରିଚରଣ—ସେମାନଙ୍କ କଥା ଛାଡ଼ି ଦିଅ । ସେମାନେ ତ ରାଜନୀତିରେ ନାହାନ୍ତି । ତୁମେ ଆଉ ମୁଁ ବିବୃତି ଦେଇଦେବା । ମୁଁ ପକେଟରୁ ଚିଠି କାଢ଼ି ପଢ଼ିବାକୁ ବସିଲାରୁ ବାଳକୃଷ୍ଣ କହିଲେ, ଯାହା ଲେଖିଛ କହିଯାଅ । ମୋତେ କାହିଁକି ସେଥିରେ ଆଣୁଚ ।

ହରିଚରଣ—ଯାହା କରିବାକୁ ହେବ ଏକାଠି କଲେ ତାହା ହେବ । ତୁମେ ତ ଆମ ଦଳର ଜଣେ ପ୍ରଧାନ ବ୍ୟକ୍ତି । ଏଣୁ ତୁମର ବିବୃତି ଆମ ଦଳ ପକ୍ଷରେ ମଧ୍ୟ ସହାୟକ ହେବ ।

ବାଳକୃଷ୍ଣ—ନାଁ, ସେ ଠିକ୍ ହେବ ନାହିଁ । ତୁମେ ବିବୃତି ଦେଇଦିଅ । ମୁଁ ମୋ ନିଜ ସ୍ତମ୍ଭରେ କଥାଟାକୁ ସଫା କରାଇ ଦେବି ।

ହରିଚରଣ—ନାଁ, ତୁମେ ଏଥିରେ ଦସ୍ତଖତ ନ କଲେ ମୁଁ କରିବି ନାହିଁ । କାରଣ ଏକାକୀ ଏ ବିବୃତି ମୁଁ ଦେଲେ ମୋର ରାଜନୈତିକ ଜୀବନ ଶେଷ ହୋଇଯିବ । ତୁମେ ଏଥିରେ ସଂପୃକ୍ତ ହେଲେ ଲୋକେ ମୋତେ ଭୁଲ ବୁଝିବେ ନାହିଁ ।

ବାଳକୃଷ୍ଣ ହସି ଦେଇ କହିଲେ—ତୁମେ ଚାହୁଁଛ ତୁମର ଲାଙ୍ଗୁଡ଼ କଟୁ । ତା ସଙ୍ଗେ ସଙ୍ଗେ ମୋ ଲାଙ୍ଗୁଡ଼ ବି କଟୁ ।

ହଠାତ୍ ଜଗଦୀଶ ଓ ଶରତ କହି ପକାଇଲେ ଏକ ସମୟରେ, "ତେବେ ଆମ ଲାଙ୍ଗୁଡ଼ କାଟିବା ପାଇଁ କାହିଁକି କହୁଥିଲ ?"

ବାଳକୃଷ୍ଣ—ଓହୋ ! ତୁମ କଥା ଭିନ୍ନ । ତୁମେ ରାଜନୀତିରେ ନାହଁ । ତେଣୁ ଲାଙ୍ଗୁଡ଼ ଆଉ କଟିବା ପ୍ରଶ୍ନ ତୁମ ପକ୍ଷରେ ଉଠୁ ନାହିଁ ।

ଏହିପରି ଘମାଘୋଟ୍ ଆଲୋଚନା ଚାଲିଛି, ହଠାତ୍ ଘର ଭିତରକୁ ପଶି ଆସିଲେ ପୁରୀଜିଲା ପୋଲିସ୍ ସୁପରିଟେଣ୍ଡେଣ୍ଟ, ଟାଉନ୍ ଥାନା

ଇନିସ୍‌ପେକ୍‌ଟର .ର ଦୁଇଜଣ କନେଷ୍ଟବଳ । ପୋଲିସ୍ ପୋଷାକରେ ଏମାନଙ୍କୁ ଦେଖି ହରିଚରଣ "ମୁଁ ଆସେ" କହି ଉଠ୍ ଉଠ୍ ହେଉଥିଲେ, ସୁପରିଟେଣ୍ଡେଣ୍ଟ କାନ୍ଧରେ ହାତ ଦେଇ ବସି ରହିବା ପାଇଁ କହିଲେ । ବାଳକୃଷ୍ଣ ମୁରବି ଭବ ଦେଖାଇ କହିଲେ, "କୁଆଡ଼େ ସବୁ ଆସିଲେ, ଆମର ତ ଏକ ଘରୋଇ ଆଲୋଚନା ଚାଲିଥିଲା ।"

ଅପେକ୍ଷା ନକରି ପୋଲିସ୍ ସୁପରିଟେଣ୍ଡେଣ୍ଟ ହସି ହସି ନମ୍ର ଭାବରେ କହିଲେ, "ଯାହାହେଉ ଆମକୁ ଆଉ ଏଣେ ତେଣେ ବୁଲିବାକୁ ହେଲା ନାହିଁ । ଏଇଠି ଏକା ସାଙ୍ଗରେ କାମ ହୋଇଯିବାର ସୁବିଧା ଦେଇଛନ୍ତି ।" ଏତିକି କହି ସେ ଓ୍ୱାରେଣ୍ଟ ପଢ଼ି ଶୁଣାଇ ଦେଲେ । ହୋମ ସେକ୍ରେଟାରୀଙ୍କ ଦସ୍ତଖତରେ ଆଦେଶ ହୋଇଛି । (୧) ବାଳକୃଷ୍ଣ, ଶରତ, ଜଗଦୀଶ ଓ ହରିଚନ୍ଦନଙ୍କୁ ମିସା ଆଇନ୍ ଅନୁସାରେ ବନ୍ଦୀ କରାହେଲା । (୨) ଶେଷାଶ୍ରୟକୁ ଏକ ବେଆଇନ ଅନୁଷ୍ଠାନ ଘୋଷଣା କରାହେଲା । ସେଠାରୁ ଘର ଇତ୍ୟାଦି ଭଙ୍ଗି ଦିଆଯିବ ଓ ସେଠାରେ ଥିବା ବଙ୍ଗାଳି ଯୁବକଙ୍କୁ ଚବିଶ ଘଣ୍ଟା ମଧ୍ୟରେ ଓଡ଼ିଶା ଛାଡ଼ି ଯିବାକୁ ହେବ । ବ୍ୟଗ୍ର ହୋଇ ବାଳକୃଷ୍ଣ ପଚାରିଲେ, "ମୋ ନାମ ସେଥିରେ ଅଛି ?" ପୋଲିସ୍ ସୁପରିଟେଣ୍ଡେଣ୍ଟ "ଏହି ଦେଖନ୍ତୁ, ଆପଣଙ୍କ ନାମ ପ୍ରଥମରେ", ବାଳକୃଷ୍ଣ କାଗଜ ଖଣ୍ଡିକ ନେଇ ଆଖି ପକାଇ ମୁହଁ ତଳକୁ କରିଦେଲେ । ତାଙ୍କ ଚେହେରା ମ୍ଳାନ ହୋଇଯିବାକୁ ମୁହୂର୍ତ୍ତେ ସୁଦ୍ଧା ସମୟ ଲାଗିଲା ନାହିଁ । ଶରତ ଭୟ ମିଶ୍ରିତ ବିସ୍ମୟ ନେତ୍ରରେ ଚାହୁଁଛନ୍ତି ବାଳକୃଷ୍ଣ ଆଡ଼କୁ, ତେଣେ ପୋଲିସ ସୁପରିଟେଣ୍ଡେଟ୍ ଆଡ଼କୁ । ଜଗଦୀଶ ଗମ୍ଭୀର ହୋଇ ପଚାରିଲେ, "ମୋର ଶେଷାଶ୍ରୟରେ ସେପରି କିଛି ଜିନିଷ ନାହିଁ । ତେବେ ଖଣ୍ଡେ ଦୁଇଖଣ୍ଡ ଲୁଗା ଓ କେତେଖଣ୍ଡ ଯୋଗ ସମ୍ବନ୍ଧୀୟ ବହି ଅଛି । ତାକୁ ନେଇ ଆସି ପାରେ କି ?" ସୁପରିଟେଣ୍ଡେଟ୍ ଅନୁଗ୍ରହ କଲା ଭଳି ସ୍ୱରରେ ମୁଣ୍ଡ ହଲାଇ କହିଲେ "ନିଶ୍ଚୟ ଆମେ ଆପଣଙ୍କୁ ସାଙ୍ଗରେ ନେଇ ଯିବୁ । ଆପଣ ଜିନିଷପତ୍ର ନେଇ ଆସିବେ । ଆମେ ତା'ପରେ ଜେଲ୍‌ରେ ଛାଡ଼ିଦେବୁ ?" ଏଥିରେ ଇନିସ୍‌ପେକ୍‌ଟର ବାଧା ଦେଇ କାନରେ କ'ଣ କହିଲେ ? ତା'ପରେ ସୁପରିଟେଣ୍ଡେଟ୍ କଥାଟାକୁ ବୁଲେଇ ଦେଇ କହିଲେ, "ଆପଣ ଆଉ କଷ୍ଟ କରି କାହିଁକି

ଯିବେ ? ଯାହା ଜିନିଷ ଅଛି, ଆମେ ଆଣି ଆପଣଙ୍କୁ ଦେଇଯିବୁ ।"
ବ୍ୟାପାର ଦେଖି ହରିଚରଣଙ୍କ ସବୁ ବୁଦ୍ଧି ହଜି ଗଲାଣି । ମତ ତାଙ୍କର କେତେ ଗଭୀରକୁ ଗ୍ଲଲିଗଲାଣି, ତାହା ତାଙ୍କ ଆଖିରୁ ଜଣାପଡୁଥାଏ । ଘାଳ ଜଳ କରି ଗ୍ଲହୁଁଥାନ୍ତି । କିଛି କହିପାରୁ ନ ଥାନ୍ତି । କିଛିକ୍ଷଣ ପରେ ୟଷ୍ଟ ସ୍ୱରରେ କହିଲେ, 'ମୁଁ ପ୍ରସ୍ତୁତ ହୋଇ ଆସିନାହିଁ ।' ସୁପରିଟେଣ୍ଡେଣ୍ଟ୍ ଏକ କ୍ରୁର୍ ପରିହାସ କଲେ, "ପ୍ରସ୍ତୁତି ଅପ୍ରସ୍ତୁତିକୁ ମୃତ୍ୟୁବେଳେ ଯମ ଅପେକ୍ଷା କରେ ନାହିଁ କି ଗିରଫ କରା ହେଲାବେଳେ ପୋଲିସ ଅପେକ୍ଷା କରନ୍ତି ନାହିଁ ।"

ଆଉ ବେଶୀ ସମୟ ବାକ୍ୟବ୍ୟୟ ନ କରି "ଗ୍ଲଲନ୍ତୁ, ସାତଟା ପୂର୍ବରୁ ଜେଲରେ ଛାଡ଼ିବାକୁ ହେବ । ନ ହେଲେ ସେଠି ପୁଣି ଅସୁବିଧା ହେବ ।" କେବଳ ଜଗଦୀଶକୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ଅତି ଅନିଚ୍ଛା କ୍ରମେ ଉଠିଲେ । ସାଙ୍ଗରେ ସୁଟ୍‌କେଶଟିଏ ଥିଲା । ବାଳକୃଷ୍ଣ ଧରିଲେ । ଜଣଜଣ କରି ଓହ୍ଲାଇଲେ ଉପର ମହଲାରୁ । ସମସ୍ତେ ନୀରବ । କାହାରି ମୁହଁରୁ କଥା ବାହାରୁ ନାହିଁ କି ଅନ୍ୟ କୌଣସି ଭାବ ପ୍ରକାଶ ପାଉ ନାହିଁ । ବିବ୍ରତ ସମସ୍ତେ । ତଳକୁ ଓହ୍ଲାଇ ଦେଖନ୍ତି ପ୍ରାୟ ପଚ୍ଚଶ ଜଣ ସଶସ୍ତ୍ର ପୋଲିସ ପାନ୍ଥଶାଳାଟିକୁ ଘେରି ଯାଇଛନ୍ତି । ତଳେ ଯେଉଁ ପର୍ଯ୍ୟଟକମାନେ ଥିଲେ, ସେମାନେ ବିସ୍ମୟରେ ନିଜ ଭିତରେ ପଚରା ପଚରି ହେଉଛନ୍ତି—"କଥା କଅଣ ?" ଚୁପ୍ ଚୁପ୍ କରି ପାନ୍ଥଶାଳା ମେନେଜର କହିଲେ, "କେତେଜଣ ବିପ୍ଳବୀ ଉପରେ ଆସିଥିଲେ, ସେହିମାନଙ୍କୁ ପୋଲିସ୍ ଧରିବାକୁ ଆସିଛି ।"

—୩୦—

ସବୁ ଜେଲ୍‌ଖାନାକୁ ପ୍ରତିଦିନ ଖଣ୍ଡେ ଓଡ଼ିଆ ଓ ଖଣ୍ଡେ ଇଂରଜୀ ଖବର କାଗଜ ଯାଏ । ସବୁ ଖବର କାଗଜରେ ସରକାରଙ୍କ ଏକ ଦୀର୍ଘ ବିଜ୍ଞପ୍ତି ପ୍ରକାଶ କରା ଯାଇଛି । ତାର ସାର ମର୍ମ ହେଉଛି, ପୋଲିସ ସି. ଆଇ. ଡ଼ି. ଅଫିସର୍‌ଙ୍କ ଦ୍ୱାରା ତଦନ୍ତ କରାଇ ଏବଂ ସେମାନଙ୍କ ତଦନ୍ତ ରିପୋର୍ଟକୁ ଉଚ୍ଚ ଅଫିସରମାନଙ୍କ ଦ୍ୱାରା ପରୀକ୍ଷା କରି ସରକାରଙ୍କ ହୃଦ୍‌ବୋଧ ହୋଇଛି ଶେଷାଶ୍ରୟ ଏକ ବଙ୍ଗୀୟ ବିପ୍ଳବୀମାନଙ୍କ ଲୁଚିରହିବାର

ଆତ୍ମା । ତେଣୁ ତାକୁ ବେଆଇନ ଘୋଷଣା କରାହେଲା ଏବଂ ତାର ଘର ଅନ୍ୟ ସାମଗ୍ରୀ ବ୍ୟାଜାପ୍ତ କରାହେଲା । ହିଂସାତ୍ମକ କାର୍ଯ୍ୟକ୍ରମ ପାଇଁ ଏକ ସୁପରିକଳ୍ପିତ ଷଡ଼ଯନ୍ତ୍ରରେ ଲିପ୍ତ ଥିବାର ବାଳକୃଷ୍ଣ, ଶରତ, ଜଗଦୀଶ ଏବଂ ହରିଚରଣଙ୍କୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ମିସା ଆଇନ ଅନୁସାରେ ବନ୍ଦୀ କରାଗଲା । ଏ ଷଡ଼ଯନ୍ତ୍ର ସହିତ ପରୋକ୍ଷ ଭାବରେ ମନ୍ତ୍ରୀ ପ୍ରଫୁଲ୍ଲ ଜଡ଼ିତ ଥିବାରୁ ଦୁଃଖର ସହିତ ତାଙ୍କୁ ମନ୍ତ୍ରୀ ପଦରୁ ବହିଷ୍କାର କରାହେଲା । ତାଙ୍କର ପଦ ମର୍ଯ୍ୟାଦା ଦୃଷ୍ଟିରୁ ତାଙ୍କୁ ଗିରଫ କରି ଜେଲ୍‌କୁ ନ ପଠାଇ ତାଙ୍କରି କୋଠରୀରେ ତାଙ୍କୁ ବନ୍ଦୀ କରି ରଖା ହେଲା । ସେ ପୋଲିସ୍‌ର ବିନାନୁମତିରେ ବାହାରକୁ ଯାଇପାରିବେ ନାହିଁ କି ବାହାରର କୌଣସି ବ୍ୟକ୍ତି ବା ଅନୁଷ୍ଠାନ ସହିତ ପ୍ରତ୍ୟକ୍ଷ ବା ପରୋକ୍ଷ ସମ୍ପର୍କ ରଖି ପାରିବେ ନାହିଁ । ଶେଷାଶ୍ରୟରେ ଲୁଚି ରହିଥିବା ଦୁଇଜଣ କଲିକତାର ବିପ୍ଳବୀଙ୍କୁ ୨୪ ଘଣ୍ଟା ଭିତରେ ଓଡ଼ିଶା ଛାଡ଼ି ଯିବା ପାଇଁ ଆଦେଶ ହୋଇଛି ।"

ଏ ବିଜ୍ଞପ୍ତି ଶେଷରେ ଏକ ଛୋଟ ସମ୍ବାଦ ମଧ୍ୟ ପ୍ରକାଶିତ ହୋଇଛି—ସରକାରି ଚାକିରି ଭିତରେ ବହୁ ଷଡ଼ଯନ୍ତ୍ରକାରୀଙ୍କ ଅନୁପ୍ରବେଶ ହୋଇଛି, ସେମାନଙ୍କୁ ଯାଞ୍ଚ କରି ଧୀରେ ଧୀରେ ବହିଷ୍କାରର ବ୍ୟବସ୍ଥା କରାହେଉଛି । ପ୍ରଥମେ ଡ଼ି. ଡ଼ି. ଆର୍. ଓ. ଅଜୟଙ୍କୁ ବହିଷ୍କାରର ଆଦେଶ ଦିଆଯାଇଛି ।

